ଆଚାର୍ଯ୍ୟ ଭାମହ ବିରଚିତ କାବ୍ୟାଲଂକାରଃ

ସମୀକ୍ଷକ—**ଡ଼. କିଶୋର ଚନ୍ଦ୍ର ମିଶ୍ର**

ଅବସର ପ୍ରାପ୍ତ ପ୍ରାଧ୍ୟାପକ

ଲାଞ୍ଜିପଲ୍ଲୀ, ଶ୍ରୀକୃଷ୍ଣ ନଗର-୪, ବ୍ରହ୍ମପୁର-୭୬୦ ୦୦୮

ପ୍ରକାଶିକା—**ଶ୍ରୀମତୀ ଭାଗ୍ୟଲତା ମିଶ୍ର**

ଶ୍ରୀକୃଷ୍ଣ ନଗର-୪, ବ୍ରହ୍ମପୁର

ପ୍ରଚ୍ଛଦ—**ଶ୍ରୀମାନ୍ ପ୍ରତାପ ଚନ୍ଦ୍ର ମହାପାତ୍ର**

ପ୍ରଚ୍ଛଦ ଛପା—**ରାଡ଼ିଏଣ୍ଟ ପ୍ରୋସେସ୍**

ପରିବେଷକ—**ତାରାତାରିଣୀ ପୁସ୍ତକାଳୟ**

ପୁରୁଣା ବସ୍ ଷ୍ଟାଣ୍ଡ, ବ୍ରହ୍ମପୁର-୧

ପ୍ରଥମ ପ୍ରକାଶ—୧୯୯୯

ମୁଦ୍ରଣ—**କଲ୍ୟାଣୀ ପ୍ରେସ୍**

ରମ୍ପାସାହି, ବ୍ରହ୍ମପୁର-୧

ମୂଲ୍ୟ—**ସତୁରି ଟଙ୍କା** ମାତ୍ର (ଶୋଭନ)

**ଷାଠିଏ ଟଙ୍କା** ମାତ୍ର (ସାଧାରଣ)

**Acharya Bhamah Birachit Kabyalankar**

Samiksak—**Dr. Kishra Chandra Mishra**

Retired Reader,

Lanjipali, Srikrishna Nagar-4, Berhampur-8

Pubilshed – **Smt. Bhagaylata Mishra**

Srikrishna Nagar-4, Berhampur-8

Cover art—**Sri Pretap Chandra Mahapatra**

Cover printed at—**Radiant Process**

Distributor—**Taratarini Pustakalaya**

Old Bus Stand, Berhampur-1

First Edition—**1999**

Printer : **Kalyani Press,**

Rampa Street, Berhampur-1,

Price—Rs. **70**/- (Deluxe) Rs. **60**/- (Paperback)

# ଉତ୍ସର୍ଗ-ପତ୍ର

ଶ୍ରୀଯୁକ୍ତ ଅଧ୍ୟାପକ ପଣ୍ଡିତ କବିରାଜ ଭୀମସେନ ପାଠୀ ଶର୍ମା ମହୋଦୟେଷୁ

ଶ୍ରୀମନ୍ମହାଶୟ,

ଆପଣ ବ୍ରହ୍ମପୁର (ଗଞ୍ଜାମ) ସହରର ଜଣେ ସ୍ୱନାମଧନ୍ୟ ପ୍ରତିଷ୍ଠିତ ନାଗରିକ ହିସାବରେ ସୁଦୂର ପ୍ରସାରି ଖ୍ୟାତି ଅର୍ଜନ କରିଛନ୍ତି । ଆପଣଙ୍କ ସାଧନାମୟ କର୍ମରତ ଜୀବନ ଅନ୍ୟ ପାଇଁ ଆଦର୍ଶସ୍ଥାନୀୟ ହୋଇରହିଛି । ଭାରତୀୟ ସଂସ୍କୃତିର ଉତ୍ତରୋତ୍ତର ବିକାଶ ପାଇଁ ଆପଣଙ୍କ ଦ୍ୱାରା ସଂସ୍ଥାପିତ ପାଠୀନ୍ୟାସ ଆପଣଙ୍କୁ କାଳଜୟୀ ମର୍ଯ୍ୟାଦାରେ ବିଭୂଷଣ କରିଅଛି । ଆପଣଙ୍କ ଦ୍ୱାରା ପ୍ରକାଶିତ କୃତି ଗୁଡ଼ିକ ଆପଣଙ୍କୁ ଜଣେ କବି, ପ୍ରାବନ୍ଧିକ, ଭ୍ରମଣ କାହାଣୀ ଲେଖକ ଓ ଅନୁବାଦକ ଭାବେ ପ୍ରତିଷ୍ଠା ଦେଇଅଛି । ବହୁ ନୂତନ ସାମାଜିକ ଅନୁଷ୍ଠାନର ପ୍ରାଣ ପ୍ରତିଷ୍ଠାତା ଓ ପୁରାତନ ଅନୁଷ୍ଠାନର ସକ୍ରିୟ ସଭ୍ୟ ଭାବେ ଆପଣଙ୍କ ଅବଦାନ ଅବିସ୍ମରଣୀୟ । ଏକାଧାରରେ ଆପଣ ଉଗ୍ର ସଂସ୍କାରକ; ସଫଳ ଚିକିତ୍ସକ; ବରିଷ୍ଠ ସାହିତ୍ୟିକ ଓ ଛାତ୍ରବତ୍ସଳ ଅଧ୍ୟାପକ ।

ସନାତନ ସଂସ୍କୃତି ଓ ଆର୍ଯ୍ୟଭାଷା ସଂସ୍କୃତର ପୁନରୁଦ୍ଧାର ଓ ବିକାଶ ଦିଗରେ ଆପଣଙ୍କ ପ୍ରଚେଷ୍ଟା ବନ୍ଦନୀୟ । ସଂସ୍କୃତ ଭାଷାରେ ଲିଖିତ ଉପଲବ୍ଧ ଅଳଂକାର ଶାସ୍ତ୍ର ମଧ୍ୟରେ ପ୍ରଥମ ଭାମହଙ୍କ ମୂଳଗ୍ରନ୍ଥ କାବ୍ୟା-ଲଂକାରର ସମୀକ୍ଷା ଗ୍ରନ୍ଥଟି ଓଡ଼ିଆ ସାହିତ୍ୟ ଗବେଷକଙ୍କ ପାଇଁ ଯଥେଷ୍ଟ ଉପଯୋଗୀ ହେବା ଆଶା କରାଯାଏ । ଆପଣଙ୍କ ପରି ବଦାନ୍ୟ ଗୁଣଗ୍ରାହୀଙ୍କ କରକମଳରେ ସେହି ଦୁର୍ମୂଲ୍ୟ ଗ୍ରନ୍ଥକୁ ଅର୍ପଣ କରି ନିଜକୁ ଧନ୍ୟ ମନେ କରୁଅଛି ।

ଭବଦୀୟ ଗୁଣମୁଗ୍ଧ
ସମୀକ୍ଷକ

# ଅଗ୍ରଲେଖ

ଖ୍ରୀଷ୍ଟାବ୍ଦ ପଞ୍ଚମ-ଷଷ୍ଠ ଶତକର ମଧ୍ୟଭାଗରେ ରଚିତ କାଶ୍ମୀରୀ ପଣ୍ଡିତ ଆଚାର୍ଯ୍ୟ ଭାମହଙ୍କ କାବ୍ୟାଳଂକାର ଗ୍ରନ୍ଥ ପ୍ରାଚ୍ୟ କାବ୍ୟତତ୍ତ୍ୱ ବିଚାର ପରମ୍ପରାରେ ଏକ ମୌଳିକ କୃତି ଏବଂ ଗ୍ରନ୍ଥର ସମସ୍ତ କାରିକା ଉଦାହରଣ ଶ୍ଳୋକ ଭାମହ ନିଜେ ରଚନା କରିଥିବା ସୂଚନା ଦେଇଛନ୍ତି । ସେଥିରୁ ପ୍ରଣେତାଙ୍କ ରଚନା ସ୍ୱରୂପ ପ୍ରମାଣିତ । ଏତଦ୍ ବ୍ୟତୀତ ଭାମହ ଛନ୍ଦ ଗ୍ରନ୍ଥ ରଚନା କରିଥିବା କତିପୟ କାରଣରୁ ସନ୍ଦେହ ହୁଏ । କବିକୁଳଗୁରୁ କାଳିଦାସଙ୍କ ବିଶ୍ୱପ୍ରସିଦ୍ଧ ଅଭିଜ୍ଞାନ ଶାକୁନ୍ତଳମ୍ ନାଟକର ଅର୍ଥଦ୍ୟୋତନିକା ନାମକ ଟୀକା ରଚକ ପଣ୍ଡିତ ପ୍ରବର ରାଘବଭଟ୍ଟ ଭାମହ କର୍ତ୍ତୃକ ଛନ୍ଦଶାସ୍ତ୍ର ତଥା ଅଳଙ୍କାର ସମ୍ବନ୍ଧୀ ବାକ୍ୟଦ୍ୱୟ ଉଦ୍ଧାର କରିଛନ୍ତି । ଅଳଙ୍କାର ବିଷୟକ ଉଦାହରଣଟି କାବ୍ୟାଳଙ୍କାରରେ ନାହିଁ । ଏଥିରୁ ମନେ ହୁଏ । ଭାମହ କାବ୍ୟଶାସ୍ତ୍ର ସମ୍ବନ୍ଧୀ ଅନ୍ୟ ଗ୍ରନ୍ଥ ରଚନା କରିଥିବେ, ଯାହା ଅଦ୍ୟ ଦୁର୍ଲଭ । ପୁଣି ଶ୍ରୀ ନାରାୟଣ ଭଟ୍ଟ ବୃତ୍ତ ରତ୍ନାକର ଟୀକାରେ 'ଉକ୍ତଂ ଭାମହେନ' କହି ଭାମହଙ୍କ କେତେଗୋଟି ଛନ୍ଦ ପ୍ରମାଣ ରୂପେ ଉପନ୍ୟସ୍ତ କରିଛନ୍ତି ।

ଅନ୍ୟାନ୍ୟ ଭାରତୀୟ ଆଚାର୍ଯ୍ୟ କବି ଓ ଦାର୍ଶନିକଙ୍କ ପରି ଭାମହ ମଧ୍ୟ ନିଜର ପିତାଙ୍କ ନାମ ନିର୍ଦ୍ଦେଶ ବ୍ୟତୀତ ନିଜର ଜନ୍ମସ୍ଥାନ, ଜନ୍ମସମୟ, ଗ୍ରନ୍ଥ ରଚନା ସମୟ ଆଦି ବିଷୟରେ କୌଣସି ସୂଚନା ଦେଇନାହାନ୍ତି । ତେଣୁ ତାଙ୍କ ନିର୍ମିତ ଗ୍ରନ୍ଥ ଆଧାରରେ ଯାହା କିଛି ବୁଝାଯାଇପାରେ ।

ଭାମହଙ୍କ ପୂର୍ବରୁ ଭରତ ମୁନି (ଖ୍ରୀ.ପୂ. ୨୦୦) ନାଟ୍ୟଶାସ୍ତ୍ର ପ୍ରଣୟନ କରି ଥିଲେ ମଧ୍ୟ ଏ ଗ୍ରନ୍ଥର ଅଭିନବଭାରତୀ ନାମକ ପ୍ରସିଦ୍ଧ ଟୀକା ରଚକ ବିଶିଷ୍ଟ ଶୈବ ତତ୍ତ୍ୱବିଦ୍ ଅଭିନବ ଗୁପ୍ତ ନାଟ୍ୟଶାସ୍ତ୍ରକୁ ଷଟ୍‌ସାହସ୍ରୀ ସଂହିତା ରୂପେ ସଙ୍କେତ ଦେଇ ଏହା ଏକ ସଂଗ୍ରହ ଗ୍ରନ୍ଥ ବୋଲି ସୂଚନା ଦେଇଛନ୍ତି । ଭାମହଙ୍କ କାବ୍ୟାଳଙ୍କାର ଉପଲବ୍ଧ କାବ୍ୟଶାସ୍ତ୍ର ମଧ୍ୟରେ ପ୍ରଥମ । ଅବଶ୍ୟ ଏହି ଗ୍ରନ୍ଥରେ ସ୍ଥଳ ବିଶେଷରେ ଉଲ୍ଲିଖିତ ମେଧାବୀ ଶାଖବର୍ଦ୍ଧନ ଆଦି ମାନଙ୍କ ଆଚାର୍ଯ୍ୟ ନିର୍ଦ୍ଦେଶରୁ ପ୍ରମାଣିତ ହୁଏ ଯେ, ଭାମହଙ୍କ ପୂର୍ବରୁ କାବ୍ୟଶାସ୍ତ୍ର ଆଲୋଚନାର ଏକ ମହତ୍ତ୍ୱ ପରମ୍ପରା ଥିଲା । କିନ୍ତୁ ସେ ସମସ୍ତ ଗ୍ରନ୍ଥ ଦୁର୍ଲଭ ହେବାରୁ ଭାମହ ହିଁ ପ୍ରଥମ ଆଳଙ୍କାରିକ ଆଚାର୍ଯ୍ୟ ଭାବେ ସମ୍ମାନିତ ।

ପରେ ଦଣ୍ଡୀ, ବାମନ, ରାଜଶେଖର, ଭୋଜ ଅପ୍ପୟଦୀକ୍ଷିତ, ପଣ୍ଡିତ ରାଜ ଜଗନ୍ନାଥ ପ୍ରଭୃତି ଦାକ୍ଷିଣାତ୍ୟ ଆଚାର୍ଯ୍ୟ ଭାମହଙ୍କ କୃତିର ବୈଶିଷ୍ଟ୍ୟ ସ୍ୱୀକାର କରିଛନ୍ତି ।

ଅଳଙ୍କାର ଶାସ୍ତ୍ର ପ୍ରଣୟନ ଦିଗରେ କାଶ୍ମୀରୀ ପଣ୍ଡିତ ଭାମହ, ଉଦ୍ଭଟ,ରୁଦ୍ରଟ, ଆନନ୍ଦ ବର୍ଦ୍ଧନ, କୁନ୍ତକ , ଅଭିନବଗୁପ୍ତ , ମହିମଭଟ୍ଟ, ରୁଯ୍ୟକ ପ୍ରଭୃତିଙ୍କ ଧ୍ୱନିର ସ୍ୱାତନ୍ତ୍ର୍ୟ ଉଲ୍ଲେଖ ଯୋଗ୍ୟ ।

ଭାମହଙ୍କ କାବ୍ୟାଳଙ୍କାର ଗ୍ରନ୍ଥ ପରବର୍ତ୍ତୀ ବହୁ ଆଲୋଚକଙ୍କୁ ବିଭିନ୍ନ ରୂପରେ ପ୍ରଭାବିତ କରିଛି । ଅପ୍‌ପୟ ଦୀକ୍ଷିତଙ୍କ ଚିତ୍ରମୀମାଂସା, ଅଭିନବଗୁପ୍ତଙ୍କ ଧ୍ୱନ୍ୟାଲୋକ ଲୋଚନ ଟୀକା, ଆନନ୍ଦବର୍ଦ୍ଧନଙ୍କ ଧ୍ୱନ୍ୟାଲୋକ,ଉଦ୍‌ଭଟଙ୍କ କାବ୍ୟାଳଙ୍କାର ସଂଗ୍ରହ, କେଶବମିଶ୍ରଙ୍କ ଅଳଂକାର ଶେଖର, ଜୟମଙ୍ଗଳଙ୍କ ଭଟ୍ଟି କାବ୍ୟ ଟୀକା, ଦଣ୍ଡୀଙ୍କ କାବ୍ୟାଦର୍ଶ, ନମି ସାଧୁଙ୍କ ରୁଦ୍ରଟକୃତ, କାବ୍ୟାଳଙ୍କାର ଟୀକା, ପ୍ରତିହାରେନ୍ଦୁରାଜଙ୍କ ଉଦ୍‌ଭଟ କୃତ କାବ୍ୟାଳଙ୍କାର ଲଘୁବୃତ୍ତି, ପ୍ରେମ ଚନ୍ଦ୍ର ତର୍କ ବାଗୀଶଙ୍କ କାବ୍ୟାଦର୍ଶର ଟୀକା,ମମ୍ମଟଙ୍କ କାବ୍ୟ ମଲ୍ଲିନାଥଙ୍କ ଭଟ୍ଟିକାବ୍ୟ ଟୀକା, ରୁଯ୍ୟକଙ୍କ ଅଳଙ୍କାର ସର୍ବସ୍ୱ; ବଲ୍ଲଭଙ୍କ ସୁଭାଷିତ ବଲ୍ଲୀ ବାମନଙ୍କ କାବ୍ୟାଳଙ୍କାର ସୂତ୍ର ବୃତ୍ତି, ବିଶ୍ୱେଶ୍ୱର ପଣ୍ଡିତଙ୍କ ଅଳଙ୍କାର କୌସ୍ତୁଭ । ହେମଚନ୍ଦ୍ରଙ୍କ କାବ୍ୟାନୁଶାସନ ପ୍ରଭୃତି ଗ୍ରନ୍ଥରେ କାବ୍ୟାଳଙ୍କାରର କାରିକା ଉଦ୍ଧୃତ । ଏପରିକି ଆଳଙ୍କାରିକ ଉଦ୍ଭଟ ଭାମହଙ୍କ ଏହି ପ୍ରସିଦ୍ଧ କୃତିର ଟୀକା 'ଭାମହ ବିବରଣ' ନାମରେ ରଚନା କରିଛନ୍ତି । ଭାମହ ବିବରଣ ଆଜି ଦୁର୍ଲ୍ଲଭ ହେଲେ ମଧ୍ୟ ଏହାର କିଛି ଅଂଶ ସଂଗ୍ରହ କରାଯାଇଛି । ସେଥିରୁ କାବ୍ୟାଳଙ୍କାରର ମହତ୍ତ୍ୱ ଅନୁମେୟ । କେତେକ ଆଲୋଚକଙ୍କ ମତରେ ପ୍ରତିହାରେନ୍ଦୁରାଜ ଭାମହ ବିବରଣ ଟୀକା ପ୍ରସ୍ତୁତ କରିଛନ୍ତି ।

କାବ୍ୟାଳଙ୍କାର ଗ୍ରନ୍ଥ ଭାମହଙ୍କ ବିଶିଷ୍ଟ ଶୈଳୀର ଦ୍ୟୋତକ । ଏହାର ଭାଷା ସରଳ ହେଲେ ମଧ୍ୟ ଜଟିଳ ସାହିତ୍ୟିକ ତତ୍ତ୍ୱର ଗ୍ରନ୍ଥିମୋଚନ ପାଇଁ ସୁପ୍ରଯୁକ୍ତ ପାରିଭାଷିକ ଶବ୍ଦର ପ୍ରୟୋଗ ସ୍ଥଳ ବିଶେଷରେ ଦୁର୍ବୋଧ ମନେ ହୋଇପାରେ । କିନ୍ତୁ ଭାମହଙ୍କ ସମୟକୁ ସାହିତ୍ୟ ବିଚାରର ଯେଉଁ ପରମ୍ପରା ଥିଲା, ତାହାକୁ ସେ ବିକଶିତ, ସମୃଦ୍ଧ ଓ ନବୀନ ଦୃଷ୍ଟିକୋଣରେ ଉପାଣିତ ତଥା ମାର୍ଜ୍ଜିତ କରି ଯାଇଛନ୍ତି । ପରବର୍ତ୍ତୀ କାଳରେ ବକ୍ରୋକ୍ତି ସମ୍ପ୍ରଦାୟ ପ୍ରତିଷ୍ଠାପକ ଭାବେ ଆଚାର୍ଯ୍ୟ କୁନ୍ତକ ଯେଉଁ ସମ୍ମାନର ଅଧିକାରୀ ହୋଇଛନ୍ତି । ତାହାର ମୂଳ ପ୍ରେରକ ଶକ୍ତି ଥିଲେ ଭାମହ ।

ଭାମହଙ୍କ ସମୟରେ କାବ୍ୟ ନାଟକଠାରୁ ପୃଥକ୍ ରୂପେ ବିବେଚନା କରାଯାଉ ଥିଲା । ପୁଣି ସେ ସମୟରେ ବ୍ୟାକରଣ, ନ୍ୟାୟ ମୀମାଂସା ଆଦି ଶାସ୍ତ୍ର ପଠନ, ଆଲୋଚନ ଓ ଅନୁଶୀଳନ ପାଣ୍ଡିତ୍ୟର ମାନଦଣ୍ଡ ଥିଲା । ଭାମହ କାବ୍ୟ ଶାସ୍ତ୍ରକୁ ମଧ୍ୟ ସେହିପରି ପ୍ରତିଷ୍ଠା ଦେବା ଉଦ୍ଦେଶ୍ୟରେ ସାହିତ୍ୟତତ୍ତ୍ୱ ଯେ ଏ ସମସ୍ତ ତତ୍ତ୍ୱରୁ ନ୍ୟୂନ ବା ପୃଥକ୍ ନୁହେଁ, ତାହା ହିଁ ପ୍ରତିପାଦନ କରିଯାଇଛନ୍ତି ।

ଅନ୍ୟ ଶାସ୍ତ୍ରପରି ସାହିତ୍ୟ ଶାସ୍ତ୍ରର ପ୍ରୟୋଜନ ମଧ୍ୟ ଧର୍ମ, ଅର୍ଥ, କାମ ଓ ମୋକ୍ଷ ରୂପ ପୁରୁଷାର୍ଥ ଚତୁଷ୍ଟୟ ଲାଭ । କିନ୍ତୁ ସ୍ୱଳ୍ପମତି ବ୍ୟକ୍ତିଙ୍କ ପାଇଁ ଅନ୍ୟାନ୍ୟ ଶାସ୍ତ୍ର କଟୁ ଔଷଧ ପରି ଓ ସାହିତ୍ୟ ଶାସ୍ତ୍ର ମଧୁ ମିଶ୍ରିତ ହୋଇ ଉପାଦେୟ ହୋଇଥାଏ । ବରଂ କାବ୍ୟଶାସ୍ତ୍ରର ଅତିରିକ୍ତ ପ୍ରୟୋଜନ କଳାରେ ବିଚକ୍ଷଣତା, କୀର୍ତ୍ତିଲାଭ ଓ ପ୍ରୀତିପ୍ରାପ୍ତି ।

ଗ୍ରନ୍ଥ ପରିଚୟ—

ଭାମହଙ୍କ କାବ୍ୟାଲଙ୍କାର ଗ୍ରନ୍ଥ ଛଅ ଗୋଟି ପରିଚ୍ଛେଦରେ ବିଭକ୍ତ ।

ପ୍ରଥମ ପରିଚ୍ଛେଦ

ଏଥିରେ କାବ୍ୟର ସ୍ୱରୂପ ସହିତ ବିବିଧ ଭେଦ ନିର୍ଣ୍ଣୀତ । କାବ୍ୟମାନଙ୍କୁ ବକ୍ରୋକ୍ତି ଓ ସ୍ୱଭାବୋକ୍ତି ଭେଦରେ ବିଭକ୍ତ କରାଯାଇଛି । ସଂକ୍ଷେପରେ କହିଲେ ୬୯ଟି କାରିକାରେ କାବ୍ୟର ଶରୀର ବିଷୟରେ ଆଲୋକପାତ କରାଯାଇଛି । ଭାମହଙ୍କ ସମୟରେ ପ୍ରଚଳିତ ଦ୍ୱିବିଧ ଆଲଙ୍କାରିକଙ୍କ ମତ ଉଲ୍ଲିଖିତ । ଗୋଟିଏ ମତରେ ରୂପକ ଉପମାଦି ଅଲଙ୍କାର କାବ୍ୟକୁ ରମଣୀୟ ଓ ଗ୍ରାହ୍ୟ କରିଥାଏ । ଅନ୍ୟ ମତରେ ଅଲଙ୍କାର କାବ୍ୟର ବାହ୍ୟ ଧର୍ମ । ସଂଜ୍ଞା ଓ କ୍ରିୟା ଶବ୍ଦର ବିଶିଷ୍ଟ ପ୍ରୟୋଗ ହିଁ କାବ୍ୟର ମହତ୍ତ୍ୱ ବର୍ଦ୍ଧନ କରେ । କିନ୍ତୁ ଭାମହ ଉଭୟ ବିଷୟକୁ କାବ୍ୟର ସମାନ ଉପଯୋଗୀ ମନେ କରନ୍ତି । ଭାଷା, ଶୈଳୀ ଓ ବିଷୟ ଦୃଷ୍ଟିରୁ ଭାମହ କାବ୍ୟର ପ୍ରକାର ଭେଦ ନିର୍ଣ୍ଣୟ କରିଛନ୍ତି । ସେ କହନ୍ତି ମହାକାବ୍ୟ, ନାଟକ, କଥା, ଆଖ୍ୟାୟିକା ଆଦି ସାହିତ୍ୟର ଯେ କୌଣସି ରୂପ ବକ୍ରୋକ୍ତି ଓ ସ୍ୱଭାବୋକ୍ତି ଯୁକ୍ତ ହେଲେ ରମଣୀୟ ହୁଏ । ଗୌଡୀୟ ଓ ବୈଦର୍ଭ ମାର୍ଗ ଭେଦ ଭାମହ ସ୍ୱୀକାର କରନ୍ତି ନାହିଁ । ଶବ୍ଦ ଓ ଅର୍ଥର ବକ୍ରତା ବାସ୍ତବରେ ଅଭିନନ୍ଦନୀୟ । କାବ୍ୟ ଦୋଷ ଭାବେ ନେୟାର୍ଥ, କ୍ଲିଷ୍ଟ, ଅନ୍ୟାର୍ଥକ, ଅବାଚକ ଅଯୁକ୍ତିମତ୍ ଓ ଗୂଢ଼ାଭିଧାନ ସ୍ୱୀକୃତ । ବାଣୀର ଦୋଷ ରୂପେ ଶ୍ରୁତିଦୁଷ୍ଟ, ଅର୍ଥଦୁଷ୍ଟ, କଳ୍ପନ ଦୁଷ୍ଟ ଓ ଶ୍ରୁତିକଷ୍ଟ ଉଲ୍ଲିଖିତ । ସନ୍ନିବେଶ ବୈଶିଷ୍ଟ୍ୟ ଓ ଆଶ୍ରୟ ସୌନ୍ଦର୍ଯ୍ୟରୁ କେତେକ ଦୋଷ ଗୁଣରୂପେ ବିବେଚିତ ।

ଦ୍ୱିତୀୟ ପରିଚ୍ଛେଦ

ଏହି ପରିଚ୍ଛେଦ ୯୬ଟି କାରିକାର ସମାହାର । ଅଲଙ୍କାର ନିର୍ଣ୍ଣୟ ପୂର୍ବରୁ ଭାମହ ମାଧୁର୍ଯ୍ୟ, ଓଜ ଓ ପ୍ରସାଦ କଥା କହିଛନ୍ତି । କିନ୍ତୁ ତାହାକୁ ଗୁଣ କିମ୍ବା ଅଲଙ୍କାର ନାମ ଦେଇନାହାନ୍ତି କେବଳ ଏ ସମସ୍ତ ଶବ୍ଦଗୁଚ୍ଛ ବିଧାୟକ ଅଧିକ ଚମତ୍କାର ଜନକ ଭାବେ ଚିହ୍ନଣ କରିଛନ୍ତି । ମାଧୁର୍ଯ୍ୟ ଓ ପ୍ରସାଦରେ ସମାସ ବହୁଳତା ପରିହାର୍ଯ୍ୟ । ଯାହା ଆବାଳ ବୃଦ୍ଧବନିତାଙ୍କ ପାଇଁ ସହଜବୋଧ ତାହା ପ୍ରସାଦ ବିଶିଷ୍ଟ । ଓଜ ସମାସ ବହୁଳ ବାକ୍ୟର ସମାହାର । ଭାମହ ଓଜ ବ୍ୟତୀତ ମାଧୁର୍ଯ୍ୟ ଓ ପ୍ରସାଦକୁ ଉଦାହରଣ ଦେଇନାହାନ୍ତି ।

ଅଳଙ୍କାର ବିଷୟର ପ୍ରାରମ୍ଭରେ ଭାମହ କହନ୍ତି କେତେକ ଆଚାର୍ଯ୍ୟ ଅନୁପ୍ରାସ, ଯମକ ରୂପକ, ଦୀପକ, ଓ ଉପମା ଏହିପାଞ୍ଚଟିକୁ ବାଣୀର ଅଳଙ୍କାର ରୂପେ ସ୍ୱୀକୃତି ଦେଇଛନ୍ତି । ଏଥିରୁ ମନେହୁଏ, ଭାମହଙ୍କ ସମୟ ଯାଏ ଅଳଙ୍କାର ଶବ୍ଦ ଓ ଅର୍ଥ ରୂପରେ ବିଭାଜିତ ହୋଇ ନଥିଲା ।

ଅନୁପ୍ରାସ — ଭାମହ ପ୍ରଥମେ ଅନୁପ୍ରାସର ଲକ୍ଷଣ କରିଛନ୍ତି—

ସମାନ ରୂପଯୁକ୍ତ ବର୍ଣ୍ଣବିନ୍ୟାସର ନାମ ଅନୁପ୍ରାସ । ପୁଣି କହନ୍ତି । ଭିନ୍ନାର୍ଥକ କିନ୍ତୁ ସମାନ ରୂପଯୁକ୍ତ ଶବ୍ଦ ସଂଯୋଜନର ନାମ ଅନୁପ୍ରାସ । ଦ୍ୱିତୀୟ ଲକ୍ଷଣଟି 'ଯମକ'ର ଅନୁରୂପ ହେତୁ ଭାମହଙ୍କ ଅନୁପ୍ରାସ ସମ୍ବନ୍ଧୀ ଲକ୍ଷଣ ଅସ୍ପଷ୍ଟ । ଲାଟାନୁପ୍ରାସଅନୁପ୍ରାସର ଅନ୍ୟ ଏକ ବିଭେଦ ଭାମହଙ୍କ ଟୀକାକାର ଉଦ୍ଭଟ ଏହାକୁ ପୁନରୁକ୍ତବଦାଭାସ ନାମ ଦେଇଛନ୍ତି । କିନ୍ତୁ ଭାମହଙ୍କ ଅଳଙ୍କାର ନିରୂପଣରେ ପୁନରୁକ୍ତବଦାଭାସର ସ୍ଥାନ ନାହିଁ । ଅନ୍ୟ କେତେକ ଆଚାର୍ଯ୍ୟ ଗ୍ରାମ୍ୟାନୁପ୍ରାସ ସ୍ୱୀକାର କରନ୍ତି ଓ ଭାମହ ମଧ୍ୟ ଏଥିରେ ଏକମତ । କିନ୍ତୁ ଭାମହ ଅନୁପ୍ରାସର ବହୁଳ ପ୍ରଶଂସା କରିଥିବା ହେତୁ ଗ୍ରାମ୍ୟା କଦାପି ଗ୍ରାମୀଣ ନୁହେଁ । ବରଂ ଉଦ୍ଭଟଙ୍କ ଦ୍ୱାରା ପରେ ସ୍ୱୀକୃତ ପରୁଷା, କୋମଲା ଓ ଉପନାଗରିକା ବୃତ୍ତି ମଧ୍ୟରୁ ଗ୍ରାମ୍ୟା କୋମଲା ବୃତ୍ତିର ସୂଚକ ହୋଇପାରେ ।

ଯମକ—ଆଦି, ମଧ୍ୟାନ୍ତ, ପାଦାଭ୍ୟାସ ଆବଳୀ ଓ ସମସ୍ତପାଦ ରୂପରେ ଯମକର ପଞ୍ଚବିଧ ଭେଦ ସ୍ୱୀକୃତ । ଯମକର ଅନ୍ୟାନ୍ୟ ଭେଦ ହୋଇପାରେ, କିନ୍ତୁ ତାହା ଗ୍ରାହ୍ୟ ହେବା କଠିନ ବୋଲି ଭାମହ କହନ୍ତି । ବିଭିନ୍ନ ଧାତ୍ୱର୍ଥ ବୈଚିତ୍ର୍ୟ ବିମଣ୍ଡିତ ଯମକ ପ୍ରହେଳିକା ମାତ୍ର ।

ରୂପକ—ରୂପକର ଲକ୍ଷଣ ଓ ଉଦାହରଣ ପ୍ରଦତ୍ତ । ରୂପକ ଦ୍ୱିବିଧ ସମସ୍ତବସ୍ତୁ ବିଷୟ ଓ ଏକଦେଶ ବିବର୍ତ୍ତି ।

ଦୀପକ —ଆଦି, ମଧ୍ୟ ଓ ଅନ୍ତ ରୂପରେ ତ୍ରିବିଧ ଦୀପକ ତିନି ପ୍ରକାର ଉଦାହରଣ ମାଧ୍ୟମରେ ପ୍ରଦର୍ଶିତ । କିନ୍ତୁ ଲକ୍ଷଣ ଅସ୍ପଷ୍ଟ ।

ଉପମା—ଉପମାର ଲକ୍ଷଣ ଓ ଉଦାହରଣ ସହିତ ଉପମାସମ୍ବନ୍ଧୀୟ ଅନ୍ୟାନ୍ୟ ଆଲୋଚକଙ୍କ ମତ ପ୍ରଦତ୍ତ । ଉପମାର ଅନ୍ୟାନ୍ୟ ବିଭାଗ ଅସ୍ୱୀକୃତ ।

ଉପମାଦୋଷ—ମେଧାବୀଙ୍କ ପ୍ରଦର୍ଶିତ ସପ୍ତବିଧ ଉପମା ଦୋଷକୁ ଭାମହ ଗ୍ରହଣ କରି ବିଭିନ୍ନ ଉଦାହରଣ ମାଧ୍ୟମରେ ପ୍ରତିପାଦନ କରିଛନ୍ତି । ଅନ୍ୟ କେତେକ ଆଲୋଚକଙ୍କ ଦ୍ୱାରା ସ୍ୱୀକୃତ ନିମ୍ନୋକ୍ତ ଅଳଙ୍କାର ଭାମହ ଗ୍ରହଣ କରିଛନ୍ତି । ଯଥା

ଆକ୍ଷେପ—ଏହା ବକ୍ଷ୍ୟମାଣ ଓ ଉକ୍ତ ବିଷୟ ରୂପରେ ଦ୍ୱିବିଧ ଓ ଏହି ଅଳଙ୍କାରର ଲକ୍ଷଣ ଓ ଉଦାହରଣ ପ୍ରଦତ୍ତ । ଅର୍ଥାନ୍ତରନ୍ୟାସ, ବ୍ୟତିରେକ, ବିଭାବନା, ସମାସୋକ୍ତି ଓ ଅତିଶୟୋକ୍ତି ର ଲକ୍ଷଣ ଓ ଉଦାହରଣ ଉଲ୍ଲିଖିତ । ବକ୍ରୋକ୍ତି ସମସ୍ତ ଅଳଙ୍କାରର ମୂଳରୂପେ ପ୍ରତିପାଦିତ । କିନ୍ତୁ ବକ୍ରୋକ୍ତିର ସ୍ପଷ୍ଟ ରୂପ କେଉଁଠି ଥିବାର ହୋଇନାହିଁ ସୂକ୍ଷ୍ମ, ହେତୁ ଓ ଲେଶର ଅଳଙ୍କାରତ୍ୱ ଖଣ୍ଡନ କରାଯାଇଛି ।

ଏହାପରେ ଯଥାସଂଖ୍ୟା ଓ ଉତ୍ପ୍ରେକ୍ଷା ଅଳଙ୍କାର ସମ୍ବନ୍ଧୀୟ ବିଚାର ପ୍ରଦତ୍ତ । ମେଧାବୀ ଯଥାସଂଖ୍ୟା ଓ ଉତ୍ପ୍ରେକ୍ଷା ବିଷୟରେ କିଛି କହି ନାହାନ୍ତି । ଭାମହ ଯଥାସଂଖ୍ୟ ଓ ଉତ୍ପ୍ରେକ୍ଷାର ଲକ୍ଷଣ ଓ ଉଦାହରଣ ଦେଇଛନ୍ତି । ଅନ୍ୟ ଆଚାର୍ଯ୍ୟଙ୍କ ଦ୍ୱାରା ସ୍ୱୀକୃତ ସ୍ୱଭାବୋକ୍ତି ଅଳଙ୍କାରର ଲକ୍ଷଣ ଓ ଉଦାହରଣ ପ୍ରଦତ୍ତ ।

ସଂକ୍ଷେପରେ କହିଲେ ଭାମହ ଏହି ପରିଚ୍ଛେଦରେ ନିଜ ରଚିତ ଲକ୍ଷଣ ଓ ଉଦାହରଣ ମାଧ୍ୟମରେ ୧୫ ଗୋଟି ଅଳଙ୍କାରର ସ୍ୱରୂପ ଉଦ୍‌ଘାଟନ କରିଛନ୍ତି ।

## ତୃତୀୟ ପରିଚ୍ଛେଦ

ଏଥିରେ ୫୮ଟି କାରିକା ରହିଛି । ଏହି ପରିଚ୍ଛେଦରେ ଭାମହ କେବଳ ୨୩ ଗୋଟି ଅଳଙ୍କାର ନିର୍ଣ୍ଣୟ କରିଛନ୍ତି । ପ୍ରେୟ ଓ ଉର୍ଜସ୍ୱିର କେବଳ ଉଦାହରଣ ପ୍ରଦତ୍ତ । ରସବତ୍ ପର୍ଯ୍ୟାୟୋକ୍ତ; ଅପହ୍ନୁତି, ବିଶେଷୋକ୍ତି, ବିରୋଧ, ତୁଲ୍ୟ ଯୋଗିତା, ଅପ୍ରସ୍ତୁତ ପ୍ରଶଂସା ବ୍ୟାଜସ୍ତୁତି, ନିଦର୍ଶନା, ଉପମାରୂପକ, ଉପମେୟୋପମା, ସହୋକ୍ତି, ପରିବୃତ୍ତି, ସସନ୍ଦେହ, ଅନନ୍ୱୟ ସଂସୃଷ୍ଟି ଆଦି ୧୬ଟି ଅଳଙ୍କାରର ଲକ୍ଷଣ ଓ ଉଦାହରଣ ଦିଆଯାଇଛି । ସମାହିତ ଅଳଙ୍କାରର ଉଦାହରଣ ରାଜମିତ୍ର କାବ୍ୟରୁ ଗୃହୀତ । ଉଦାତ୍ତ ଅଳଙ୍କାରର ଉଦାହରଣ ସହିତ ଅନ୍ୟ ଆଲୋଚକଙ୍କ ମତ ଉଦ୍ଧୃତ ଶ୍ଳିଷ୍ଟ ଅଳଙ୍କାରର ଲକ୍ଷଣ ଓ ରୂପକଠାରୁ ଏହାର ଭିନ୍ନତା ପ୍ରଦର୍ଶିତ । ଶ୍ଳେଷ ବା ଶ୍ଳିଷ୍ଟ ସହୋକ୍ତି, ଉପମା ଓ ହେତୁ ନିଦର୍ଶନ ମୂଳକ ରୂପେ ତ୍ରିବିଧ । ତିନିଗୋଟି ଉଦାହରଣ ମାଧ୍ୟମରେ ଭିନ୍ନତା ଅଭିବ୍ୟକ୍ତ ।

ଭାମହ ଉତ୍ପ୍ରେକ୍ଷାବୟବ ନାମକ ଅଳଙ୍କାର ସ୍ୱୀକାର କରି ତାହାର ଲକ୍ଷଣ ଓ ଉଦାହରଣ ଦେଇଛନ୍ତି । କିନ୍ତୁ ଏହା ସଂସୃଷ୍ଟି ଅନୁରୂପ ହେତୁ ପରବର୍ତ୍ତୀ ଆଲଙ୍କାରିକ ଏହାକୁ ସ୍ୱୀକାର କରିନାହାନ୍ତି । ଭାବିକ କାବ୍ୟ ଗୁଣ ଭାବେ ଗୃହୀତ । ଆଶୀଃ ଅନ୍ୟ ଆଲଙ୍କାରିକଙ୍କ ଦ୍ୱାରା ସ୍ୱୀକୃତ । ଭାମହ ଏହାର ଲକ୍ଷଣ ଓ ଉଦାହରଣ ଦେଇଛନ୍ତି ।

ଅଳଙ୍କାର ନିରୂପଣ ଦ୍ୱିତୀୟ ଓ ତୃତୀୟ ପରିଚ୍ଛେଦରେ କରାଯାଇଛି । ଦୁଇ ଭାଗରେ ପ୍ରକାଶ କରିବାର କୌଣସି ବିଶିଷ୍ଟ କାରଣ ପରିଲକ୍ଷିତ ହୁଏ ନାହିଁ । ଗୋଟିଏ ପରିଚ୍ଛେଦରେ ପ୍ରକାଶ କରିଥିଲେ ଅଧିକ ସ୍ଫୀତ ହୋଇ ବୋଧହୁଏ ଅସୁନ୍ଦର ହୋଇଥାନ୍ତା ।

### ଚତୁର୍ଥ ପରିଚ୍ଛେଦ

ଏଥିରେ ୫୧ଟି କାରିକାରେ କାବ୍ୟଦୋଷ ନିରୂପଣ କରାଯାଇଛି । କାବ୍ୟଦୋଷ ସ୍ଥଳେ ସ୍ୱାମୀ ୧୮ଟି ଦୋଷ ଗ୍ରହଣ କରିଛନ୍ତି । ସେ ମଧ୍ୟରୁ ନିମ୍ନୋକ୍ତ ୧୫ଟି ଦୋଷର ଲକ୍ଷଣ ଓ ଉଦାହରଣ ଏ ପରିଚ୍ଛେଦରେ ପ୍ରଦତ୍ତ । ଯଥା ଅପାର୍ଥ, ବ୍ୟର୍ଥ ଏକାର୍ଥ, ସସଂଶୟ, ଅପକ୍ରମ, ଶବ୍ଦହୀନ, ଯତିଭ୍ରଷ୍ଟ ଭିନ୍ନବୃତ୍ତ, ବିସନ୍ଧି, ଦେଶ ବିରୋଧୀ ଲୋକବିରୋଧୀ, ନ୍ୟାୟ ବିରୋଧୀ ଓ ଆଗମ ବିରୋଧୀ ।

### ପଞ୍ଚମ ପରିଚ୍ଛେଦ

ଏହି ପରିଚ୍ଛେଦରେ ୬୯ଟି କାରିକାରେ ପ୍ରତିଜ୍ଞାହୀନ, ହେତୁହୀନ ଓ ଦୃଷ୍ଟାନ୍ତ ହୀନ ଏହି ତିନିଗୋଟି ଦୋଷର ବିଚାର କରାଯାଇଛି । ଶବ୍ଦ, ଅର୍ଥ ନ୍ୟାୟ, କଳା, ଆଦି ସମସ୍ତ ବିଷୟ କାବ୍ୟ ଅନ୍ତର୍ଗତ ହୋଇପାରେ । ତେଣୁ କବିର ଦାୟିତ୍ୱ ବିଶାଳ । ପ୍ରତିଜ୍ଞାହୀନ ଦୋଷ ବହୁବିଧ ଯଥା ତଦର୍ଥବିରୋଧୀ ହେତୁବିରୋଧୀ, ସ୍ୱ-ସିଦ୍ଧାନ୍ତ ବିରୋଧୀ ସର୍ବାଗମ ବିରୋଧୀ, ପ୍ରସିଦ୍ଧଧର୍ମୀ, ପ୍ରତ୍ୟକ୍ଷ ବିରୋଧୀ ଆଦି ।

ହେତୁହୀନ ଦୋଷ ହେତୁ ବିପର୍ଯ୍ୟୟରେ ହୋଇଥାଏ । ଅଭିଳଷିତ କାର୍ଯ୍ୟର ସଂକଳ୍ପକୁ ପ୍ରତିଜ୍ଞା କହନ୍ତି । ଏହା ଚତୁର୍ବିଧ, ଧର୍ମ,ଅର୍ଥ କାମ ଓ କୋପ ମୂଳକ । ଏ ସମସ୍ତ ପ୍ରତିଜ୍ଞାର ବିରୋଧ ହେଲେ ଦୋଷ ହୋଇଥାଏ । ପ୍ରତିଜ୍ଞା ନଥାଇ ଅର୍ଥରୁ ପ୍ରତିଜ୍ଞା ବୋଧ ହେଲେ ତାହାକୁ ଆର୍ଥୀ ପ୍ରତିଜ୍ଞା କୁହାଯାଏ । ହେତୁରେ ତ୍ରିବିଧ ଦୋଷ ଯଥା— ଅଜ୍ଞାନ, ସଂଶୟଜ୍ଞାନ ଓ ବିପର୍ଯ୍ୟୟ ଜ୍ଞାନ, । ଦୃଷ୍ଟାନ୍ତ ଅନୁମାନର ଅଙ୍ଗ । ଉପମାରେ ହେତୁର ଅଭିଧାନ ହୁଏ ନାହିଁ । ସାଧ୍ୟ ସାଧନର ସ୍ଥିତି ଉପମାରେ ଅଭିପ୍ରେତ ନୁହେ । ଶୁଦ୍ଧ ଦୃଷ୍ଟାନ୍ତ ତାକୁ କହନ୍ତି ଯେଉଁଠି ସାଧ୍ୟ ସାଧନ ଭାବ ଅଭିବ୍ୟକ୍ତ ।

ଗୋଟିଏ ସୁନ୍ଦର ଶବ୍ଦ ପ୍ରଯୁକ୍ତ ହୋଇ କାବ୍ୟର ମହତ୍ତ୍ୱ ବଢାଇ ଥାଏ । ସ୍ୱରୁଚି ହୀନ ପ୍ରବନ୍ଧ ମଧ୍ୟ ତା' ତୁଳନାରେ ଶ୍ରେଷ୍ଠ ନୁହେ । ଅହୃଦ୍ୟ, କଠିନ କାବ୍ୟ ରସଯୁକ୍ତ ହୋଇ ମଧ୍ୟ ଅରମଣୀୟ । ଶଶୀ, ପୁଷ୍ପ, ଉପବନ, ନଗର, ଆଦି ବର୍ଣ୍ଣନାରେ କବିଙ୍କ ବାଣୀ ଅଳଂକୃତ ହୁଏ ନାହିଁ । ଶବ୍ଦ ଓ ଅର୍ଥର ବକ୍ରତା କେବଳ ବାଣୀର ଅଳଙ୍କରଣ ଅଟେ । କେତେକ କବି ବିରୂଦ୍ଧପଦ, ଅସୁନ୍ଦର ଅର୍ଥ ପାଦପୂରକ ଚ, ବା, ତୁ, ହି, ଖଲୁ,କିଲ ଆଦି ଅବ୍ୟୟ ସହିତ କଠିନ ଶବ୍ଦ ପ୍ରୟୋଗ କରିଥାନ୍ତି । ତାହା ଗ୍ରହଣୀୟ ନୁହେ ।

### ଷଷ୍ଠ ପରିଚ୍ଛେଦ

ଏହି ପରିଚ୍ଛେଦଟି ୬୬ କାରିକାର ସମାହାର । ପ୍ରାରମ୍ଭରେ ବ୍ୟାକରଣ ଶାସ୍ତ୍ରର ମହତ୍ତ୍ୱ ଓ ଗାମ୍ଭୀର୍ଯ୍ୟ ଅଭିବ୍ୟକ୍ତ । ସ୍ୱାମୀଙ୍କ ମତରେ ପ୍ରତ୍ୟେକ କବିର ବ୍ୟାକରଣ ଜ୍ଞାନ ରହିବା ଆବଶ୍ୟକ । ଅନ୍ୟର ବ୍ୟବହୃତ ଶବ୍ଦ ପରିଧାନ ପରେ ପରିହୃତ ମାଳା, ପର ହେୟ

ଅଛି । ଅନ୍ୟ କବିର ବାଣୀକୁ ଅନୁବାଦ କରିବା କିମ୍ବା ଅନ୍ୟ ଯାହାସବୁ ନାମରେ ନିନ୍ଦିତ ହୋଇଥାଏ । ଶବ୍ଦର ସ୍ୱରୂପ ନିର୍ଣ୍ଣୟ କରିବାକୁ ଯାଇ ଭାମହ ସ୍ଫୋଟବାଦୀଙ୍କ ମତ ଓ ବୌଦ୍ଧଙ୍କ ଅପୋହବାଦ ତଥା କ୍ଷଣିକବାଦ ଖଣ୍ଡନ କରିଛନ୍ତି । ପରେ ନିଜ ମତ ପ୍ରତିଷ୍ଠା କରି ଶବ୍ଦର ସ୍ୱରୂପ, ପ୍ରକାର ଭେଦ ଓ ବାକ୍ୟର ସ୍ୱରୂପ ନିର୍ଣ୍ଣୟ କରିଛନ୍ତି । କାବ୍ୟୋପଯୋଗୀ ଶବ୍ଦର ବିଚାର ପ୍ରସଙ୍ଗରେ ପ୍ରଥମେ ଅପ୍ରଯୁକ୍ତ, ଦୁର୍ବୋଧ, ଅପେଶଳ, ଗ୍ରାମ୍ୟ ଅପ୍ରତୀତ ଆଦି ଦୋଷଯୁକ୍ତ ପଦ ପରିହାର ପାଇଁ ନିର୍ଦ୍ଦେଶ ଦେଇଛନ୍ତି । ପରେ ସୂତ୍ରକାର ପାଣିନି, ବାର୍ତ୍ତିକ କାର,କାତ୍ୟାୟନ, ଭାଷ୍ୟକାର ପତଞ୍ଜଳି ଆଦି ତ୍ରିମୁନିଙ୍କ ଦ୍ୱାରା ପ୍ରତିପାଦିତ ସୁନ୍ଦର, ଅର୍ଥ ପୂର୍ଣ୍ଣ ଶବ୍ଦ କାବ୍ୟୋପଯୋଗୀ ହେବା ଦର୍ଶାଇ ଗ୍ରନ୍ଥ ସମାପ୍ତ କରିଛନ୍ତି । ଭାମହଙ୍କ ପିତାଙ୍କ ନାମ ରକ୍ରିଲଗୋମି ।

ଶେଷରେ ଗ୍ରନ୍ଥକାର ଗ୍ରନ୍ଥ ବିଷୟରେ ସଂକ୍ଷିପ୍ତ ସୂଚନା ଦେଇଛନ୍ତି । ପ୍ରଥମ ପରିଚ୍ଛେଦରେ କାବ୍ୟର ଶରୀର ନିର୍ଣ୍ଣୟ ୬୦ ଶ୍ଳୋକରେ ,ଦ୍ୱିତୀୟ ଓ ତୃତୀୟ ପରିଚ୍ଛେଦରେ ଅଳଙ୍କାର ନିର୍ଣ୍ଣୟ ୧୬୦ ଶ୍ଳୋକରେ, ଚତୁର୍ଥ ପରିଚ୍ଛେଦରେ କାବ୍ୟଦୋଷ ୫୦ ଶ୍ଳୋକରେ ପଞ୍ଚମ ପରିଚ୍ଛେଦରେ ନ୍ୟାୟ ନିର୍ଣ୍ଣୟ ୭୦ ଶ୍ଳୋକରେ ଓଷଷ୍ଠ ପରିଚ୍ଛେଦରେ ଶବ୍ଦ ଶୁଦ୍ଧି ନିର୍ଣ୍ଣୟ ୬୦ ଶ୍ଳୋକରେ କରାଯାଇଛି । ସମୁଦାୟ ଶ୍ଳୋକ ବା କାରିକା ସଂଖ୍ୟା—

୬୦ + ୧୬୦ + ୫୦ + ୭୦ + ୬୦ = ୪୦୦ ମାତ୍ର

କିନ୍ତୁ ଉପଲବ୍ଧ ୫୯ + ୧୫୫ + ୫୦ — ୬୯ + ୧୬ = ୩୯୯ ମାତ୍ର

ମଙ୍ଗଳାଚରଣରେ ବୁଦ୍ଧଙ୍କ ପର୍ଯ୍ୟାୟବାଚୀ ଶବ୍ଦ ସର୍ବଜ୍ଞଙ୍କୁ ପ୍ରଣାମ କରାଯାଇଥିବାରୁ ପୁଣି ଭାମହଙ୍କ ପିତାଙ୍କ ନାମ ରକ୍ତିଲଗୋମି ଶବ୍ଦ ବୌଦ୍ଧଭିକ୍ଷୁଙ୍କ ନାମ ସାଦୃଶ୍ୟ ଥିବା ଲକ୍ଷ୍ୟ କରି କେତେକ ଆଲୋଚକ ଭାମହଙ୍କୁ ବୌଦ୍ଧ ବୋଲି ବିଚାର କରିଛନ୍ତି । କିନ୍ତୁ ସର୍ବଜ୍ଞ ଶବ୍ଦ ଶିବଙ୍କ ଅନ୍ୟନାମ ମଧ୍ୟ । ପୁଣି ଗ୍ରନ୍ଥ ମଧ୍ୟରେ ବୌଦ୍ଧଙ୍କ ମତକୁ ଖଣ୍ଡନ କରାଯାଇଥିବାରୁ ତଥା ଅଧିକାଂଶ କାଶ୍ମୀର ପଣ୍ଡିତ ଶୈବ ଥିବା ହେତୁ ଭାମହଙ୍କୁ ଶୈବ ଧର୍ମାବଲମ୍ବୀ ସ୍ୱୀକାର କରିବା ଅଧିକ ଯୁକ୍ତିଯୁକ୍ତ । ଉପମାହୀନତା ଦୋଷ ପ୍ରସଙ୍ଗରେ ଲିଖିତ ଶ୍ଳୋକ (୨-୪୧)ରେ କୃଷ୍ଣଙ୍କ ବର୍ଣ୍ଣନାରୁ ଭାମହ ବୈଦିକଧର୍ମୋପାସକ ଥିବା ଅନୁମିତ ।

ଭାମହଙ୍କ ସମୟ ନିରୂପଣ ଦୁରୂହ । ତଥାପି କେତେକ ଗ୍ରନ୍ଥ ସମୟ ନିର୍ଣ୍ଣୟରେ ସହାୟକ ହୋଇପାରେ । ନୈୟାୟିକ ଦିଙ୍ନାଗ 'ପ୍ରତ୍ୟକ୍ଷଂ କଳ୍ପନା ପୋଢ଼ମ' ସିଦ୍ଧାନ୍ତର ପ୍ରତିପାଦକ ଥିଲେ । ସେହି ଉକ୍ତି ଭାମହଙ୍କ (୫-୬) କାରିକାରେ ଉଦ୍ଧୃତ । ପୁଣି ସେହି କାରିକାରେ ବସୁବନ୍ଧୁଙ୍କ 'ସତୋଽର୍ଥାଦିତି କେଚନ' । ଉକ୍ତି ରହିଛି ।ଏଥିରୁ ଅନୁମିତ ହୁଏ ଭାମହ ଦିଙ୍ନାଗ ଓ ବସୁବନ୍ଧୁଙ୍କ ପରବର୍ତ୍ତୀ ଥିଲେ ।

ପୁଣି ଅବାଚକ ଦୋଷ ପ୍ରସଙ୍ଗରେ ମେଘଦୂତକୁ ଲକ୍ଷ୍ୟ କରି ଭାମହ କହନ୍ତି—

ଯଥା ଭୈକ୍ଷଭୁଜଶ୍ଚୈବ ଯଚ୍ଚଦୁର୍ଗନ୍ଧ ଇବ ଭାଷତେ ।
ତଥା ଭବନ୍ତି ଭୂମ୍ନେଦଂ ସୁମେଧୋଭିଃ ପ୍ରଯୁଜ୍ୟତେ । (୧-୪୪)

ଏଥିରେ ପ୍ରଯୁକ୍ତ ସୁମେଧୋଭିଃ 'କାଳିଦାସଙ୍କପ୍ରତି ପ୍ରଯୋଜ୍ୟ ହେତୁ ଭାମହ କାଳିଦାସଙ୍କ ସମସାମୟିକ ବା ପରବର୍ତ୍ତୀ ଥିବା ଅନୁମାନ । ପୁଣି କାଳିଦାସ ମେଘଦୂତର ପୂର୍ବମେଘ ଶ୍ଳୋକ (୧୪)ରେ 'ଦିଙ୍ ନାଗାନାଂ ପଥି ପରିହରନ୍ ସ୍ଥୂଳହସ୍ତାବଲେପାନ' ଉକ୍ତିରେ କାଳିଦାସ ଦିଙ୍ ନାଗଙ୍କୁ ଆକ୍ଷେପ କରିଥିବା ଆଲୋଚନାରୁ ପ୍ରତୀତ ହୁଏ । ଦିଙ୍ଗନାଗ କାଳିଦାସଙ୍କ ପୂର୍ବବର୍ତ୍ତୀ ଥିଲେ । କାଳିଦାସଙ୍କ ସମୟ ଖ୍ରୀଷ୍ଟାବ୍ଦର ପଞ୍ଚମ ଶତକର ଶେଷ ଭାଗ । ଅତଏବ ଭାମହଙ୍କୁ ସେହି ସମୟର ଆଲୋଚକ ମନେ କରାଯାଇପାରେ ।

ପରିଶେଷରେ ଏତିକି କୁହାଯାଇପାରେ, ବେଦ-ବେଦାନ୍ତରେ କେବଳ ଉପମା ଅଲଙ୍କାର ବିଷୟରେ ସୂଚନା ମିଳେ । ପରେ ଭରତ ମୁନି —

'ଉପମା ରୂପକଂ ଚୈବ ଦୀପକଂ ଯମକଂ ତଥା କହି ଚାରିଗୋଟି ଅଳଂକାରର ସୂଚନା ଦେଇଛନ୍ତି । ଭାମହଙ୍କ ସମୟକୁ କାବ୍ୟାଲଙ୍କାର ୩୮ ସଂଖ୍ୟାରେ ପହଞ୍ଚିଛି । କିନ୍ତୁ ଶବ୍ଦ ଓ ଅର୍ଥ ଭେଦରେ ଅଲଙ୍କାରର ବିଭାଗୀକରଣ ହୋଇନାହିଁ । ପରେ ପରେ ଅଲଙ୍କାର ସଂଖ୍ୟାରେ ଅଭିବୃଦ୍ଧି ଘଟି ଅପ୍ ପଯ୍ୟଦୀକ୍ଷିତଙ୍କ ସମୟକୁ କେବଳ ଅର୍ଥାଲଙ୍କାର ୧୨୫ ସଂଖ୍ୟାରେ ଉପନୀତ ହୋଇଛି । ତଥାପି ଧ୍ୱନି ଓ ରସ ସମ୍ପ୍ରଦାୟର ଅପ୍ରତିହତ ପ୍ରତିଷ୍ଠା ପରେ କାବ୍ୟରେ ଅଲଙ୍କାରର ମହତ୍ତ୍ୱ କ୍ଷୁଣ୍ଣ ହୋଇଛି ।

ଅଲଙ୍କାର ସମ୍ବନ୍ଧରେ ଭାମହଙ୍କ ନିର୍ଦ୍ଦେଶରୁ ସ୍ପଷ୍ଟ ହୁଏ ନାହିଁ ଯେ, ବାସ୍ତବରେ ସେ କେତେଗୋଟି ମୌଳିକ ଅଲଙ୍କାରର ସ୍ରଷ୍ଟା । କେବଳ ଉତ୍ପ୍ରେକ୍ଷା ଅଳଂକାର ବିଷୟରେ ସୂଚନା ମିଳେ ଯେ, ଭାମହଙ୍କ ପୂର୍ବରୁ ମେଧାବୀ ଏ ସମ୍ବନ୍ଧରେ କିଛି କହି ନାହାନ୍ତି । ମେଧାବୀଙ୍କ ସଂଖ୍ୟାନ ନାମକୁ ଅଯଥାର୍ଥ ମନେକରି ଭାମହ ପରିସଂଖ୍ୟା ନାମ ଦେଇଛନ୍ତି । ପରବର୍ତ୍ତୀ କାଳରେ ଭାମହଙ୍କ ପ୍ରଦର୍ଶିତ କେତେକ ଅଳଂକାର ଅଗ୍ରାହ୍ୟ ହୋଇଯାଇଛି । ଯଥା—ଉତ୍ପ୍ରେକ୍ଷାବୟବ, ଉପମା ରୂପକ ଆଦି । ପୁଣି କେତେକ ଅଳଂକାରର ଲକ୍ଷଣରେ ପରିବର୍ତ୍ତନ ଘଟିଛି । ନମୁନା ସ୍ୱରୂପ ସମାସୋକ୍ତିକୁ ଗ୍ରହଣ କରାଯାଉ ।

ଭାମହ କହନ୍ତି—ଯେଉଁଠି ଗୋଟିଏ ବସ୍ତୁର କଥନରୁ ତତ୍ ସମାନ ବିଶେଷଣ ଯୁକ୍ତ ଅନ୍ୟ ପଦାର୍ଥର ବୋଧ ହୁଏ ସଂକ୍ଷିପ୍ତାର୍ଥକ ହେତୁ ତାହାକୁ ସମାସୋକ୍ତି କୁହାଯାଏ । ଦର୍ପଣକାର ବିଶ୍ୱନାଥ କହନ୍ତି—

ସମାନ କାର୍ଯ୍ୟ, ଲିଙ୍ଗ ଓ ବିଶେଷଣ ଦ୍ୱାରା ପ୍ରାକରଣିକ ପଦାର୍ଥରେ ଅପ୍ରାକରଣିକ ପଦାର୍ଥର ବ୍ୟବହାର ସମାରୋପ, ସମାସୋକ୍ତି । ସଂକ୍ଷେପରେ କହିଲେ ଭାମହ କେବଳ

ବିଶେଷତଃକୁ ଗ୍ରହଣ କରିବେଳେ ଦର୍ପଣକାର କାର୍ଯ୍ୟ ଓ ଲିଙ୍ଗକୁ ଅଧିକ ଗ୍ରହଣ କରିଛନ୍ତି । ସେହିପରି କେତେକ ଅଳଂକାର ବହୁ ଭେଦ ଉପଭେଦରେ ପରବର୍ତ୍ତୀ କାଳରେ ବିଭକ୍ତ ହୋଇଛି । ଏ ସବୁ ସତ୍ତ୍ୱେ ଭାମହ ହିଁ ଅଳଂକାର ସମ୍ପ୍ରଦାୟର ପ୍ରତିଷ୍ଠାପକ ଭାବେ ସମ୍ମାନିତ ଅଳଂକାର ସମ୍ବନ୍ଧୀୟ ମୌଳିକ ଚିନ୍ତା ଦେଇଛନ୍ତି ଭାମହ ।

ଭାମହ ବାଣୀଦୋଷ, ଉପମା ଦୋଷ, କାବ୍ୟଦୋଷ ଆଦି ବିଷୟରେ ଯାହା ଲେଖିଛନ୍ତି, ପରବର୍ତ୍ତୀ ଆଚାର୍ଯ୍ୟ ସେ ସମସ୍ତକୁ କାବ୍ୟ ଦୋଷ ମନେ କରି ପାଞ୍ଚଭାଗରେ ବିଭକ୍ତ କରିଛନ୍ତି । ଯଥା — ପଦଦୋଷ, ପଦାଂଶଦୋଷ, ବାକ୍ୟ ଦୋଷ, ଅର୍ଥଦୋଷ, ଓ ରସ ଦୋଷ । ପୁଣି ଦୋଷ ସଂଖ୍ୟାରେ ମଧ୍ୟ ଅଭିବୃଦ୍ଧି ଘଟିଛି ।

ଅନୁବାଦ ସମ୍ବନ୍ଧରେ—

ଭାମହଂକ କାବ୍ୟାଳଂକାର ଗ୍ରନ୍ଥ ପ୍ରାଚ୍ୟ କାବ୍ୟତତ୍ତ୍ୱ ବିଚାର ଓ ପରମ୍ପରାର ଏକ ମୌଳିକ ତଥା ପ୍ରଥମ କୃତି । ଜଣେ ସାହିତ୍ୟ ଛାତ୍ର, ହିସାବରେ ଯେ କୌଣସି ଅଳଂକାର ଗ୍ରନ୍ଥ ଅଧ୍ୟୟନ ବେଳେ ଭାମହଂକ ଉକ୍ତି ସେଥିରୁ ପାଇଛି ଓ ଭାମହଂକ କାବ୍ୟାଳଂକାର ପଢ଼ିବା ଇଚ୍ଛା ଜାଗ୍ରତ ହୋଇଛି । ବହୁ ଅନୁସନ୍ଧାନ ପରେ ବନ୍ଧୁ ଡ଼ା. କାଳୀ ଚରଣ ରଥଂକ ଠାରୁ ଚୌଖମ୍ବା ପ୍ରକାଶନ, ବଳଦେବ ଉପାଧ୍ୟାୟ ସଂକଳିତ ଖଣ୍ଡିଏ ଗ୍ରନ୍ଥ ପାଇଲି । କିନ୍ତୁ ତାହା ମୂଳ ମାତ୍ର । ଟୀକା ଅଭାବରୁ ବହୁ କାରିକା ଅବୋଧ ହୋଇ ରହିଗଲା ।

ତାପରେ ପ୍ରଫେସର ଡା. ସୁଦର୍ଶନ ଆଚାର୍ଯ୍ୟଂକ ସୌଜନ୍ୟରୁ ଡ଼ା.ରମଣ କୁମାର ଶର୍ମାଂକ ଗବେଷଣାତ୍ମକ ସନ୍ଦର୍ଭ କାବ୍ୟାଳଂକାର ବହିଟି ପାଇଁ ଆନନ୍ଦିତ ହେଲି । କିନ୍ତୁ ଗ୍ରନ୍ଥି ମୋଚନ ଦିଗରେ ଏ ଗ୍ରନ୍ଥ ବିଶେଷ ସହାୟକ ହେଲା ନାହିଁ । ତାପରେ ଅବସର ପ୍ରାପ୍ତ ପଣ୍ଡିତ ପ୍ରବର ଭଗବତ ପ୍ରସାଦ ତ୍ରିପାଠୀଂ (ମୁକ୍ତା)କ ସୌଜନ୍ୟରୁ ବିହାର ବିଶ୍ୱବିଦ୍ୟାଳୟ ମୁଜାଂଫରପୁରର ପ୍ରଫେସର ଦେବେନ୍ଦ୍ର ନାଥ ଶର୍ମାଂକ କାବ୍ୟାଲଙ୍କାର ଟୀକା ଗ୍ରନ୍ଥ ଦେଖିବା ସୁଯୋଗ ପାଇଲି । ବହୁ କଷ୍ଟ ସ୍ୱୀକାର କରି ପ୍ରାଧ୍ୟାପକ ବନ୍ଧୁ ନିରଞ୍ଜନ ମିଶ୍ର ତାର ଏକ ପ୍ରତିଲିପି ଆଣିଦେଲେ । ଏ ଗ୍ରନ୍ଥ ମୋର ସମସ୍ତ ସନ୍ଦେହ ଦୂର କରିବାରେ ଯଥେଷ୍ଟ ସହାୟକ ହୋଇଛି । ମୋର ଏହି ଅନୁବାଦ ଗ୍ରନ୍ଥ ତାହାର ଅନୁସରଣରେ ରଚିତ କହିଲେ ଅତ୍ୟୁକ୍ତି ହେବ ନାହିଁ । ଅବସର ପ୍ରାପ୍ତ ପ୍ରଫେସର ଡା ଦାଶରଥି ଦାସ ଥରେ କଥା ପ୍ରସଙ୍ଗରେ କହିଥିଲେ । ଯଦି ଭାମହଙ୍କ କାବ୍ୟାଳଂକାର ଗ୍ରନ୍ଥର ଓଡ଼ିଆ ଅନୁବାଦ ହୋଇ ପାରନ୍ତା ତେବେ ବହୁ ସାହିତ୍ୟ ଛାତ୍ର ଏଥିରୁ ଉପକୃତ ହୋଇ ପାରନ୍ତେ । ମୁଁ ଏହି ଅନୁବାଦ କାର୍ଯ୍ୟ କରିବା ପାଇଁ ସ୍ୱୀକୃତି ଦେଇ ମଧ୍ୟ ସ୍ୱଳ୍ପଜ୍ଞତାରୁ ଏ ମହାନ୍ କାର୍ଯ୍ୟ କରିପାରୁନଥିଲି । ଆଜି ସେହି ଗ୍ରନ୍ଥ ପ୍ରକାଶିତ ହେବାକୁ ଯାଉଛି ତେଣୁ ଏ ସମସ୍ତ ମହାନୁଭବଙ୍କ

ଜଗତରେ ମୋର ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଅଛୁ । ଗ୍ରନ୍ଥ ପ୍ରକାଶନ ଦିଗରେ ବନ୍ଧୁ ପ୍ରାଧ୍ୟାପକ କାଳୀ ଚରଣ ରଥଙ୍କ ଅକୁଣ୍ଠ ସହଯୋଗ ଓ ସମୟୋଚିତ ପ୍ରେରଣା ମୋତେ ସାହାଯ୍ୟ କରିଛି । ଏ ଅବସରରେ ତାଙ୍କୁ ଅଭିନନ୍ଦନ ଜଣାଉଛୁ ।

ଏହି ଗ୍ରନ୍ଥର ମୂଳ ଶ୍ଳୋକ ଓ ତାର ସଂକ୍ଷିପ୍ତ ଭାବାର୍ଥ ସହିତ ସ୍ଥଳ ବିଶେଷରେ ତାହାର ସ୍ପଷ୍ଟୀ କରଣ ପାଇଁ ବ୍ୟାଖ୍ୟା କରାଯାଇଛି । କାବ୍ୟ ଦୋଷ ଓ ଅଳଙ୍କାର ଗୁଡ଼ିକର ସମନ୍ୱୟ ସହିତ ଯଥା ସମ୍ଭବ ଓଡ଼ିଆ ସାହିତ୍ୟରୁ ଅନୁରୂପ ଉଦାହରଣ ସଂଗ୍ରହ କରି ସେହି ସେହି ସ୍ଥାନରେ ସଂଯୋଜନ କରାଯାଇଛି । ଶ୍ଳୋକ ଗୁଡ଼ିକର ବର୍ଣ୍ଣାନୁକ୍ରମଣୀସହିତ ଏହି ଗ୍ରନ୍ଥରେ ଉଦ୍ଧୃତ ଗ୍ରନ୍ଥ ଓ ଗ୍ରନ୍ଥକାରଙ୍କ ସାମାନ୍ୟତମ ପରିଚୟ ଦିଆଯାଇଛି ।

ସାହିତ୍ୟ ଗୁଣି, ଅଧ୍ୟାପକ ଓ ଗବେଷକଙ୍କ ସାମାନ୍ୟତମ ଉପକାର ସାଧିତ ହେଲେ ଶ୍ରମ ସାର୍ଥକ ମନେ କରିବ ।

୧୯୯୯
ସାବିତ୍ରୀ ଅମାବାସ୍ୟ

କିଶୋର ଚନ୍ଦ୍ର ମିଶ୍ର
ସମୀକ୍ଷକ

# ସୂଚୀପତ୍ର



—୦—

# ସଂକେତ ସୂଚୀ

ଲା. ବ. — ଲାବଣ୍ୟବତୀ

ବୈ. ବି. — ବୈଦେହୀଶବିଳାସ

ପ୍ରେ. ସୁ. — ପ୍ରେମସୁଧାନିଧି

ଦର୍ପଣ — ସାହିତ୍ୟଦର୍ପଣ

# କାବ୍ୟାଳଂକାର

## ପ୍ରଥମ ପରିଚ୍ଛେଦ

ପ୍ରଣମ୍ୟ ସାର୍ବଂ ସର୍ବଜ୍ଞଂ ମନୋବାକ୍‌କାୟ କର୍ମଭିଃ ।
କାବ୍ୟାଳଂକାର ଇତ୍ୟେଷ ଯଥାବୁଦ୍ଧି ବିଧାସ୍ୟତେ ।।୧।।

ଧର୍ମାର୍ଥକାମମୋକ୍ଷେଷୁ ବୈଚକ୍ଷଣ୍ୟଂ କଳାସୁ ଚ ।
ପ୍ରୀତିଂ କରୋତି କୀର୍ତ୍ତିଂଚ ସାଧୁକାବ୍ୟନିବନ୍ଧନମ୍ ।। ୨ ।।

---

ବିଦ୍ୟାଧିପଂ ବିନୟଦଂ ପ୍ରପନ୍ନାର୍ତ୍ତିହରଂ ବିଭୁମ୍ ।
ଶିବଦଂ ବିଘ୍ନହର୍ତ୍ତାରଂ ନମାମି ଗଣନାୟକମ୍ ।

୧] ମଙ୍ଗଳାଚରଣ - ସର୍ବହିତକାରୀ ଓ ସର୍ବଜ୍ଞ ଶିବଙ୍କୁ ମନ, ବାଣୀ ଓ ଶାରୀରିକ କର୍ମ ମାଧ୍ୟମରେ ପ୍ରଣାମ କରି ନିଜ ବୁଦ୍ଧି ଅନୁସାରେ ଏହି କାବ୍ୟାଳଂକାର ଗ୍ରନ୍ଥ ପ୍ରଣୟନ କରିବି ।

" ବିଦ୍ୟାକାମଃ ଶିବଂ ଯଜେତ " ନୀତିରେ ପ୍ରଣେତା ଗ୍ରନ୍ଥ ଆରମ୍ଭରେ ଶିବଙ୍କୁ ପ୍ରଣାମ କରିଛନ୍ତି । ମାନସିକ କର୍ମ ସ୍ମରଣ, ଚିନ୍ତନ, ଜପ, ବାଚକକର୍ମ ସ୍ତୋତ୍ରପାଠ ଓ ଶାରୀରିକ କର୍ମ ପ୍ରଣିପାତ ଅଭିପ୍ରେତ । 'ସର୍ବଜ୍ଞ' ଶିବ ଓ ବୁଦ୍ଧଦେବଙ୍କ ପର୍ଯ୍ୟାୟବାଚୀ ଶବ୍ଦ । ଯଥା - 'କୃଶାନୁରେତାଃ ସର୍ବଜ୍ଞୋ ଧୂର୍ଜଟିର୍ନୀଲଲୋହିତଃ ।' [ ଅମର କୋଷ ] 'ସର୍ବଜ୍ଞଃ ସୁଗତୋ ବୁଦ୍ଧୋ ଧର୍ମରାଜସ୍ତଥାଗତଃ' । [ଅମର କୋଷ] ବହୁ ଆଲୋଚକ ଭାମହଙ୍କୁ ବୌଦ୍ଧ ମନେ କରି ଆସୁଥିଲେ । କିନ୍ତୁ ପ୍ରମାଣ ଅଭାବରୁ ତାହା ଅଗ୍ରାହ୍ୟ ।

୨] କାବ୍ୟ ପ୍ରୟୋଜନ - ସତ୍‌କାବ୍ୟ ପ୍ରଣୟନ ଧର୍ମ, ଅର୍ଥ, କାମ ଓ ମୋକ୍ଷ ରୂପ ଚତୁର୍ବର୍ଗ ପୁରୁଷାର୍ଥ ସହିତ କଳାରେ ନୈପୁଣ୍ୟ, ଆନନ୍ଦ ଓ କୀର୍ତ୍ତି ପ୍ରଦାନ କରେ ।

କଳା ନୈପୁଣ୍ୟ କାବ୍ୟ ସୃଷ୍ଟିର ଅନ୍ୟତମ ପ୍ରୟୋଜନ ରୂପେ ଏଠାରେ ନିର୍ଣ୍ଣୀତ । ଅନ୍ୟତ୍ର ଭାମହ କଳାକୁ କାବ୍ୟାଙ୍ଗ ଭାବେ ଗ୍ରହଣ କରିଛନ୍ତି । 'ନ ସା କଳା ଜାୟତେ ଯନ୍ନ କାବ୍ୟାଙ୍ଗମ୍' [୫-୪] ବାସ୍ତବରେ କାବ୍ୟ ଏକ କଳା । ପୁଣି ପ୍ରତ୍ୟେକ କଳା କାବ୍ୟର ବିଷୟ ହୋଇପାରେ ।

'କଳା ସକଳନା ପ୍ରଜ୍ଞା ଶିଳ୍ପାନ୍ୟସ୍ୟାଶ୍ଚ ଗୋଚରଃ' [୪-୩୬] ଭାମହଙ୍କ ଏହି କାବ୍ୟାଳଂକାର ଗ୍ରନ୍ଥ କାବ୍ୟାଙ୍ଗ ନିରୂପକ ଗ୍ରନ୍ଥ, କାବ୍ୟ ନୁହେଁ । ତଥାପି ଲକ୍ଷଣ ଗ୍ରନ୍ଥ ଓ କାବ୍ୟ ଏତେଦୂର ସଂଶ୍ଳିଷ୍ଟ ଯେ, ଗୋଟିକର ପ୍ରୟୋଜନକୁ ଅନ୍ୟର ପ୍ରୟୋଜନ ଭାବେ ଗ୍ରହଣ କରାଯାଏ ।

---

ପାଠାନ୍ତର - (୧) ଶର୍ବଂ (୨) କରୋତି କୀର୍ତ୍ତିଂ ପ୍ରୀତିଂ ଚ ସାଧୁକାବ୍ୟ ନିଷେବଣମ୍

ଅଧନସ୍ୟୈବ ଦାତୃତ୍ୱଂ କ୍ଳୀବସ୍ୟୈବାସ୍ତ୍ର କୌଶଳମ୍ ।
ଅଜ୍ଞସ୍ୟୈବ ପ୍ରଗଲ୍‌ଭତ୍ୱମକବେଃ ଶାସ୍ତ୍ର ବେଦନମ୍ ॥ ୩ ॥

ବିନସ୍ୟେନ ବିନା କା ଶ୍ରୀଃ କା ନିଶା ଶଶିନା ବିନା ।
ରହିତା ସତ୍‌କବିତ୍ୱେନ କୀଦୃଶୀ ବାଗ୍‌ବିଦଗ୍‌ଧତା ॥ ୪ ॥

ଗୁରୂପଦେଶାଦଧ୍ୟେତୁଂ ଶାସ୍ତ୍ରଂ ଜଡଧିୟୋଽପ୍ୟଲମ୍ ।
କାବ୍ୟଂତୁ ଜାୟତେ ଜାତୁ କସ୍ୟଚିତ୍ ପ୍ରତିଭାବତଃ ॥ ୫ ॥

---

୩] ଅକବି ନିନ୍ଦା - ଦରିଦ୍ରର ଦାନ, ନପୁଂସକର ଅସ୍ତ୍ର କୌଶଳ ଏବଂ ମୂର୍ଖର ବାକ୍-ପଟୁତା ପରି ଅକବିର ଶାସ୍ତ୍ରଜ୍ଞାନ ନିଷ୍ଫଳ ଅଟେ ।

ଆଚାର୍ଯ୍ୟ ‘ନିନ୍ଦା ଶବ୍ଦ ଶୂନ୍ୟ ବ୍ୟକ୍ତିକୁ ଅକବି ରୂପେ ଉପସ୍ଥାପନ କରି ସମ୍ପୃକ୍ତ ସେହି ଭାବକୁ ତିନୋଟି ଉପମା ଆଧାରରେ ସ୍ପଷ୍ଟରୂପ ଦେଇଛନ୍ତି ।

୪] ସତ୍‌କବିର ମହତ୍ତ୍ୱ - ଶୋଭା ବା ସମ୍ପତ୍ତି ବିନୟ ବିନା ଶୋଭାପାଏ ନାହିଁ । ଚନ୍ଦ୍ରମା ବ୍ୟତୀତ ରାତ୍ରି ମଳିନ ଦେଖାଯାଏ । ସେହିପରି ପ୍ରତିଭାହୀନ କବିର ବାଣୀ ହୃଦୟସ୍ପର୍ଶୀ ହୁଏ ନାହିଁ ।

୫] ପ୍ରତିଭାର ମହତ୍ତ୍ୱ—ଗୁରୁଙ୍କ ଠାରୁ ଉପଦେଶ ଗ୍ରହଣ କରି ବୁଦ୍ଧିମାନ୍ଦ୍ୟ ବ୍ୟକ୍ତି ମଧ୍ୟ ଶାସ୍ତ୍ର ଅଧ୍ୟୟନ କରିପାରେ । କିନ୍ତୁ ସତ୍‌କାବ୍ୟ ସର୍ଜନା କେବଳ ପ୍ରତିଭାବାନ୍ ବ୍ୟକ୍ତି ଦ୍ୱାରା ସମ୍ଭବ ହୁଏ ।

ପ୍ରତିଭାର ସ୍ୱରୂପ—ସ୍ମୃତିର୍ବ୍ୟତୀତବିଷୟା ମତିରାଗାମିଗୋଚରା ।
ବୁଦ୍ଧିସ୍ତାତ୍‌କାଲିକୀ ପ୍ରୋକ୍ତା ପ୍ରଜ୍ଞା ତ୍ରୈକାଲିକୀ ମତା ।
ପ୍ରଜ୍ଞାଂ ନବନବୋନ୍ମେଷଶାଳିନୀଂ ପ୍ରତିଭାଂ ବିଦୁଃ ।

ସ୍ମୃତିର ବିଷୟ ଅତୀତ ଅଟେ । ମତିର ବିଷୟ ଭବିଷ୍ୟତ୍ ଅଟେ । ବୁଦ୍ଧିର ବିଷୟ ବର୍ତ୍ତମାନ ଅଟେ କିନ୍ତୁ ପ୍ରଜ୍ଞାର ବିଷୟ ତ୍ରିକାଳ ଅଟେ । ସେହି ପ୍ରଜ୍ଞା ଯେତେବେଳେ ନବ-ନବଭାବର ପ୍ରକାଶକ ହୁଏ, ସେତେବେଳେ ତାହାକୁ ପ୍ରତିଭା କୁହାଯାଏ ।

ଅଭିନବ ଗୁପ୍ତ କହନ୍ତି—ପ୍ରତିଭା ଅପୂର୍ବବସ୍ତୁ ନିର୍ମାଣକ୍ଷମା-ପ୍ରଜ୍ଞା ।

ଅର୍ଥାତ୍ ଅପୂର୍ବବସ୍ତୁନିର୍ମାଣରେ ସମର୍ଥ ପ୍ରଜ୍ଞାକୁ ପ୍ରତିଭା କହନ୍ତି । ପ୍ରତିଭା, ବ୍ୟୁତ୍ପତ୍ତି ଅଭ୍ୟାସ କାବ୍ୟ ନିର୍ମାଣର ହେତୁତ୍ରୟ ରୂପେ ନିର୍ଣ୍ଣୀତ । କିନ୍ତୁ କାଶ୍ମୀର ପଣ୍ଡିତମାନେ ପ୍ରତିଭାକୁ ମୁଖ୍ୟହେତୁ ମନେ କରନ୍ତି । ଭାମହ ପ୍ରତିଭାବାଦୀ ଥିବା ଏଥିରୁ ଅନୁମିତ ।

ଉପେୟୁଷାମପି ଦିବଂ ସନ୍ନିବନ୍ଧବିଧାୟିନାମ୍ ।
ଆସ୍ତ ଏବ ନିରାତଙ୍କଂ କାନ୍ତଂ କାବ୍ୟମୟଂ ବପୁଃ ॥ ୬ ॥

ରୁଣଦ୍ଧି ରୋଦସୀ ଚାସ୍ୟ ଯାବତ୍କୀର୍ତ୍ତିରନଶ୍ୱରୀ ।
ତାବତ୍ କିଲାୟମଧ୍ୟାସ୍ତେ ସୁକୃତୀ ବୈବୁଧଂ ପଦମ୍ ॥ ୭ ॥

ଅତୋଽଭିବାଞ୍ଛତାକୀର୍ତ୍ତିଂ ସ୍ଥେୟସୀମା ଭୁବଃ ସ୍ଥିତେଃ ।
ଯତ୍ନୋ ବିଦିତବେଦ୍ୟେନ ବିଧେୟଃ କାବ୍ୟଲକ୍ଷଣଃ ॥ ୮ ॥

ଶବ୍ଦଶ୍ଛନ୍ଦୋଽଭିଧାନାର୍ଥା ଇତିହାସାଶ୍ରୟାଃ କଥାଃ ।
ଲୋକୋ ଯୁକ୍ତିଃ କଳାଶ୍ଚେତି ମନ୍ତବ୍ୟା କାବ୍ୟଗୈର୍ହ୍ୟମୀ ॥ ୯ ॥

---

୬] ସତ୍‌କାବ୍ୟ ଓ ସତ୍‌କବିପ୍ରଶଂସା-ଉତ୍ତମ କାବ୍ୟ ପ୍ରଣୟନ କରିଥିବା ସତ୍ କବି ମୃତ୍ୟୁବରଣ କଲେ ମଧ୍ୟ ତାହାର ରମଣୀୟ କାବ୍ୟ ଶରୀର ନିର୍ଭୟ ହୋଇଥାଏ ।

ଦିବଂଗତ କବିର ଭୌତିକ ଶରୀର ନଷ୍ଟ ହୁଏ ସତ; କିନ୍ତୁ ତାହାର କାବ୍ୟାତ୍ମକ ଶରୀରର ଜରା-ମୃତ୍ୟୁ ଭୟ ନଥାଏ । ଅର୍ଥାତ୍ ଶ୍ରେଷ୍ଠ କାବ୍ୟ ପୁରାତନ ହୁଏ ନାହିଁ ବା ନଷ୍ଟ ହୁଏ ନାହିଁ । ରସିକ ହୃଦୟ ସିଂହାସନରେ ଆସୀନ ହୋଇଥାଏ ।
୭] ପୁଣି ଯେତେଦିନ ପର୍ଯ୍ୟନ୍ତ ସେହି ସତ୍‌କବିର ଯଶ ଆକାଶ ଓ ପୃଥିବୀକୁ ଆଲୋକିତ କରୁଥାଏ, ସେ ପର୍ଯ୍ୟନ୍ତ ସେହି ପୁଣ୍ୟକର୍ମା ଦେବପଦକୁ ଅଳଂକରଣ କରେ ।

ମହାଭାରତରେ ଉକ୍ତ ଅଛି — ପୁଣ୍ୟକର୍ମର ଧ୍ୱନି ପୃଥିବୀ ଓ ଆକାଶକୁ ସ୍ପର୍ଶ କରେ । ସେ ଧ୍ୱନି ଗୁଞ୍ଜିତ ହେବାଯାଏ ସେ ପୁଣ୍ୟକର୍ମା ସ୍ୱର୍ଗରେ ପୂଜିତ ହୁଏ ।

ଦିବଂ ସ୍ପୃଶତି ଭୂମିଂ ଚ ଶବ୍ଦଃ ପୁଣ୍ୟସ୍ୟ କର୍ମଣଃ ।
ଯାବତ୍ ସ ଶବ୍ଦୋ ଭବତି ତାବତ୍ ସ୍ୱର୍ଗେ ମହୀୟତେ । (ବନପର୍ବ)

୮] ଅତଏବ ଶାଶ୍ୱତ କୀର୍ତ୍ତି ଅଭିଳାଷୀ ସତ୍‌କବି କାବ୍ୟ ନିର୍ମାଣ ଉପଯୋଗୀ ଉପାଦାନ ବିଷୟ ଜାଣିବା ଦିଗରେ ଯତ୍ନବାନ ହେବା ଉଚିତ ।

୯] କବିର ଜ୍ଞାତବ୍ୟ ବିଷୟ—ବ୍ୟାକରଣ, ଛନ୍ଦ, କୋଷ, ଅର୍ଥ, ଇତିହାସ ଆଶ୍ରିତ କଥା, ଲୋକ ବ୍ୟବହାର, ତର୍କଶାସ୍ତ୍ର ଏବଂ କଳା କାବ୍ୟରଚନା ପାଇଁ ମନନ କରିବା ଆବଶ୍ୟକ ।

---

ପାଠାନ୍ତର- [୯]- କାବ୍ୟହେତବଃ ।

ଶବ୍ଦାଭିଧେୟେ ବିଜ୍ଞାୟ କୃତ୍ୱାତଦ୍‌ବିଦୁପାସନାମ୍‌ ।
ବିଲୋକ୍ୟାନ୍ୟନିବନ୍ଧାଂଶ୍ଚ କାର୍ଯ୍ୟଃ କାବ୍ୟକ୍ରିୟାଦରଃ ॥ ୧୦ ॥

ସର୍ବଥା ପଦମପ୍ୟେକଂ ନ ନିଗାଦ୍ୟମବଦ୍ୟବତ୍‌ ।
ବିଲକ୍ଷଣା ହି କାବ୍ୟେନ ଦୁଃସୁତେନେବ ନିନ୍ଦ୍ୟତେ ॥ ୧୧ ॥

---

ଶବ୍ଦର ଅର୍ଥ ଅଟେ—ଶବ୍ଦାନୁଶାସନ ଅର୍ଥାତ୍‌ ବ୍ୟାକରଣ ଶାସ୍ତ୍ର । ଅଭିଧାନ—କୋଷ ଗ୍ରନ୍ଥ । ଅର୍ଥ-ବାଚ୍ୟ, ଲକ୍ଷ୍ୟ, ବ୍ୟଙ୍ଗ୍ୟ ଆଦି । ଲୋକ—ଲୋକଚଳଣି । ଯୁକ୍ତି—ଦର୍ଶନଶାସ୍ତ୍ର କଳା—ସଙ୍ଗୀତ, ନୃତ୍ୟ, ବାଦ୍ୟ, ବାସ୍ତୁ, ମୂର୍ତ୍ତି, ଚିତ୍ର ଆଦି । ଇତିହାସ ଆଶ୍ରୟୀ କଥା—ରାମାୟଣ, ମହାଭାରତ,ଆଦିର କଥା ସମୂହ । ଅଧିକାଂଶ କବି କାବ୍ୟ ବା ନାଟକର ବିଷୟବସ୍ତୁ ରାମାୟଣ,ମହାଭାରତାଦିରୁ ସଂଗ୍ରହ କରିଛନ୍ତି । କ୍ୱଚିତ୍‌ କବି ମୌଳିକ ବିଷୟର ସ୍ରଷ୍ଟା, । ଆଦିକାବ୍ୟ ରାମାୟଣ ଓ ଇତିହାସ କାବ୍ୟ ମହାଭାରତ କାବ୍ୟକର୍ତ୍ତାଙ୍କ ପାଇଁ ଅନୁଶୀଳନ ଯୋଗ୍ୟ ଗ୍ରନ୍ଥ ।

ପରବର୍ତ୍ତୀ କାଳରେ ଆଲଂକାରିକମାନେ କାବ୍ୟନିର୍ମାଣ ପାଇଁ ଯେଉଁ ବ୍ୟୁତ୍ପତ୍ତି କଥା କହିଛନ୍ତି, ଭାମହ ଏହି କାରିକାରେ ତାହାର ସଂକେତ ଦେଇଛନ୍ତି ।

୧୦] ଅଭ୍ୟାସ—ଶବ୍ଦ ଓ ଅର୍ଥର ଯଥାର୍ଥଜ୍ଞାନ ଲାଭ ପରେ, କାବ୍ୟଜ୍ଞଙ୍କ ନିର୍ଦ୍ଦେଶ ପାଳନ କରି ଏବଂ ଅନ୍ୟାନ୍ୟ ଲେଖକଙ୍କ ରଚନାକୁ ଅନୁଶୀଳନ କରି କାବ୍ୟ ରଚନା କାର୍ଯ୍ୟରେ ପ୍ରବୃତ୍ତ ହେବା ବିଧେୟ ।

କାବ୍ୟ ପ୍ରଣୟନ ପାଇଁ ଶବ୍ଦ ଓ ଅର୍ଥର ବିଶିଷ୍ଟ ଜ୍ଞାନ ସହିତ କବି ଓ ଆଲୋଚକଙ୍କ ନିର୍ଦ୍ଦେଶ ଅନୁସାରେ ଅଭ୍ୟାସ କରିବା ଆବଶ୍ୟକ । ଫଳରେ କାବ୍ୟ ଆରମ୍ଭ କରିବା ପୂର୍ବରୁ ଦୋଷ ଗୁଣ ସମ୍ବନ୍ଧରେ ସମ୍ୟକ୍‌ ଜ୍ଞାନ ହୋଇପାରିବ । ପୁଣି ନିଜର କାବ୍ୟନିର୍ମାଣ ମାର୍ଗକୁ ସୁଗମ କରିବା ଏବଂ ପୁନରୁକ୍ତ ଦୋଷକୁ ନିରାକରଣ କରିବା ଦିଗରେ ଅନ୍ୟର ରଚନା ଅଧ୍ୟୟନ ଅପେକ୍ଷିତ ଅଟେ ।

୧୧] କୁକବି ନିନ୍ଦା—ଗୋଟିଏ ଦୋଷଯୁକ୍ତ ଶବ୍ଦ ମଧ୍ୟ କାବ୍ୟରେ ପ୍ରଯୁକ୍ତ ନ ହେବା ଉଚିତ । ସେ ଦିଗରେ କବି ଧ୍ୟାନ ଦେବା ଆବଶ୍ୟକ । ଲକ୍ଷଣ ଶୂନ୍ୟକାବ୍ୟ କୁପୁତ୍ର ପରି ନିନ୍ଦିତ ହୋଇଥାଏ ।

ଯେପରି କୁପୁତ୍ର ଲାଗି ଜନକ ନିନ୍ଦିତ ହୁଏ, ସେହିପରି କୁକାବ୍ୟ ରଚନା କରି କବି ନିନ୍ଦାର ପାତ୍ର ହୋଇଥାଏ । ସାମାନ୍ୟ ଦୋଷମଧ୍ୟ କବିର ମହତ୍ତ୍ୱ କ୍ଷୁଣ୍ଣ କରେ ।

ନ କବିତ୍ୱମଧର୍ମାୟ ବ୍ୟାଧୟେ ଦଣ୍ଡନାୟ ବା ।
କୁକବିତ୍ୱଂ ପୁନଃ ସାକ୍ଷାନ୍ମୃତିମାହୁର୍ମନୀଷିଣଃ ॥ ୧୨ ॥

ରୂପକାଦିରଲଂକାରସ୍ତସ୍ୟାନ୍ୟୈର୍ବହୁଧୋଦିତଃ ।
ନକାନ୍ତମପି ନିର୍ଭୂଷଂ ବିଭାତି ବନିତାନନମ୍ ॥ ୧୩ ॥

ରୂପକାଦିରଲଂକାରଂ ବାହ୍ୟମାଚକ୍ଷତେ ପରେ ।
ସୁପାଂ ତିଙାଂ ଚ ବ୍ୟୁତ୍ପତ୍ତିଂ ବାଚାଂ ବାଞ୍ଛନ୍ତ୍ୟଲଂକୃତିମ୍ ॥ ୧୪ ॥

---

ଏ ବିଷୟରେ ପରବର୍ତ୍ତୀ ଆଲୋଚକ ଦଣ୍ଡୀଙ୍କ ଉକ୍ତି ପ୍ରଣିଧାନ ଯୋଗ୍ୟ । ସେ କହନ୍ତି କାବ୍ୟରେ ସାମାନ୍ୟ ଦୋଷ ମଧ୍ୟ ଉପେକ୍ଷଣୀୟ ନୁହେଁ । ସୁନ୍ଦର ଶରୀରକୁ ଶ୍ୱେତକୁଷ୍ଠ ମଧ୍ୟ କୁରୂପ କରିଦିଏ ।

ତଦଳ୍ପମପି ନୋପେକ୍ଷ୍ୟଂ କାବ୍ୟେ ଦୁଷ୍ଟଂ କଥଂଚନ ।
ସ୍ୟାଦ୍ ବପୁଃ ସୁନ୍ଦରମପି ଶ୍ୱିତ୍ରେଣୈକେନ ଦୁର୍ଭଗମ୍ । (କାବ୍ୟାଦର୍ଶ)

୧୨] କବିତା ରଚନା ନକଲେ ଅଧର୍ମ ହୁଏ ନାହିଁ, ରୋଗ ହୁଏ ନାହିଁ ବା ଦଣ୍ଡ ମିଳେ ନାହିଁ । କିନ୍ତୁ ଦୋଷଯୁକ୍ତ ରଚନାକୁ ପଣ୍ଡିତମାନେ ସାକ୍ଷାତ ମୃତ୍ୟୁ ବୋଲି କହିଛନ୍ତି ।

ଭାମହ ଏହି କାରିକାରେ କହନ୍ତି—କବିତା ରଚନା ନକଲେ କେହି ଦଣ୍ଡିତ ହୁଏ ନାହିଁ । କିନ୍ତୁ ଦୋଷ ଦୁଷ୍ଟ ରଚନା ଦ୍ୱାରା ମନୁଷ୍ୟ ନିନ୍ଦିତ ହୋଇଥାଏ । ଏପରିକି ମରଣ ତୁଲ୍ୟ ତାହା ଅପ୍ରୀତିକର ।

୧୩] ଅର୍ଥାଳଂକାରବାଦୀଙ୍କ ମତ—କେତେକ ଆଚାର୍ଯ୍ୟ ରୂପକ, ଉପମା ଆଦି ବହୁବିଧ କାବ୍ୟାଲଂକାର ବିଷୟ ଉଲ୍ଲେଖ କରିଛନ୍ତି । ଯେପରି ରମଣୀର ମୁଖଟି ସ୍ୱତଃ ସୁନ୍ଦର ହୋଇଥିଲେ ମଧ୍ୟ ଅଳଂକାର ବ୍ୟତୀତ ସୁନ୍ଦରଶୋଭା ପ୍ରକାଶ କରେ ନାହିଁ । ଏହି କାରିକାରେ ଅର୍ଥାଳଂକାର ବାଦୀଙ୍କ ମତ ଉକ୍ତ ।

କେତେକ ଆଳଂକାରିକ କହନ୍ତି—କାବ୍ୟରେ ସୌନ୍ଦର୍ଯ୍ୟ ବିଧାୟକ ରସ, ଗୁଣ ଆଦି ତତ୍ତ୍ୱ ଥିଲେ ମଧ୍ୟ ଉପମା, ରୂପକ ଆଦି ଅର୍ଥାଳଂକାର ହିଁ କାବ୍ୟଶୋଭା ନିଷ୍ପାଦନ କରନ୍ତି । ସେମାନଙ୍କର ଯୁକ୍ତି ଅଟେ — କାବ୍ୟରୁ ଜାତ ଆନନ୍ଦାନୁଭୂତି ଅର୍ଥବୋଧ ପରେ ସମ୍ଭବ ହୁଏ । ଅର୍ଥାଳଂକାର ଅର୍ଥାଶ୍ରିତ ଚମତ୍କାର ଜନକ ହେତୁ ତାହାର ମହତ୍ତ୍ୱ ଅବିସମ୍ବାଦିତ । ଅତଏବ ଅଳଂକାର କାବ୍ୟର ଅନିବାର୍ଯ୍ୟ ଧର୍ମ ।

୧୪] ଶବ୍ଦାଳଂକାରବାଦୀଙ୍କ ମତ—ଅନ୍ୟ କେତେକ ଆଚାର୍ଯ୍ୟ ରୂପକ ଉପମାଦି ଅଳଂକାରକୁ କାବ୍ୟର ବାହ୍ୟ ଧର୍ମ ମନେ କରନ୍ତି । ଏମାନେ ସୁପ୍ ଓ ତିଙ୍ଗ୍ର

---

ପାଠାନ୍ତର- [୧୩] ବନିତାମୁଖମ୍ ।

ତଦେତଦାହୁଃ ସୌଶବ୍ଦ୍ୟଂ ନାର୍ଥ ବ୍ୟୁତ୍ପତ୍ତିରୀଦୃଶୀ ।
ଶବ୍ଦାଭିଧେୟାଲଂକାର ଭେଦାଦିଷ୍ଟଂ ଦ୍ୱୟଂ ତୁ ନଃ ॥ ୧୫ ॥

ସୌନ୍ଦର୍ଯ୍ୟକୁ ବାଣୀର ଅଳଂକାର ମନେ କରନ୍ତି । କାରଣ କାବ୍ୟ ମୁଖ୍ୟତଃ ଶବ୍ଦ ସୌନ୍ଦର୍ଯ୍ୟ, ପ୍ରଧାନତ ଅଟେ । ଅର୍ଥ ସୌନ୍ଦର୍ଯ୍ୟ ସେହିପରି ଚମତ୍କାର ସୃଷ୍ଟି କରିପାରନ୍ତି ନାହିଁ ।

ଶବ୍ଦ ଲଙ୍କାର ବିଶେଷଯୁକ୍ତ ଅଟେ-କାବ୍ୟପଠନରେ ପ୍ରଥମେ ଶବ୍ଦ ଶ୍ରୁତିଗୋଚର ହୁଏ । ପରେ ଅର୍ଥପ୍ରତୀତ ଘଟେ । ତେଣୁ ହୃଦୟରେ ପ୍ରଥମେ ଶବ୍ଦର ଝଙ୍କାର ଅନୁରଣିତ ହୁଏ । ଅର୍ଥାଲଂକାର ପ୍ରତୀତ ଅର୍ଥବୋଧ ପରେ ହୁଏ । ତେଣୁ ତାହା ବାହ୍ୟ ବା ଗୌଣ ଅଟେ । ପୁଣି ଅର୍ଥ ଗ୍ରହଣକରିପାରିବା ବ୍ୟକ୍ତି ମଧ୍ୟ ଶବ୍ଦମାଧୁର୍ଯ୍ୟରେ ବିମୋହିତ ହୋଇଯାଏ ।

ଉଦାହରଣ —ତେତି ସ୍ୱରୁଚି ଗ୍ରହିଲି ଜଣି କାଣେ ପାଶେ ନାହିଁ ଦିବ୍ୟ ତରୁଣ ।
ମାରି ହୁବେ ହାଥ ନାଥ ନାଥ ବୋଲି ଅତି ଉଚ୍ଚେ କରେ କାରୁଣ୍ୟ ।
ଶୋକେ ଅଧୀରେ, ଚେତନା ହତ ସେ ବଧିରେ । (ଲ-ବ-୨୨ ୧)

ଏହି ପଦ୍ୟ ପାଠ ବେଳେ ଅନୁପ୍ରାସ ରସାସ୍ୱାଦନର ଭୂମିକା ପ୍ରସ୍ତୁତ କରେ । ପରେ ଅର୍ଥାଲଂକାର ଉପରେ ଦୃଷ୍ଟି ପଡ଼େ । ତେଣୁ ସୌ ଶବ୍ଦ୍ୟ (ଶବ୍ଦ ସୌନ୍ଦର୍ଯ୍ୟ) ହିଁ ମୁଖ୍ୟ । ସେହି ଶବ୍ଦ ସଙ୍ଗା ବିଭକ୍ତି (ସୁପ୍) ଓ କ୍ରିୟା ବିଭକ୍ତି (ତିଙ୍) ।

ଏଠାରେ ସୁପ୍-ତିଙ୍ ଦ୍ୱାରା ଶବ୍ଦ ସାମାନ୍ୟ ଉପଲକ୍ଷିତ । ବିଶେଷଣ, ସର୍ବନାମ ଅବ୍ୟୟ ଏମଧ୍ୟରେ ଗୃହୀତ । ବ୍ୟୁତ୍ପତ୍ତିର ଅର୍ଥ ଚମତ୍କାର ବିଶିଷ୍ଟ ଉତ୍ପତ୍ତି ଅର୍ଥାତ୍ ସନ୍ନିବେଶ । ଶବ୍ଦର ଚମତ୍କାର ବିଶିଷ୍ଟ ସନ୍ନିବେଶ ଶବ୍ଦାଲଂକାର ଓ ଅର୍ଥର ଚମତ୍କାର ବିଶିଷ୍ଟ ସନ୍ନିବେଶ ଅର୍ଥାଲଂକାର ଅଟେ ।

୧୫] ଗ୍ରନ୍ଥକାରଙ୍କ ମତ- ଗ୍ରନ୍ଥକାର ଏହି ବିବାଦର ସମାଧାନରେ କହନ୍ତି—

ଶବ୍ଦାଲଂକାର ଓ ଅର୍ଥାଲଂକାର ଉଭୟର ସମାନ ଉପଯୋଗିତା ରହିଛି । ଅତଏବ ଶବ୍ଦ ପ୍ରୟୋଗ ପ୍ରତି ସତ୍‌କବି ଯେପରି ଅବହିତ ହେବା ଆବଶ୍ୟକ, ସେହିପରି ଅର୍ଥ ସୁରୁଚା ପ୍ରତି ଧ୍ୟାନ ଦେବା ଉଚିତ ।

କାବ୍ୟ ପ୍ରକାଶକାର କହନ୍ତି—

ଅର୍ଥ ପରି ଶବ୍ଦ ମଧ୍ୟ ରସ ପ୍ରତୀତରେ ଉପଯୋଗୀ ଅଟେ । ଅତଃ ଉଭୟାଶ୍ରିତ ହେବାରୁ ଅଳଂକାର ଦ୍ୱିବିଧ ଶବ୍ଦାଲଂକାର ଓ ଅର୍ଥାଲଂକାର ।

"ଶବ୍ଦବନ୍ତ୍‌ ଅର୍ଥସ୍ୟାପି କବି ସରସ୍ୱଜ୍ଞାପ୍ୟତ୍ୱମ୍, ଅର୍ଥସ୍ୟ ଇବ ଶବ୍ଦସ୍ୟାପି ରସପ୍ରତୀତ୍ୟୁପଯୋଗିତ୍ୱମ୍, ଅତଃ ଉଭୟାଶ୍ରିତୋଽପି ଉଭୟରୂପୋଽଲଂକାର ଇତି
(କାବ୍ୟପ୍ରକାଶ – ଷଷ୍ଠୋଲ୍ଲାସ)

ଶବ୍ଦାର୍ଥୌ ସହିତୌ କାବ୍ୟଂ ଗଦ୍ୟଂ ପଦ୍ୟଂ ଚ ତଦ୍ଦ୍ୱିଧା ।
ସଂସ୍କୃତଂ ପ୍ରାକୃତଂ ଚାନ୍ୟଦପଭ୍ରଂଶ ଇତି ତ୍ରିଧା ॥ ୧୬ ॥
ବୃତ୍ତଦେବାଦିଚରିତଶଂସି ଚୋତ୍ପାଦ୍ୟବସ୍ତୁ ଚ ।
କଳା ଶାସ୍ତ୍ରାଶ୍ରୟଂ ଚେତି ଚତୁର୍ଧା ଭିଦ୍ୟତେ ପୁନଃ ॥ ୧୭ ॥

୧୬] କାବ୍ୟ ଲକ୍ଷଣ ଓ ବିଭାଗ —ଶବ୍ଦ ଓ ଅର୍ଥର ସହଭାବ ବା ସାହିତ୍ୟ ହିଁ କାବ୍ୟ । ଏହି କାବ୍ୟ ଗଦ୍ୟ ଓ ପଦ୍ୟ ଭେଦରେ ଦ୍ୱିବିଧ । ପୁଣି ଭାଷା ଦୃଷ୍ଟିରୁ ସଂସ୍କୃତ, ପ୍ରାକୃତ ଓ ଅପଭ୍ରଂଶ ଭେଦରେ କାବ୍ୟ ତ୍ରିବିଧ ।

ସଂକ୍ଷିପ୍ତ କାବ୍ୟଲକ୍ଷଣରୁ ଶବ୍ଦ ଓ ଅର୍ଥର ସହଭାବ ସମ୍ବନ୍ଧରେ ଭାମହଙ୍କ ମନୋଭାବ ସ୍ପଷ୍ଟ ହେଉନାହିଁ । କିନ୍ତୁ ଅନ୍ୟତ୍ର ଏ ସମ୍ବନ୍ଧରେ ସୂଚନା ଦେଇଥିବା ଅନୁମିତ ହୁଏ ।

ପାରଂପରିକ, ଶ୍ରୁତିସୁଖଦ ଓ ଅର୍ଥଯୁକ୍ତ ଶବ୍ଦ ପ୍ରୟୋଗାର୍ହ । ବକ୍ତ୍ର ସୌନ୍ଦର୍ଯ୍ୟ, ଅଳଂକାର ଠାରୁ ଉତ୍କୃଷ୍ଟ । (୭-୨୮)
ଦୁର୍ବୋଧ, ଦୁଷ୍ଟ, ଅପେଶଳ ଗ୍ରାମ୍ୟ ଓ ଅପାର୍ଥିକ ଶବ୍ଦ ପ୍ରୟୋଗ ଯୋଗ୍ୟ ନୁହେ । (୭-୨୫)
ବକ୍ରୋକ୍ତି ହିଁ ଅର୍ଥବିଭାବନର ଆଧାର । (୨-୮୫)

ଉପର୍ଯୁକ୍ତ ଭାବକୁ ଦୃଷ୍ଟିରେ ରଖି ଭାମହଙ୍କ କାବ୍ୟଲକ୍ଷଣ ବିଚାର୍ଯ୍ୟ ।

ଏହି ବିଭାଗୀକରଣର ପ୍ରଥମ ଆଧାର ଛନ୍ଦ । ଛନ୍ଦ ଯୁକ୍ତ ହେଲେ ପଦ୍ୟ ଓ ଛନ୍ଦର ଅଭାବରେ ଗଦ୍ୟ । କିନ୍ତୁ ପରେ ଦଣ୍ଡୀ ମିଶ୍ର ନାମକ ଅନ୍ୟ ଏକ ଭେଦ ସ୍ୱୀକାର କରିଛନ୍ତି । ଏହି ମିଶ୍ରକୁ ଗଦ୍ୟ-ପଦ୍ୟମୟ ଚମ୍ପୂ କୁହାଯାଇ ପାରେ ।

ଦ୍ୱିତୀୟ ବିଭାଗୀକରଣର ଆଧାର ଭାଷା । ଭାମହଙ୍କ ସମୟରେ ସଂସ୍କୃତ, ପ୍ରାକୃତ ଓ ଅପଭ୍ରଂଶ ଭାଷା ପ୍ରଚଳିତ ଥିଲା । କବି ଏମାନଙ୍କରୁ ଯେକୌଣସି ଭାଷାରେ ନିଜ ଭାବନାର ଅଭିବ୍ୟକ୍ତି କରୁଥିଲେ । ପରବର୍ତ୍ତୀ ସମୟରେ ଏମାନଙ୍କରୁ ଯେକୌଣସି ଦୁଇଟି ବା ତିନିଗୋଟି ଭାଷାର ମିଶ୍ରଣରେ କାବ୍ୟ ରଚିତ ହୋଇପାରେ ବୋଲି ଦଣ୍ଡୀ ସୂଚନା ଦେଇଛନ୍ତି । ତେଣୁ ଦଣ୍ଡୀଙ୍କ ମତରେ କାବ୍ୟ ଚତୁର୍ବିଧ—ସଂସ୍କୃତ, ପ୍ରାକୃତ, ଅପଭ୍ରଂଶ ଓ ମିଶ୍ର ।

ଗଦ୍ୟଂ ପଦ୍ୟଂ ଚ ମିଶ୍ରଂ ଚ ତତ୍ ତ୍ରିଧୈବ ବ୍ୟବସ୍ଥିତମ୍ ।
ତଦେତଦ୍ବାଙ୍ମୟଂ ଭୂୟଃ ସଂସ୍କୃତଂ ପ୍ରାକୃତଂ ତଥା
ଅପଭ୍ରଂଶଶ୍ଚ ମିଶ୍ରଂ ଚେତ୍ୟାହୁରାର୍ଯ୍ୟାଶ୍ଚତୁର୍ବିଧମ୍ । ( କାବ୍ୟାଦର୍ଶ )

୧୭] ପ୍ରତିପାଦ୍ୟ ବିଷୟ ଆଧାରରେ କାବ୍ୟ ଚତୁର୍ବିଧ [୧] ଦେବତା ବା ରାଜାଙ୍କ ଇତିବୃତ୍ତ ବର୍ଣ୍ଣିତ କାବ୍ୟ । [୨] କବିଦ୍ୱାରା କଳ୍ପିତ ବିଷୟକ କାବ୍ୟ [୩] ସଙ୍ଗୀତ ଆଦି କଳା ବିଷୟକ କାବ୍ୟ [୪] ବ୍ୟାକରଣ ଆଦି ଶାସ୍ତ୍ର ବିଷୟକ କାବ୍ୟ ।

ସର୍ଗବନ୍ଧୋଽଭିନେୟାର୍ଥଂ ତଥୈବାଖ୍ୟାୟିକାକଥେ
ଅନିବଦ୍ଧଂ ଚ କାବ୍ୟାଦି ତତ୍ପୁନଃ ପଞ୍ଚଧୋଚ୍ୟତେ ॥ ୧୮ ॥
ସର୍ଗବନ୍ଧୋ ମହାକାବ୍ୟଂ ମହତାଂ ଚ ମହଚ୍ଚ ଯତ୍ ।
ଅଗ୍ରାମ୍ୟଶବ୍ଦମର୍ଥ୍ୟଂ ଚ ସାଳଂକାରଂ ସଦାଶ୍ରୟମ୍ ॥ ୧୯ ॥
ମନ୍ତ୍ରଦୂତପ୍ରୟାଣାଜିନାୟକାଭ୍ୟୁଦୟୈଶ୍ଚ ଯତ୍ ।
ପଞ୍ଚଭିଃ ସନ୍ଧିଭିର୍ଯୁକ୍ତଂ ନାତିବ୍ୟାଖ୍ୟେୟମୃଦ୍ଧିମତ୍ ॥ ୨୦ ॥
ଚତୁର୍ବର୍ଗାଭିଧାନେଽପିଭୂୟସାର୍ଥୋପଦେଶ କୃତ୍ ।
ଯୁକ୍ତଂ ଲୋକସ୍ୱଭାବେନ ରସୈଶ୍ଚ ସକଳୈଃ ପୃଥକ୍ ॥୨୧॥

---

ଦେବତା ବା ରାଜା ବିଷୟକ କାବ୍ୟ-କୁମାରସମ୍ଭବଂ, ରଘୁବଂଶମ୍ ଆଦି । ଉଦ୍ଭାବିତ ବିଷୟ ଆଧାରିତ କାବ୍ୟ, ମାଳତୀମାଧବ, ମୃଚ୍ଛକଟିକ ଆଦି । ବ୍ୟାକରଣ ଶାସ୍ତ୍ରାଶ୍ରିତ କାବ୍ୟ ଭଟ୍ଟିକାବ୍ୟ ।

୧୮] ଏହି କାବ୍ୟ ପୁଣି ପ୍ରକାର ଭେଦରେ ପଞ୍ଚବିଧ । ଯଥା- (୧) ସର୍ଗବନ୍ଧ ମହାକାବ୍ୟ, (୨) ଅଭିନେୟ ନାଟକାଦି, (୩) ଆଖ୍ୟାୟିକା, (୪) କଥା, (୫) ଅନିବଦ୍ଧ କାବ୍ୟ ଯଥାପରସ୍ପର ସମ୍ବନ୍ଧ ଶୂନ୍ୟ ମୁକ୍ତକ ।

୧୯] ମହାକାବ୍ୟର ବୈଶିଷ୍ଟ୍ୟ – ସର୍ଗବନ୍ଧ କାବ୍ୟର ଅନ୍ୟନାମ ମହାକାବ୍ୟ, ମହାନ ଚରିତକୁ ଆଧାର କରି ବିରାଟ ଆକାରରେ ରଚନା କରାଯାଏ । ଗ୍ରାମ୍ୟ ଶବ୍ଦ ମହାକାବ୍ୟ ପାଇଁ ଅନୁପଯୁକ୍ତ । ଏଥିରେ ଅର୍ଥଗାମ୍ଭୀର୍ଯ୍ୟ ଅପେକ୍ଷିତ । ଏହି ମହାକାବ୍ୟ ଅଳଂକାର ସମନ୍ୱିତ ଓ ସଚ୍ଚରିତ୍ର ଆଧାରିତ ହେବା ଉଚିତ ।

୨୦]·ଏହି ମହାକାବ୍ୟ, ମନ୍ତ୍ରଣା, ଦୂତପ୍ରେରଣ, ଅଭିଯାନ, ଯୁଦ୍ଧ, ନାୟକର ଅଭ୍ୟୁଦୟ ପଞ୍ଚସନ୍ଧି (ମୁଖ, ପ୍ରତିମୁଖ, ଗର୍ଭ, ବିମର୍ଶ, ନିର୍ବହଣ ବା ଉପସଂହୃତି) ଯୁକ୍ତ ଅନତି-ବ୍ୟାଖ୍ୟେୟ ତଥା ବୈଭବପୂର୍ଣ୍ଣ ବର୍ଣ୍ଣନା ସମ୍ପନ୍ନ ହୋଇଥାଏ ।

୨୧] ଏହି ମହାକାବ୍ୟ ଧର୍ମ, ଅର୍ଥ, କାମ, ମୋକ୍ଷ ରୂପ ପୁରୁଷାର୍ଥ ଚତୁଷ୍ଟୟର ପ୍ରକାଶକ ହେଲେ ମଧ୍ୟ ମୁଖ୍ୟତଃ ଅର୍ଥ ପ୍ରଧାନ ହୋଇଥାଏ । ପୁଣି ଲୋକ ସ୍ୱଭାବଜ୍ଞାନ ସହିତ ସମସ୍ତ ରସର ପୃଥକ୍ ପୃଥକ୍ ଅବବୋଧ କରାଇଥାଏ ।

ଉପର୍ଯୁକ୍ତ ତିନିଗୋଟି କାରିକାରେ ଭାମହ ମହାକାବ୍ୟର ବୈଶିଷ୍ଟ୍ୟ ପ୍ରଦର୍ଶନ କରିବାକୁ ଯାଇ ଶବ୍ଦ ଓ ଅର୍ଥ ଅଳଙ୍କାର, ବର୍ଣ୍ଣନୀୟ ବିଷୟ, ରଚନା ବିଧାନ, ଶୈଳୀ, ଆଚାର ପାଳନ ଓ ରସାତ୍ମକ ଚମତ୍କାରିତା ପ୍ରତି ନିର୍ଦ୍ଦେଶ ଦେଇଛନ୍ତି । ମହାକାବ୍ୟର ମୌଳିକ ତତ୍ତ୍ୱ ଏଥିରେ ନିହିତ ।

ନାୟକଂ ପ୍ରାଗୁପନ୍ୟସ୍ୟ ବଂଶବୀର୍ଯ୍ୟଶ୍ରୁତାଦିଭିଃ ।
ନ ତସ୍ୟୈବ ବଧଂ ବ୍ରୂୟାଦନ୍ୟୋତ୍କର୍ଷାଭିଧିତ୍ସୟା ॥ ୧୨ ॥

ଯଦି କାବ୍ୟ ଶରୀରସ୍ୟ ନ ସ ବ୍ୟାପିତୟେଷ୍ୟତେ ।
ନ ଚାଭ୍ୟୁଦୟଭାକ୍ତସ୍ୟ ମୁଧାଦୌ ଗ୍ରହଣଂ ସ୍ତବେ ॥ ୧୩ ॥

---

୧୨] କାବ୍ୟରେ ପ୍ରଥମେ ବଂଶ, ବଳ, ଜ୍ଞାନ ଆଦି ବୈଶିଷ୍ଟ୍ୟ ଯୁକ୍ତ ନାୟକର ମହତ୍ତ୍ୱ ପ୍ରତିପାଦନ କରି ପରେ ଅନ୍ୟର ଉତ୍କର୍ଷ ପ୍ରକାଶନ ଅଭିପ୍ରାୟରେ ନାୟକର ବଧ ବର୍ଣ୍ଣନା ଅନୁଚିତ ।

ସାଧାରଣତଃ କାବ୍ୟ କଥାରେ ନାୟକ, ପ୍ରତି ନାୟକ, ଉପ ନାୟକ, ଅନୁନାୟକ ଆଦିର ସଂଯୋଜନ ହୋଇଥାଏ । ସେ ମଧ୍ୟରେ ନାୟକ ସର୍ବଗୁଣ ସମ୍ପନ୍ନ ହୋଇଥାଏ ଓ କଥାର ଆରମ୍ଭରୁ ଶେଷ ଯାଏଁ ବିଦ୍ୟମାନ ଥାଏ । ଯଥା ରାମାୟଣ କାବ୍ୟର ନାୟକ ରାମ । ପ୍ରତି ନାୟକ ତାହାକୁ କହନ୍ତି – ଯେ ଅନ୍ୟାୟକାରୀ । ଉଦ୍ଧତ ଓ ନାୟକ ଦ୍ୱାରା ବଧ୍ୟ ହୋଇଥାଏ । ଯଥା– ରାବଣ । ଯେ ନାୟକ ଠାରୁ ସାମାନ୍ୟ ଗୁଣହୀନ କିନ୍ତୁ ଆଦରଣୀୟ ତାହାକୁ କହନ୍ତି ଉପନାୟକ । ଯଥା– ସୁଗ୍ରୀବ । ନାୟକର ଗୁଣ ସହିତ ସମାନ କିନ୍ତୁ ଅନୁଗତ ତାହାକୁ ଅନୁନାୟକ କହନ୍ତି । ଯଥା– ଲକ୍ଷ୍ମଣ ।

ଭୋଜରାଜଙ୍କ ସରସ୍ୱତୀ କଣ୍ଠା ଭରଣରୁ ଏ ସମ୍ବନ୍ଧୀୟ ସୂଚନା ମିଳେ ।

" ତେଷୁ ସର୍ବଗୁଣୋପେତଃ କଥା ବ୍ୟାପୀ ସ ନାୟକଃ ।
ଅନ୍ୟାୟ ବାଂସ୍ତଦୁଚ୍ଛେଦ୍ୟ ଉଦ୍ଧତଃ ପ୍ରତିନାୟକଃ ।
ତତଃ କୈଶ୍ଚିଦ୍ ଗୁଣୈର୍ହୀନଃ ପୂଜ୍ୟସ୍ତୈର୍ବୋପନାୟକଃ ।
ସମୋ ନ୍ୟୂନୋଽପି ବା ତସ୍ୟ କଳାଯ୍ୟାନନୁନାୟକଃ । "

ଉକ୍ତ କାରିକାରୁ ବୋଧହୁଏ ରାମଦି ବିଯୋଗାନ୍ତକ କାବ୍ୟକୁ ପସନ୍ଦ କରି ନାହାନ୍ତି । ଭାରତୀୟ ନୀତି " ମଧୁରେଣ ସମାପୟେତ୍ " । ଶ୍ଳାଘ୍ୟ ମହତ୍‌ଗୁଣ ସମ୍ପନ୍ନ ନାୟକର ଉତ୍କର୍ଷ ଦେଖାଇ ପରେ ପ୍ରତି ନାୟକ ଦ୍ୱାରା ତାହାର ବଧ ବର୍ଣ୍ଣନା ପାଠକ ହୃଦୟରେ ଆଘାତ ଦେଇପାରେ ।

୧୩] ଯଦି କାବ୍ୟରେ ନାୟକର ବ୍ୟାପକ ବର୍ଣ୍ଣନା ବାଞ୍ଛନୀୟ ନୁହେଁ ବା ତାହାର ଅଭ୍ୟୁଦୟ ଅଥବା ପ୍ରଶସ୍ତି ଗାନ କରି କରିବାକୁ ଚାହାନ୍ତି ନାହିଁ, ତେବେ ସେପରି ବ୍ୟକ୍ତିକୁ ନାୟକ ଭାବରେ ଗ୍ରହଣ କରିବା ବ୍ୟର୍ଥ ଅଟେ ।

ନାଟକଂ ଦ୍ୱିପଦୀ ଶମ୍ୟା ରାସକସ୍କନ୍ଧକାଦି ଯତ୍ ।
ଉକ୍ତଂ ତଦଭିନେୟାର୍ଥମୁକ୍ତୋଽନ୍ୟୋସ୍ତସ୍ୟ ବିସ୍ତରଃ ॥ ୧୪ ॥

ସଂସ୍କୃତାନାକୁଳଶ୍ରବ୍ୟ ଶବ୍ଦାର୍ଥପଦବୃତ୍ତିନା ।
ଗଦ୍ୟେନ ଯୁକ୍ତୋଦାତ୍ତାର୍ଥା ସୋଚ୍ଛ୍ୱାସାଽଽଖ୍ୟାୟିକା ମତା ॥ ୧୫ ॥

---

୧୪] ନାଟକ, ଦ୍ୱିପଦୀ, ଶମ୍ୟା, ରାସକ, ସ୍କନ୍ଧକ ଆଦି ଯେଉଁ ସବୁ କାବ୍ୟଭେଦ ରହିଛି, ତାହା ଅଭିନୟ ପ୍ରଧାନ ଅଟେ । ଅନ୍ୟ ଆଲଂକାରିକ ସେ ସମସ୍ତ ବିଷୟ ବ୍ୟାପକଭାବେ ବର୍ଣ୍ଣନା କରିଯାଇଛନ୍ତି ।

ଅଷ୍ଟାଦଶ କାରିକାରେ ଗ୍ରନ୍ଥକାର କାବ୍ୟରେ ଯେଉଁ ପାଞ୍ଚ ପ୍ରକାର ବିଭାଗ ପ୍ରଦର୍ଶନ କରିଛନ୍ତି, ସେ ମଧ୍ୟରୁ ମହାକାବ୍ୟର ନିରୂପଣ ଭାମହ ପ୍ରଥମେ କରିଛନ୍ତି । କ୍ରମପ୍ରାପ୍ତ ଅଭିନେୟାର୍ଥର ଚର୍ଚ୍ଚା ବିସ୍ତୃତ ଭାବେ ଭରତ ନାଟ୍ୟ ଶାସ୍ତ୍ର ରେ କରିଥିବାରୁ ଭାମହ ସେ ବିଷୟରେ କିଛି ଉଲ୍ଲେଖ କରି ନାହାନ୍ତି । ଭାମହଙ୍କ ଉଦ୍ଦେଶ୍ୟ କେବଳ ଶ୍ରବ୍ୟକାବ୍ୟର ସ୍ୱରୂପ ନିରୂପଣ । ତେଣୁ ଦୃଶ୍ୟ କାବ୍ୟର ସୂଚନା ମାତ୍ର ଦେଇଛନ୍ତି । କିନ୍ତୁ ପରବର୍ତ୍ତୀ ଲକ୍ଷଣ ଗ୍ରନ୍ଥରେ ଦ୍ୱିପଦୀ, ଶମ୍ୟା ଓ ସ୍କନ୍ଧକ ବିଷୟରେ କୌଣସି ସୂଚନା ମିଳେ ନାହିଁ । ବୋଧହୁଏ ଭାମହଙ୍କ ସମୟରେ ଏ ସମସ୍ତ ପ୍ରଚଳିତ ଥିଲା । ପରେ ସେ ସବୁ ଲୁପ୍ତ ପ୍ରାୟ । ହେମଚନ୍ଦ୍ର ରୂପକର ଦୁଇଗୋଟି ଭେଦ ଦର୍ଶାଇଛନ୍ତି - ପାଠ୍ୟ ଓ ଗେୟ । ପାଠ୍ୟରେ ନାଟକ, ପ୍ରକରଣ ଆଦିଗୃହୀତ ଏବଂ ଗେୟରେ ଡୋମ୍ବିକା, ଭାଣ ଆଦି । ଏଥିରୁ ସ୍ପଷ୍ଟ ହୁଏ, ଗେୟ ରୂପକର ଦୁଇଟି ତତ୍ତ୍ୱ - ଗୀତ ଓ ଅଭିନୟ । ଯାହାକୁ ଆଜି କାଲି ଗୀତିନାଟ୍ୟ [ଅପେରା] କହନ୍ତି । ହେମଚନ୍ଦ୍ରଙ୍କ ଅନୁସାରେ ଏହି ଗୀତିନାଟ୍ୟର ପ୍ରଭେଦ - ଭାଣ, ଡୋମ୍ବିକା, ଶିଙ୍ଗ, ଭାଣିକା, ପ୍ରେରଣ, ରାମାକ୍ରୀଡ଼, ହଲ୍ଲୀସକ, ରାସକ, ଗୋଷ୍ଠୀ, ଶ୍ରୀଗଦିତ, ରାଗ, କାବ୍ୟ, ଶମ୍ୟା, ଛଲିତ, ଦ୍ୱିପଦୀ ଆଦି । ରାସକର ଲକ୍ଷଣ ହେମଚନ୍ଦ୍ର ଦେଇଛନ୍ତି ।

" ଅନେକ ନର୍ତ୍ତକୀ ଯୋଗ୍ୟଂ ଚିତ୍ରତାଳଲୟାନ୍ୱିତମ୍ ।
ଆଚତୁଃଷଷ୍ଟି ଯୁଗଲାଦ୍ ରାସକଂ ମସୃଣୋଦ୍ଧତମ୍ ," [କାବ୍ୟାନୁଶାସନ]

ସାହିତ୍ୟଦର୍ପଣ-କାର ବିଶ୍ୱନାଥ କବିରାଜ ଷଷ୍ଠ ପରିଚ୍ଛେଦରେ ଏ ମଧ୍ୟରୁ କେତେକର ସ୍ୱରୂପ ନିରୂପଣ କରିଛନ୍ତି ।

୧୫] ଆଖ୍ୟାୟିକା - ସଂସ୍କୃତ ଭାଷାରେ ଲିଖିତ ଗଦ୍ୟ ରଚନାକୁ ଆଖ୍ୟାୟିକା କୁହାଯାଏ । ସେଥିରେ ବ୍ୟବହୃତ ଶବ୍ଦ, ଅର୍ଥ ଓ ସମାସ ଅକ୍ଲିଷ୍ଟ ତଥା ଶ୍ରବ୍ୟ ହେବା ଉଚିତ । ବିଷୟ ଉଦାତ୍ତ ଓ ରଚନା ଉଚ୍ଛ୍ୱାସ [ଅଧ୍ୟାୟ] ଯୁକ୍ତ ହେବା ବିଧେୟ ।

ବୃତ୍ତମାଖ୍ୟାୟତେ ତସ୍ୟାଂ ନାୟକେନ ସ୍ୱଚେଷ୍ଟିତମ୍ ।
ବକ୍ତ୍ରଂ ଗ୍ଚାପରବକ୍ତ୍ରଂ ଚ କାଲେ ଭାବାର୍ଥଶଂସି ଚ ॥ ୧୬ ॥
କବେରଭିପ୍ରାୟକୃତୈଃ କଥନୈଃ କୈଶ୍ଚିଦଂକିତା ।
କନ୍ୟାହରଣସଂଗ୍ରାମବିପ୍ରଲମ୍ଭୋଦୟାନ୍ୱିତା । ॥ ୧୭ ॥
ନ ବକ୍ତ୍ରାପରବକ୍ତ୍ରାଭ୍ୟାଂ ଯୁକ୍ତା ନୋଚ୍ଛ୍ୱାସବତ୍ୟପି ।
ସଂସ୍କୃତା ସଂସ୍କୃତା ଚେଷ୍ଟା କଥାଽପଭ୍ରଂଶଭାକ୍ତଥା ॥ ୧୮ ॥
ଅନ୍ୟୈଃ ସ୍ୱଚରିତଂ ତସ୍ୟାଂ ନାୟକେନତୁ ନୋଚ୍ୟତେ ।
ସ୍ୱଗୁଣାବିଷ୍କୃତଂ କୁର୍ଯ୍ୟାଦଭିଜାତଃ କଥଂ ଜନଃ ॥ ୧୯ ॥

---

ସମାସ ବହୁଳ ଗଦ୍ୟ ଯଦି କ୍ଳିଷ୍ଟ ହୁଏ । ତେବେ ଅର୍ଥବୋଧ ବାଧିତ ହୁଏ । ଶ୍ରବ୍ୟ ନ ହେଲେ ଉଚ୍ଚାରଣ ଓ ଶ୍ରବଣରେ ବାଧା ପଡ଼ିଥାଏ । ପରେ ସାହିତ୍ୟ ଦର୍ପଣର ଷଷ୍ଠ ପରିଚ୍ଛେଦରେ ଆଖ୍ୟାୟିକାର ସ୍ୱରୂପ ପ୍ରଦର୍ଶିତ ।

ଆଖ୍ୟାୟିକା କଥାବତ୍ ସ୍ୟାତ୍ କବେର୍ବଂଶାନୁକୀର୍ତ୍ତନମ୍ ।
ଅସ୍ୟାମନ୍ୟକବୀନାଂ ଚ ବୃତ୍ତଂ ପଦ୍ୟଂ କ୍ୱଚିତ୍ କ୍ୱଚିତ୍ ।
କଥାଂଶାନାଂ ବ୍ୟବଚ୍ଛେଦ ଆଶ୍ୱାସ ଇତି ବଧ୍ୟତେ ।
ଆର୍ଯ୍ୟା ବକ୍ତ୍ରାପବକ୍ତ୍ରାଣାଂ ଛନ୍ଦସା ଯେନ କେନଚିତ୍ । ଯଥା–ହର୍ଷଚରିତ ।

୧୬] ଆଖ୍ୟାୟିକାରେ ନାୟକ ନିଜ ଚରିତ ସ୍ୱୟଂ ବ୍ୟକ୍ତକରେ । ଯଥାବସର ପରବର୍ତ୍ତୀ ଘଟନାର ସୂଚନା ରହେ । ବକ୍ତ୍ର ଓ ଅପବକ୍ତ୍ର ଛନ୍ଦରେ ଦିଆଯାଏ । ବକ୍ତ୍ର = ଅନୁଷ୍ଟୁର ପରି ବୃତ୍ତ । ଅପବକ୍ତ୍ର = ବୈତାଳୀୟ ଛନ୍ଦ ।

୧୭] ଆଖ୍ୟାୟିକା କବିର ବିଶିଷ୍ଟ ଅଭିପ୍ରାୟ ପ୍ରକାଶକ ଅଟେ । ଏଥିରେ କନ୍ୟା ହରଣ, ସଂଗ୍ରାମ, ପ୍ରେମୀଙ୍କର ବିଯୋଗ ଓ ଅଭ୍ୟୁଦୟ ସମନ୍ୱିତ ହୋଇଥାଏ ।

କବିର ଅଭିପ୍ରାୟ ପ୍ରକାଶକ'ର ତାତ୍ପର୍ଯ୍ୟ-କବି ଏପରି ଶବ୍ଦ ପ୍ରୟୋଗ କରିଥିବେ, ଯେଉଁଥିରେ କବିଙ୍କ ବ୍ୟକ୍ତିତ୍ୱ ଅନାୟାସ ପରିସ୍ଫୁଟ ହେଉଥିବ ।

୧୮] କଥା - ବକ୍ତ୍ର ଓ ଅପବକ୍ତ୍ର ଛନ୍ଦ ରହିତ, ଉଚ୍ଛ୍ୱାସ ରୂପେ ଅବିଭାଜିତ ସଂସ୍କୃତ, ଅସଂସ୍କୃତ [ପ୍ରାକୃତ] ତଥା ଅପଭ୍ରଂଶ ଭାଷାଯୁକ୍ତ ରଚନା ନାମରେ ଅଭିହିତ ।

୧୯] କଥା କାବ୍ୟରେ ନାୟକ ନିଜ ଚରିତ୍ରକୁ ନିଜେ ପ୍ରକାଶ କରେ ନାହିଁ । ତାହା ଅନ୍ୟ ମୁଖରେ କଥିତ ହୋଇଥାଏ । କୌଣସି କୁଳୀନ ବ୍ୟକ୍ତି ନିଜମୁଖରେ ନିଜ ଗୁଣ ବଖାଣି ପାରେ କି ? ଆଖ୍ୟାୟିକା ଓ କଥା ମଧ୍ୟରେ ଥିବା ଅନ୍ତର ।

ଅନବଦ୍ଧଂ ପୁନର୍ଗାଥା ଶ୍ଲୋକମାତ୍ରାଦି ତତ୍ପୁନଃ ।
ଯୁକ୍ତଂ ବକ୍ର ସ୍ୱଭାବୋକ୍ତ୍ୟା ସର୍ବମେବୈ ତଦିଷ୍ୟତେ ॥ ୩୦ ॥
ବୈଦର୍ଭମନ୍ୟଦସ୍ତୀତି ମନ୍ୟନ୍ତେ ସୁଧିୟୋଽପରେ ।
ତଦେବ ଚ କିଲ ଜ୍ୟାୟଃ ସଦର୍ଥମପିନାପରମ୍ ॥ ୩୧ ॥

| ଆଖ୍ୟାୟିକା | କଥା |
|---|---|
| ୧) ସଂସ୍କୃତ ଭାଷାରେ ଲିଖିତ | ସଂସ୍କୃତ, ପ୍ରାକୃତ ବା ଅପଭ୍ରଂଶ ଭାଷାରେ ଲିଖିତ |
| ୨) ବକ୍ତ୍ର, ଅପବକ୍ତ୍ର ଛନ୍ଦ ଯୁକ୍ତ | ବକ୍ତ୍ର, ଅପବକ୍ତ୍ର ଛନ୍ଦ ଶୂନ୍ୟ । |
| ୩) ଉଚ୍ଛ୍ୱାସ ଯୁକ୍ତ | ଉଚ୍ଛ୍ୱାସ ରହିତ |
| ୪) ନାୟକ ଦ୍ୱାରା ସ୍ୱଚରିତ ବର୍ଣ୍ଣନ | ଅନ୍ୟ ବ୍ୟକ୍ତିଦ୍ୱାରା ନାୟକ ଚରିତ ବର୍ଣ୍ଣନ । |

୩୦] **ଅନିବଦ୍ଧ**—କାବ୍ୟର ଅନ୍ୟ ଏକ ଭେଦ-ଅନିବଦ୍ଧ [ମୁକ୍ତକ] । ସାଧାରଣତଃ ଗାଥା [ପ୍ରାକୃତ ଭାଷାରେ ଲିଖିତ ପଦ୍ୟ] ଏବଂ ଶ୍ଳୋକ [ସଂସ୍କୃତ ପଦ୍ୟ] ମାନଙ୍କୁ ଅନିବଦ୍ଧ କହନ୍ତି । ସମସ୍ତ ପ୍ରକାର କାବ୍ୟ ବିଶେଷ ବକ୍ରୋକ୍ତି ଓ ସ୍ୱଭାବୋକ୍ତି ଯୁକ୍ତ ହେବା ବିଧେୟ ।

ନିବନ୍ଧ ବା ପ୍ରବନ୍ଧାତ୍ମକତାର ଅଭାବ ଅନିବନ୍ଧ । ପୂର୍ବାପର ସଂଗତିକୁ ଅପେକ୍ଷା ନକରି ଯେଉଁ ଗାଥା ଶ୍ଳୋକର ରସାସ୍ୱାଦନ ସମ୍ଭବ ହୁଏ, ତାହା ଅନିବଦ୍ଧ ଅର୍ଥାତ୍ ମୁକ୍ତକ କାବ୍ୟ । ପ୍ରବନ୍ଧ କାବ୍ୟର ରସାସ୍ୱାଦନ ପାଇଁ ପୂର୍ବାପର ସଂଗତି ବୋଧ ଆବଶ୍ୟକ । କିନ୍ତୁ ମୁକ୍ତକ କାବ୍ୟ ସ୍ୱୟଂ ସମ୍ପୂର୍ଣ୍ଣ । ଲୋଚନକାର କହନ୍ତି—'ପୂର୍ବାପର ନିରପେକ୍ଷେଣାପି ଯେନ ରସ ଚର୍ବଣା କ୍ରିୟତେ ତଦେବ ମୁକ୍ତକମ୍' । ପ୍ରବନ୍ଧ କାବ୍ୟରେ ମଧ ସୂକ୍ତି ଗୁଡିକ ମୁକ୍ତକ ପରି ରସାସ୍ୱାଦନରେ ସ୍ୱୟଂ ସମ୍ପୂର୍ଣ୍ଣ ଅଟନ୍ତି ।

ଯଥା— ନ ରତ୍ନମନ୍ୱିଷ୍ୟତି ମୃଗ୍ୟତେ ହି ତତ୍ । (କାଳିଦାସ)
ଅର୍ଥାତ୍ ରତ୍ନ କାହାକୁ ଖୋଜେ ନାହିଁ, ରତ୍ନକୁ ସମସ୍ତେ ଖୋଜନ୍ତି ।
କିମିବ ହି ମଧୁରାଣାଂ ମଣ୍ଡନଂ ନାକୃତୀନାମ୍ । [କାଳିଦାସ]
ଅର୍ଥାତ୍ ଯେ ସ୍ୱଭାବସୁନ୍ଦର ପ୍ରତ୍ୟେକ ବସ୍ତୁ ତାହାର ଶୋଭା ବଢାଇଥାନ୍ତି ।
ଅନୁରୂପ ଯଥା—ସମୟ ପାଇଲେ ଜୀବନେ ପ୍ରବୃତ୍ତି ଫୁଟି ପଡ଼ିଥାଏ ଆସି ।
ପ୍ରବୃତ୍ତି ବର୍ଜିତ କେ ଅଛୁ ଜଗତେ କି ଗୃହୀ କି ବନ ବାସୀ ? [ଗଙ୍ଗାଧର]

ଭାମହଙ୍କ ଦୃଷ୍ଟିରେ ବକ୍ରୋକ୍ତି କାବ୍ୟଗ୍ରାହ୍ୟତା ବିଧାୟକ ଅଳଂକାରର ପ୍ରାଣ-ଭୂତ ତତ୍ତ୍ୱ । ସ୍ୱଭାବୋକ୍ତି ଅଳଂକାର ଶୂନ୍ୟ ହୋଇ ମଧ କାବ୍ୟଗ୍ରାହ୍ୟତା ବା ଚମତ୍କୃତି ସୃଷ୍ଟି କରିବା ହେତୁ ଅଳଂକାର ରୂପେ ଗ୍ରହଣୀୟ । ଯେହେତୁ ଅଳଂକାରର ଲକ୍ଷ୍ୟ-କାବ୍ୟ-ଗ୍ରାହ୍ୟତା ସୃଷ୍ଟି । କିନ୍ତୁ ପରେ ଭାମହଙ୍କ ଅନୁଯାୟୀ ଆଚାର୍ଯ୍ୟ କୁନ୍ତକ ବକ୍ରୋକ୍ତିକୁ ଗ୍ରହଣ କଲେ ମଧ ସ୍ୱଭାବୋକ୍ତିକୁ ଅଳଂକାର୍ଯ୍ୟ ମନେ କରିଛନ୍ତି ।

ଗୌଡ଼ୀୟମିଦମେତତ୍ତୁ ବୈଦର୍ଭମିତି କିଂ ପୃଥକ୍ ।
ଗତାନୁଗତିକନ୍ୟାୟାନ୍ନାନାଖ୍ୟେୟମମେଧସାମ୍ ॥ ୩୨ ॥

ନନୁ ଚାଶ୍ମକବଂଶାଦି ବୈଦର୍ଭମିତି କଥ୍ୟତେ ।
କାମଂ ତଥାସ୍ତୁ ପ୍ରାୟେଣ ସଂଜ୍ଞେଚ୍ଛାତୋ ବିଧୀୟତେ ॥ ୩୩ ॥

ଅପୁଷ୍ଟାର୍ଥମବକ୍ରୋକ୍ତି ପ୍ରସନ୍ନମୃଜୁ କୋମଳମ୍ ।
ଭିନ୍ନଂ ଗେୟମିବେଦଂ ତୁ କେବଳଂ ଶ୍ରୁତିପେଶଲମ୍ ॥ ୩୪ ॥

---

୩୧) ବୈଦର୍ଭ ଗୌଡ ମାର୍ଗ ଭେଦ —କେତେକ ବିଦ୍ୱାନ ମନେ କରନ୍ତି— ବୈଦର୍ଭ ନାମକ କାବ୍ୟଭେଦ ହିଁ ଶ୍ରେଷ୍ଠ । ଏତାଦୃଶ ଅର୍ଥ ସୌଷ୍ଠବ ସମ୍ପନ୍ନ ଅନ୍ୟ କାବ୍ୟ ନାହିଁ ।

୩୨) ଯେଉଁମାନେ ଏହା ଗୌଡ଼ୀୟ ଏହା ବୈଦର୍ଭ ଏପରି ପାର୍ଥକ୍ୟ ଦେଖନ୍ତି, ସେମାନେ ସ୍ୱଳ୍ପମତି ସମ୍ପନ୍ନ ଓ ପରମ୍ପରା ବୋଧରେ ଗୋଟିକୁ ଶ୍ରେଷ୍ଠ ଓ ଅନ୍ୟଟିକୁ ହୀନ ମନେ କରନ୍ତି ।

ଭାମହ ବୈଦର୍ଭ ବା ଗୌଡ଼ୀୟକୁ ପୃଥକ ଭେଦରେ ନଦେଖି କାବ୍ୟଭେଦ ଭାବେ ଗ୍ରହଣ କରିଛନ୍ତି । ଗ୍ରନ୍ଥକାରଙ୍କ ସମୟରେ କେତେକ ବିଦ୍ୱାନ ବୈଦର୍ଭ କାବ୍ୟ ଭେଦକୁ ଶ୍ରେଷ୍ଠ ମନେ କରୁଥିଲେ । ତା ସମକକ୍ଷ ଅନ୍ୟ କୌଣସି କାବ୍ୟ ଭେଦକୁ ଗ୍ରହଣ କରୁ ନଥିଲେ । ଭାମହ କିନ୍ତୁ ଏପରି ଦ୍ୱୈବିଧ୍ୟକୁ ନିଃସାର ଓ ଅଗ୍ରାହ୍ୟ ମନେ କରିଛନ୍ତି ।

୩୩) 'ଅଶ୍ମକ ବଂଶ'କୁ ବୈଦର୍ଭ କହନ୍ତି। ଏହା ହୋଇପାରେ । କିନ୍ତୁ ଏ ଧରଣର ନାମକରଣ ଯାଦୃଚ୍ଛିକ ଓ ଗତାନୁଗତିକ ।

ପ୍ରଫେସର କାଣେ କହନ୍ତି — ଅଶ୍ମକବଂଶ ରଘୁବଂଶ ପରି ଏକ କାବ୍ୟ ଅଟେ । କିନ୍ତୁ ଏ ନାମର କାବ୍ୟ ଦୁଷ୍ପ୍ରାପ୍ୟ । ଭାରତର ଦକ୍ଷିଣ ପ୍ରଦେଶ ଟ୍ରାଭାଙ୍କୋରର ନାମ ପ୍ରାଚୀନ ଅଶ୍ମକ ହୋଇପାରେ, ସେଠାରେ ଅଶ୍ମକ ନାମକ ପ୍ରସିଦ୍ଧ ରାଜବଂଶୀ ଥିବେ ଓ ସେହି ରାଜାଙ୍କ ପରିଚୟାତ୍ମକ ଗ୍ରନ୍ଥ ରଚିତ ହୋଇଥିବ ଅଶ୍ମକବଂଶ । ତାହାକୁ କେତେକ ଆଲୋଚକ ବୈଦର୍ଭ କାବ୍ୟ କହୁଥିବେ । ଭାମହ କିନ୍ତୁ ଏହି ନାମକରଣର ଯାଥାର୍ଥ୍ୟ ସ୍ୱୀକାର କରନ୍ତି ନାହିଁ ।

୩୪) ଅର୍ଥ ଗାମ୍ଭୀର୍ଯ୍ୟ ଓ ବକ୍ରୋକ୍ତି ଶୂନ୍ୟ କେବଳ ସ୍ପଷ୍ଟ, ସରଳ ଓ କୋମଳ ବୈଦର୍ଭ କାବ୍ୟ ଶ୍ରେଷ୍ଠ କାବ୍ୟରୁ ଭିନ୍ନ ସଙ୍ଗୀତ ପରି ଶ୍ରୁତିମଧୁର ହୋଇଥାଏ ।

ଅଲଂକାରି ବଦଗ୍ରାମ୍ୟମର୍ଥ୍ୟଂ ନ୍ୟାଯ୍ୟମନାକୁଳମ୍ ।
ଗୌଡ଼ୀୟମପି ସାଧୀୟୋ ବୈଦର୍ଭମିତି ନାନ୍ୟଥା ॥ ୩୫ ॥

ନ ନିତାନ୍ତାଦିମାତ୍ରେଣ ଜାୟତେ ଚାରୁତା ଗିରାମ୍ ।
ବକ୍ରାଭିଧେୟଶବ୍ଦୋକ୍ତିରିଷ୍ଟା ବାଚାମଲଂକୃତିଃ ॥ ୩୬ ॥

ନେୟାର୍ଥଂ କ୍ଲିଷ୍ଟମନ୍ୟାର୍ଥମବାଚକମଯୁକ୍ତିମତ୍ ।
ଗୂଢଶବ୍ଦାଭିଧାନଂ ଚ କବୟୋ ନ ପ୍ରଯୁଂଜତେ ॥ ୩୭ ॥

---

ଉକ୍ତ କାରିକାରେ ଭାମହ ବୈଦର୍ଭ କାବ୍ୟକୁ ଶ୍ରେଷ୍ଠ ମନେ କରିବା ବ୍ୟକ୍ତିଙ୍କ ମତ ଖଣ୍ଡନ କରିଛନ୍ତି । କାରଣ ସ୍ପଷ୍ଟତା ସରଳତା ଓ କୋମଳତା ଯଦି ବୈଦର୍ଭ କାବ୍ୟର ଶ୍ରେଷ୍ଠଗୁଣ ଅଟେ ତେବେ ସଙ୍ଗୀତରେ ମଧ୍ୟ ଏ ସମସ୍ତ ଗୁଣ ରହିଛି । ଅତଏବ ସଙ୍ଗୀତଠାରୁ ବୈଦର୍ଭ କାବ୍ୟ ଭିନ୍ନ ନୁହେଁ । ବାସ୍ତବରେ କାବ୍ୟର ମହତ୍ତ୍ୱ ଅର୍ଥଗାମ୍ଭୀର୍ଯ୍ୟ, ଓ ବକ୍ରୋକ୍ତିରେ ସନ୍ନିହିତ । ହୃଦୟରେ ରସ ସଞ୍ଚାର କରିବା କାବ୍ୟର ମୁଖ୍ୟଧର୍ମ । ପ୍ରସାଦଗୁଣ ସମ୍ପନ୍ନତା, ସରଳତା ବା ଶ୍ରୁତିମଧୁରତା କାବ୍ୟର ଅନିବାର୍ଯ୍ୟ ଉପାଦାନ ନୁହେଁ ।

୩୫) ଅଲଂକାର ସମନ୍ୱିତ, ଗ୍ରାମ୍ୟଦୋଷ ମୁକ୍ତ, ଅର୍ଥବାନ, ନ୍ୟାୟସଙ୍ଗତ ଏବଂ ଜଟିଳ ତାଦିଦୋଷ ଶୂନ୍ୟ ଗୌଡ଼ୀୟ କାବ୍ୟ ମଧ୍ୟ ଶ୍ରେଷ୍ଠ ଅଟେ । ଅନ୍ୟଥା ଏ ସମସ୍ତ ଗୁଣ ଶୂନ୍ୟ ବୈଦର୍ଭ କାବ୍ୟ ମଧ୍ୟ ଶ୍ରେଷ୍ଠ ନୁହେଁ ।

ଯେଉଁମାନେ ନାମମାତ୍ରକୁ ଆଧାର କରି ବୈଦର୍ଭକୁ ଉତ୍କୃଷ୍ଟ ଓ ଗୌଡ଼ୀୟକୁ ନିକୃଷ୍ଟ କହନ୍ତି । ସେମାନଙ୍କ ବିଚାର ଗ୍ରହଣୀୟ ନୁହେଁ । ଆଲୋଚନା ପ୍ରାୟ ପୃଥକ ହେବା କାବ୍ୟର ଗୁଣ ବା ବୈଶିଷ୍ଟ୍ୟ ସମ୍ବନ୍ଧରେ ବିଚାର ହେବା ଆବଶ୍ୟକ ।

୩୬) କେବଳ ନିତାନ୍ତ ସୁନ୍ଦର, ଅତି ସୁନ୍ଦର, ଚମତ୍କାର ଆଦି ବିଶେଷଣ ଯୋଗକରି କହିଦେଲେ ବାଣୀରେ ଚାରୁତା ସୃଷ୍ଟି ହୋଇଯାଏ ନାହିଁ । ଅର୍ଥ ଓ ଶବ୍ଦର ବକ୍ରତା । ହିଁ ବାଣୀର ଅଲଂକାର (ସୌନ୍ଦର୍ଯ୍ୟ) ଅଟେ ।

୩୭) କାବ୍ୟଦୋଷ — ନେୟାର୍ଥ, କ୍ଲିଷ୍ଟ, ଅନ୍ୟାର୍ଥ, ଅବାଚକ, ଅଯୁକ୍ତିମତ୍ ଏବଂ ଗୂଢଶବ୍ଦାଭିଧାନ ଆଦି ଦୋଷ ଦୁଷ୍ଟ ଶବ୍ଦ ସତ୍କବି ନିଜକୃତିରେ ପ୍ରୟୋଗ କରନ୍ତି ନାହିଁ ।

ଭାମହ ପ୍ରଥମ, ଦ୍ୱିତୀୟ, ଚତୁର୍ଥ, ଓ ପଞ୍ଚମ ପରିଚ୍ଛେଦରେ ଯେଉଁ ସବୁ ଦୋଷ ନିରୂପଣ କରିଛନ୍ତି, ପରବର୍ତ୍ତୀ କାଳରେ ଆଳଂକାରିକ ଆଚାର୍ଯ୍ୟ ବୃନ୍ଦ ଏ ମଧ୍ୟରୁ କେତେକ ଦୋଷ ଗ୍ରହଣ କରିଛନ୍ତି ଓ ଅନ୍ୟ କେତେକ ଦୋଷ ଗ୍ରହଣ କରି ନାହାନ୍ତି । ସ୍ଥଳ

ନେୟାର୍ଥଂ ନାପୂରେ ଯୁକ୍ତୋ ଯସ୍ୟାର୍ଥଃ କୃତିଭିର୍ବଲାତ୍ ।
ଶବ୍ଦନ୍ୟାୟାନ୍ ପ୍ରାରୂଢଃ କଥଂଚିତ୍ସ୍ଵାଭିସନ୍ଧିନା ॥ ୩୮ ॥
ମାପ୍ୟେବ ଭଦ୍ରେତି ଯଥା ସା ଗୃଧାଧ୍ବୀ ପ୍ରକଳ୍ପନା ।
ବେଣୁଦାକେତିତ ଚ ତାଂ ନୟନ୍ତି ବଚମାଦ୍ବିନା । ॥ ୩୯ ॥

---

ବିଶେଷରେ ଲକ୍ଷଣ-ଉଦାହରଣ ମଧ୍ୟ ବଦଳିଛି । ଭାମହଙ୍କ ପ୍ରଦର୍ଶିତ ଅଳଂକାର ସଂଖ୍ୟାରେ ଯେପରି ଅଭିବୃଦ୍ଧି, ସେହିପରି ଦୋଷର ସଂଖ୍ୟା ମଧ୍ୟ ବଢ଼ିଯାଇଛି ।

୩୮) ନେୟାର୍ଥ ଦୋଷ– ଶବ୍ଦନ୍ୟାୟ ( ବ୍ୟାକରଣ )ର ପ୍ରତିକୂଳ, ନିଜ ଅଭିପ୍ରାୟ ଅନୁକୂଳ ଅର୍ଥ ପ୍ରଦାନ ପାଇଁ କଠିନ ରୀତିରେ ଶବ୍ଦର ବଳାତ୍କାର ପ୍ରୟୋଗ ନେୟାର୍ଥ ଦୋଷଯୁକ୍ତ ଅଟେ ।

ନେୟ (ବଳପୂର୍ବକ) ଅର୍ଥ = ନେୟାର୍ଥ ।

୩୯) ଉଦାହରଣ— ମାୟାପରି ଭଦ୍ରା, ଏହି କଳ୍ପନା (କାବ୍ୟ ରଚନା) ଦୋଷଯୁକ୍ତ ଅଟେ । ବେଣୁ ଦାକ ସନ୍ଦର୍ଭରେ ଏହାର ଅର୍ଥ ସ୍ପଷ୍ଟ । କିନ୍ତୁ ବେଣୁଦାକ ସନ୍ଦର୍ଭ ଦୁଷ୍ପ୍ରାପ୍ୟ ହେବାରୁ ଏହା ନେୟାର୍ଥ ଦୋଷ ଯୁକ୍ତ ।

ବାସ୍ତବରେ ବହୁଆ ଲେଖକ ଭାମହଙ୍କ ଏହି ଧାରଣା ବୁଝିବା ପାଇଁ ସକ୍ଷମ ହୋଇ ପାରି ନାହାନ୍ତି । କେତେକ ଆଲୋଚକଙ୍କ ସମ୍ଭାବ୍ୟ ମତ ଉଦ୍ଧାର କରାଯାଉଛି ।

ତାତାଗୃର୍ଯ୍ୟ କହନ୍ତି— ହୋଇପାରେ, କୌଣସି କାବ୍ୟର ନାୟକ ବେଣୁଦାକ ଓ ତାର ନାୟିକା ଭଦ୍ରା ମାୟା ପରି ମୋହନ ଶୀଳା ଥିବ । ନାଗନାଥ ଶାସ୍ତ୍ରୀ କହନ୍ତି – ବେଣୁଦାକେଃ ବଦଳରେ ବେଣୁଦାରେଃ ପାଠ ସଙ୍ଗତ । ବେଣୁଦାର ବାଣାସୁରର ପୁତ୍ର । ସେ ମାୟାରେ ଧୁରୀଣ ଥିବା ସମ୍ଭବ ଓ ସେହି ମାୟା ବଳରେ ଅନ୍ୟର ମଙ୍ଗଳ କରିଥିବ । ଶଙ୍କର ରାମ କହନ୍ତି—ବେଣୁଦାକର ଅର୍ଥ କୃଷ୍ଣ । (ବେଣୁ ଦାରୟତୀତି ବେଣୁଦାକଃ' ବେଣୁ ଦାକର ଅର୍ଥ ବେଣୁବାଦକ । କୃଷ୍ଣଙ୍କ ବେଣୁବାଦନ ମାୟାରେ ଲୋକକଲ୍ୟାଣ ହୋଇଥିବ । ଏସମସ୍ତ ସମ୍ଭାବନା ମାତ୍ର ।

୩୮ କାରିକାରେ ନେୟାର୍ଥ ଦୋଷର ଲକ୍ଷଣକୁ ଅନୁଧ୍ୟାନ କଲେ ମନେ ହୁଏ । ପରବର୍ତ୍ତୀ ଆଳଂକାରିକଙ୍କ ଲକ୍ଷଣ ସହିତ କିଛିଟା ସାମ୍ୟ ରହିଛି । ଭୋଜ କହନ୍ତି — ସ୍ୱ-ସଙ୍କେତ ପ୍ରକ୍ଳୃପ୍ତାର୍ଥଂ ନେୟାର୍ଥ ମିତି କଥ୍ୟତେ । (ସରସ୍ୱତୀ କଣ୍ଠାଭରଣ) ଅର୍ଥାତ୍ କବିର ସଙ୍କେତିତ ଅର୍ଥକୁ ନେୟାର୍ଥ କୁହାଯାଏ ।

ବିଶ୍ୱନାଥ କହନ୍ତି—ନେୟାର୍ଥଂ ରୂଢିପ୍ରୟୋଜନାଭାବାଦ୍ ଶକ୍ତିକୃତ ଲକ୍ଷ୍ୟାର୍ଥ ପ୍ରକାଶନମ୍ ' (ସାହିତ୍ୟ ଦର୍ପଣ)

କ୍ଳିଷ୍ଟଂ ବ୍ୟବହିତଂ ବିଦ୍ୟାଦନ୍ୟାର୍ଥଂ ବିଗମେ ଯଥା ।
ବିଜହ୍ରୁସ୍ତସ୍ୟ ତାଃ ଶୋକଂ କ୍ରୀଡାୟାଂ ବିକୃତଂ ଚ ତତ୍ ॥ ୪୦ ॥

---

ଉଦାହରଣ – ଉମାବିମସ୍ତାବ ସେହି କାଳେ ବହି କୋପ । (ଲ-ବ-୧-୩୭)

ରେଖାଙ୍କିତ ପଦର ମାର ବା କନ୍ଦର୍ପ ଅର୍ଥ କବିର ନିଜ ଅଭିପ୍ରାୟ ଅନୁକୂଳ ଅର୍ଥ ପ୍ରକାଶ ପାଇଁ କଠିନ ସ୍ଥଳରେ ଶବ୍ଦର ବଳାତ୍କାର ପ୍ରୟୋଗ ହେତୁ ନେୟାର୍ଥ ଦୋଷଯୁକ୍ତ । ସେହିପରି— ଶମ୍ବର ମଧୁ ଲେପନ୍ତି ଶମ୍ବର ମଧ୍ୟକୁ । (ଲ-ବ-୧-୩୮) । ରେଖାଙ୍କିତ ପଦ ସମୂହ 'ଶର' ଅର୍ଥରେ ପ୍ରଯୁକ୍ତ । ଏହା ଭାଷା ଶାସ୍ତ୍ର ପ୍ରତିକୂଳ କଷ୍ଟ କଳ୍ପିତ ଅର୍ଥରେ ବ୍ୟବହୃତ ହେତୁ ନେୟାର୍ଥ ଦୋଷ ଯୁକ୍ତ ।

୪୦) କ୍ଳିଷ୍ଟତଥା ଅନ୍ୟାର୍ଥ ଦୋଷ – ଅର୍ଥ ବୋଧରେ ବ୍ୟବଧାନ କ୍ଳିଷ୍ଟ ଦୋଷ ଅଟେ । ଅଭିମତ ଅର୍ଥର ଅଭାବ ହେଲେ ଅନ୍ୟାର୍ଥ ଦୋଷ ହୁଏ ।

ଉଦାହରଣ—ବିଜହ୍ରୁଃ ତସ୍ୟ ତାଃ ଶୋକଂ (ସେହି ନାରୀମାନେ ତାହାର ଶୋକ ହରଣ କଲେ । ଏଠାରେ ବିଜହ୍ରୁଃ (ବି ଉପସର୍ଗ ଯୁକ୍ତ ହୃ ଧାତୁର ଲିଟ୍ ପ୍ରଥମ ପୁରୁଷ ବହୁ ବଚନର ରୂପ ) ହୃ ଧାତୁ ହରଣ କରିବା ଅର୍ଥ ପ୍ରକାଶକରେ । ବି ଉପସର୍ଗ ହୃ ଧାତୁ ବିହାର ଅର୍ଥରେ ବ୍ୟବହୃତ । ଅର୍ଥ ପ୍ରକାଶରେ ବାଧା ସୃଷ୍ଟି ହେତୁ କ୍ଳିଷ୍ଟ ଦୋଷ ।
ଅନୁରୂପ ଉଦାହରଣ-- ବିଶ୍ୱଣ୍ଡିକ ଆସି ପୁଚ୍ଛେକାନୁରେ ବସାଇ ।
ବିଷାଣ ଋଷ୍ୟ ଅଙ୍ଗରୁ ସୁବାସକୁ ପାଇ (ବୈ.ବି ୪-୭)

'ବି' ଆଦ୍ୟ ଅନୁରୋଧରେ କବି ଋଷ୍ୟ ଶୃଂଗ ପରିବର୍ତ୍ତେ ବିଷାଣଋଷ୍ୟ ପ୍ରୟୋଗ କରିଛନ୍ତି । ଏହା କ୍ଳିଷ୍ଟ ଦୋଷ । ଭ୍ରମରଙ୍କ ଟୀକାକାର ଉଦ୍‌ଭଟ 'ଭ୍ରମର ବିବରଣ' ରେ ବାକ୍ୟରେ ପଦମାନଙ୍କର ପରସ୍ପର ଅସନ୍ନିଧିର ଅଭାବକୁ କ୍ଳିଷ୍ଟ ଦୋଷ ରୂପେ ବ୍ୟାଖ୍ୟା କରିଛନ୍ତି ।

ଅନ୍ୟାର୍ଥ ଦୋଷର ଉଦାହରଣ — କ୍ରୀଡାୟାଂ ବିକୃତଂ ଚ ତତ୍ । (ସେହି ଶୋକକୁ କ୍ରୀଡ଼ା (କେଳି)ରେ (ହରଣ) କଲେ । ଏଠାରେ କୃତଂ ସ୍ଥାନରେ ବିକୃତଂ ପ୍ରଯୁକ୍ତ । ବି ଉପସର୍ଗକୁ ଧାତୁ ବିକାର ବା ବିକୃତ ଅର୍ଥରେ ବ୍ୟବହୃତ । ଫଳରେ ଅଭିମତ ଅର୍ଥ ପରିବର୍ତ୍ତେ ଅନ୍ୟାର୍ଥ ପ୍ରକାଶ କରେ । ଅତଏବ ଅନ୍ୟାର୍ଥ ଦୋଷ ।

ଅନୁରୂପ ଯଥା —ଆଣନ୍ତେ ଚରଣ ନ ପଡ଼ଇ ଭୂମିତଳେ ।
ପଦ ବିପ୍ଳାବିତ ନାଥ କଲି ଅଶ୍ରୁଜଳେ । (ବେଣୀ ସଂହାର)

ଏଠାରେ ବିପ୍ଳାବିତ ଅର୍ଥରେ ବିପ୍ଳାବିତ ପ୍ରଯୁକ୍ତ । ବି+ପ୍ଳୁ+କ୍ତ, ତ ବିଦ୍ରୋହ ବା ଅଶାନ୍ତ ଅର୍ଥ ବ୍ୟକ୍ତକରେ । ତେଣୁ ଅନ୍ୟାର୍ଥ ଦୋଷ ।

ହିମାପହାମିତ୍ରଧରୈର୍ବ୍ୟାପ୍ତଂ ବ୍ୟୋମେତ୍ୟବାଚକମ୍ ।
ସାକ୍ଷାଦରୂଢଂ ବାଚ୍ୟେଽର୍ଥେ ନାଭିଧାନଂ ପ୍ରଶସ୍ୟତେ ॥ ୪୧ ॥

ଅଯୁକ୍ତିମତ୍ ଯଥା ଦୂତା ଜଳଭୃନ୍ମାରୁତେନ୍ଦବଃ ।
ତଥା ଭ୍ରମର ହାରୀତ ଚକ୍ରବାକଶୁକାଦୟଃ ॥ ୪୨ ॥
ଅବାଚୋଽବ୍ୟକ୍ତବାଚଶ୍ଚ ଦୂରଦେଶ ବିବର୍ତ୍ତିନଃ ।
କଥଂ ଦୂତ୍ୟଂ ପ୍ରପଦ୍ୟେରନ୍ନିତି ଯୁକ୍ତ୍ୟା ନ ଯୁଜ୍ୟତେ ॥ ୪୩ ॥

ଯଦି ଚୋତ୍କଣ୍ଠୟା ଯତ୍ତଦୁନ୍ମତ୍ତ ଇବ ଭାଷତେ ।
ତଥା ଭବତ୍ୱିଦଂ ସୁମେଧୋଭିଃ ପ୍ରଯୁଜ୍ୟତେ ॥ ୪୪ ॥

ଶ୍ଲୋକଦ୍ୱୟ ଦୁଇଟି ଉଦାହରଣ ଏକ ପ୍ରକାର ମନେ ହେଲେ ସୁଦ୍ଧା ସାମାନ୍ୟ ପ୍ରଭେଦ ରହିଛି । ପ୍ରଥମ ଉଦାହରଣ ଶୋକ ଶବ୍ଦ ଦ୍ୱାରା 'ବିଜନ୍ଦୁଃ' ଶବ୍ଦର ହରଣ କରିବା ଅର୍ଥ କଷ୍ଟରେ ଉପଲବ୍ଧ ହୁଏ । କିନ୍ତୁ ବିକୃତର କୃତ ଅର୍ଥ ଉପଲବ୍ଧ ହୋଇପାରେ ନାହିଁ ।

୪୧] ଅବାଚକ ଦୋଷ — ହିମର ବିଘାତକ (ଅଗ୍ନି)ର ଅମିତ୍ର (ଶତ୍ରୁ ଅର୍ଥାତ୍ ଜଳ)ର ଧାରକ [ମେଘ] ଦ୍ୱାରା ଆକାଶ ବ୍ୟାପ୍ତ ଅଛି । ବାଚ୍ୟ ଅର୍ଥରେ ଯେଉଁ ଅଭିଧାନ [ଶବ୍ଦ] ପ୍ରସିଦ୍ଧ ନୁହେ, ସେ ତାହାର ବାଚକ ହୋଇପାରେ ନାହିଁ ।

ଏଠାରେ ମେଘ ଅର୍ଥ ପ୍ରକାଶ ପାଇଁ ଯେଉଁ ସବୁ ଶବ୍ଦ [ହିମାପହାମିତ୍ରଧରୈଃ] ପ୍ରଯୁକ୍ତ, ସେହି ଅର୍ଥରେ ପ୍ରସିଦ୍ଧ ନୁହେ । ତେଣୁ ଏହା ଅବାଚକ ଦୋଷ ଯୁକ୍ତ । ଅନୁରୂପ ଉଦାହରଣ ଯଥା —

ଫୁଲ ଧନୁସୂନୁବଲ୍ଲଭାକାଳରୁ ମୁଁ ଯେ କରିବ ପ୍ରସ୍ଥାନକୁ [ ଲ-ବ. ୨୩-୧୦ ] ଫୁଲଧନୁ - କନ୍ଦର୍ପ, ତାର ସୂନୁ ଅର୍ଥାତ୍ ପୁତ୍ର ଅନିରୁଦ୍ଧ ତାର ବଲ୍ଲଭା ଅର୍ଥାତ୍ ପତ୍ନୀ ଊଷା । ଅର୍ଥାତ୍ ପ୍ରଭାତରୁ ମୁଁ ଯିବି । ଫୁଲଧନୁସୂନୁବଲ୍ଲଭା ପ୍ରଭାତ ଅର୍ଥରେ ପ୍ରସିଦ୍ଧ ନୁହେ ତେଣୁ ଅବାଚକ ଦୋଷ । ପରବର୍ତ୍ତୀ କାଳରେ ଏଧରଣର ପ୍ରୟୋଗକୁ କଷ୍ଟ ଦୋଷ କହିଛନ୍ତି ।

୪୨] ଅଯୁକ୍ତିମତ୍ ଦୋଷ - ମେଘ, ପବନ, ଚନ୍ଦ୍ରମା, ଭ୍ରମର, ହାରୀତ, ଶୁକ ଆଦିଙ୍କୁ ଦୂତ ରୂପରେ ପ୍ରେରଣ କରିବା ଅଯୁକ୍ତିମତ୍ ଦୋଷ ଅଟେ ।

୪୩] ଦୂର ଦେଶରେ ବିଚରଣକାରୀ ବାକ୍ ବିହୀନ ଅଥବା ଅସ୍ପଷ୍ଟ ଶବ୍ଦକାରୀ ପ୍ରାଣୀ କିପରି ଦୂତକାର୍ଯ୍ୟ କରି ପାରିବେ ?

୪୪] ଯଦି ; ଯଦ କେହି ଉତ୍କଣ୍ଠାବଶତଃ ଅଥବା ଉନ୍ମତ୍ତ ପରି ଅସଙ୍ଗତ ପ୍ରଳାପ କରେ, ତେବେ ଭିନ୍ନ କଥା । (କିନ୍ତୁ) ବୁଦ୍ଧିମାନ ବ୍ୟକ୍ତି ମଧ୍ୟ ଏପରି ପ୍ରୟୋଗ କରନ୍ତି ।

ଗୂଢଶବ୍ଦାଭିଧାନଂ ଚ ନ ପ୍ରଯୋଜ୍ୟଂ କଥଂଚନ ।
ସୁଧିୟାମପି ନୈବେଦ୍ୟମୁପକାରାୟ କଳ୍ପତେ ॥ ୪୫ ॥
ଅସିତାର୍ତ୍ତିଭୂଗଦ୍ରିଚ୍ଛିତ୍ସ୍ୱଃକ୍ଷିତାଂପତିରଦ୍ୱିଦୃକ୍ ।
ଅମିଦ୍‌ଭିଃ ଶୁଭ୍ରଦୃଗ୍‌ଦୃଷ୍ଟେର୍ଦ୍ୱିଷୋ ଜେଘ୍ନୀୟିଷୀଷ୍ଟବଃ ॥ ୪୬ ॥

---

ବୋଧହୁଏ ଭାମହ ମେଘଦୂତ କାବ୍ୟ ସ୍ରଷ୍ଟା କାଳିଦାସଙ୍କୁ ଲକ୍ଷ୍ୟକରି "ସୁମେଧୋଭିଃ ପ୍ରଯୁଜ୍ୟତେ" କହିଛନ୍ତି । ଭାମହ ଏହାକୁ ଅଯୁକ୍ତିମତ୍ ଦୋଷ କହିଲେ ମଧ୍ୟ ପରବର୍ତ୍ତୀ ବହୁ କବି ଏ ଦୋଷ ପ୍ରତି ଦୃଷ୍ଟି ଦେଇ ନାହାନ୍ତି । ଶ୍ରୀହର୍ଷ 'ନୈଷଧୀୟ ଚରିତ' ରେ ହଂସକୁ ଦୂତ କରି ନଳ-ଦମୟନ୍ତୀଙ୍କ ମିଳନ ସମ୍ପାଦନ କରିଛନ୍ତି । ଏପରିକି ଉପେନ୍ଦ୍ରଙ୍କ ବହୁ କାବ୍ୟରେ ଶୁକ-ସାରୀ ଦୂତ କାର୍ଯ୍ୟ କରିଛନ୍ତି ।

୪୫] **ଗୂଢ଼ ଶବ୍ଦ ବିଧାନ ଦୋଷ**—ଗୂଢ଼ ଶବ୍ଦ କୌଣସି ପ୍ରକାରେ କାବ୍ୟରେ ପ୍ରଯୁକ୍ତ ହେବା ଉଚିତ ନୁହେଁ । ଏହାଦ୍ୱାରା ପଣ୍ଡିତମାନଙ୍କର ମଧ୍ୟ ଉପକାର ସାଧିତ ହୁଏ ନାହିଁ ।

ଭାମହ ଏହି ଗୂଢାଭିଧାନ ଦୋଷର ଲକ୍ଷଣ ଦେଇ ନାହାନ୍ତି । କିନ୍ତୁ ଉଦାହରଣରୁ ଏହାର ସ୍ୱରୂପ ସ୍ପଷ୍ଟ ପ୍ରତୀତ ହୁଏ ।

୪୬] **ଉଦାହରଣ**— ଅଗ୍ନିପୁତ୍ର, ପର୍ବତ ଛେଦକ, ଦେବତାଙ୍କ ସ୍ୱାମୀ ଯେ ଦ୍ୱିନେତ୍ର ବିଶିଷ୍ଟ ନୁହନ୍ତି, ସେହି କାର୍ତ୍ତିକେୟ ଶୁଭନେତ୍ର ପାତରେ ରୁଦ୍ରର ଶତ୍ରୁଙ୍କୁ ସମୂଳେ ଧ୍ୱଂସ କରନ୍ତୁ ।

ଅସିତାର୍ତ୍ତିଭୁକ୍ = ନ ସିତଂ [କୃଷ୍ଣଂ] ଋତ - ମାର୍ଗ [ ଋଧାତୁ ଗମନାର୍ଥକ ] ଅର୍ଥାତ୍ କୃଷ୍ଣବର୍ତ୍ମ । = ଅଗ୍ନି ଭୁଜ୍ + କ୍ୱିପ୍ ଭୁଜ୍ୟତେ ଖାଦ୍ୟତେ ଅନେନ ଇତି = ଭୁକ୍ ପୁତ୍ର, ଅସିତାର୍ତ୍ତିଭୁକ୍ ଅର୍ଥାତ୍ ଅଗ୍ନି ପୁତ୍ର କାର୍ତ୍ତିକେୟ "ଭୁକ୍ ତୋ କଂ ଜନ୍ମସ୍ୟ ନନ୍ଦନ ଇତି ପ୍ରାଙ୍କୌରପଥାଂ ସ୍ମୃତଂ" - ହଳାୟୁଧ । ଅଦ୍ରିଚ୍ଛିତ୍ = ପର୍ବତ ଛେଦକ = କାର୍ତ୍ତିକେୟ କ୍ରୌଞ୍ଚ ପର୍ବତକୁ ବାଣରେ ଛେଦ କରିଥିଲେ । କ୍ରୌଞ୍ଚଦାରଣଃ = କାର୍ତ୍ତି- କେୟ, ସ୍ୱଃ କ୍ଷିତାଂ ପତିଃ - ସ୍ୱଃ = ସ୍ୱର୍ଗ, କ୍ଷିତ୍ - ରହିବା ବ୍ୟକ୍ତି, ପତି - ସ୍ୱାମୀ ଦେବତାଙ୍କ ସେନାପତି ହେତୁ କାର୍ତ୍ତିକେୟ ସ୍ୱାମୀ ରୂପରେ ଉପସ୍ଥାପିତ, ଦ୍ୱିଦୃକ୍ = ଦୁଇ ନେତ୍ର ବିଶିଷ୍ଟ, ଅଦ୍ୱିଦୃକ୍ - ଯେ ଦ୍ୱିନେତ୍ର ବିଶିଷ୍ଟ ନୁହେଁ; କାର୍ତ୍ତିକେୟ ଷଣ୍ମୁଖ ହେତୁ ଦ୍ୱାଦଶ ନେତ୍ର ବିଶିଷ୍ଟ, ଅମିଦ୍‌ଭିଃ - ମିଦ - ସ୍ନେହନେ ଅର୍ଥ ଅଛି ଚିକ୍କଣ, ଅମିଦ୍‌ଭିଃ- ଯେଉଁଥିରେ ଚିକ୍କଣତା ନାହିଁ ଅର୍ଥାତ୍ ରୁକ୍ଷ, କ୍ରୋଧ ପୂର୍ଣ୍ଣ ହେଲେ ନେତ୍ର ରୁକ୍ଷ ହୋଇ- ଯାଏ । ଶୁଭ୍ରଦୃଗ୍‌ଦୃଷ୍ଟୈଃ - ଉଜ୍ଜ୍ୱଳ ନେତ୍ର ମାନଙ୍କରେ ଅବଲୋକନ ଦ୍ୱାରା ବା ଦୃଷ୍ଟି,

ଶ୍ରୁତଦୁଷ୍ଟାର୍ଥଦୁଷ୍ଟେଚ କଳ୍ପନାଦୁଷ୍ଟମିତ୍ୟପି ।
ଶ୍ରୁତକଷ୍ଟଂ ତଥୈବାହୁର୍ବାଚ୍ୟଂ ଦୋଷଂ ଚତୁର୍ବିଧମ୍ ॥ ୪୭ ॥

---

ଭ୍ରମର ଶବ୍ଦମାନଙ୍କୁ କେବଳ ସ୍ୱିକ୍ରିଷ୍ଟ = [ ଧ୍ୱନ୍ ଧାତୁର ଯଙ୍ଲୁଗନ୍ତ ଆଶୀର୍ଲିଙ୍ ପ୍ରଥମ ପୁରୁଷ ଏକ ବଚନ ରୂପ ] ପୁଷ୍ପ ଗୁଚ୍ଛରେ ବାରମ୍ବାର ନାଶ କରନ୍ତୁ ।

ଅଗ୍ନିଙ୍କ ପର୍ଯ୍ୟାୟ ବାଚୀ ଶବ୍ଦ - ବହ୍ନିଃଶୁକ୍ର । କୃଷ୍ଣ ବର୍ତ୍ମା ଶୋଚିଷ୍କେଶ ଉଷର୍ବୁଧଃ, [ଅମର କୋଷ] କାର୍ତ୍ତିକେୟଙ୍କ ପର୍ଯ୍ୟାୟ ବାଚୀ ଶବ୍ଦ—

ପାର୍ବତୀ ନନ୍ଦନଃ ସ୍କନ୍ଦଃ ସେନାନୀରଗ୍ନିଭୂର୍ଗୁହଃ ।
ଷାଣ୍ମାତୁରଃ ଶକ୍ତିଧରଃ କୁମାରଃ କ୍ରୌଞ୍ଚଦାରଣଃ (ଅମର କୋଷ)

ଏହା କବିତା ନୁହେଁ, ପାଣ୍ଡିତ୍ୟ ପ୍ରଦର୍ଶନ ମାତ୍ର । ଅନୁରୂପ ଶବ୍ଦାଭିଧାନ ଦୋଷ-
ଦୂଷିତ ନାମରେ ରମ୍ୟା ବେନଫୁଲ ଜଳଧାମା,
ବାମାନେତ୍ରଛିତ ଲତାମୃଗଜାତ ଠିକ ମଣ୍ଡପବ ନାମା
ବପୁପାର ଆଦ ଭର ବଳେକ ବାର୍ତ୍ତା ପ୍ରବର
ବଳିଦାନ ଘେନା ଏକା ଦେଖିନାହୁଁ ଯହିଁ ଅଛୁ ସୁକୁମାରୀ [ବୈ.ବି.୩୩,-୪୨,୪୩]

ଅପହୃତା ସୀତାଙ୍କୁ ଠାବ କରିବା ପାଇଁ ସୁଗ୍ରୀବ ପ୍ରେରିତ ବାନରସେନା ଦକ୍ଷିଣ ଦିଗ ବ୍ୟତୀତ ସମସ୍ତ ଦିଗ ଓ ଦିକ୍‌କୋଣ ଦେଖି ନ ପାଇବା ବ୍ୟକ୍ତ କରିଛନ୍ତି । ଦିକ୍ ଦିଗ ଓ ଦିକ୍‌କୋଣର ନାମ ନିର୍ଦ୍ଦେଶ ପରିବର୍ତ୍ତେ ଦିଗ୍‌ଗଜ ମାଧ୍ୟମରେ ବ୍ୟକ୍ତ କରିଛନ୍ତି । ପୂର୍ବ ଦିଗ୍‌ଗଜ ଐରାବତ, ତାହା ବୃକ୍ଷକ ଅର୍ଥାତ୍ ନାରଙ୍ଗ ନାମରେ ଯେ ଅଭିହିତ, ଆଗ୍ନେୟ ଓ ନୈର୍‌ଋତ କୋଣର ଦିଗ୍‌ଗଜ ଯଥାକ୍ରମେ ପୁଣ୍ଡରୀକ ଓ କୁମୁଦ । ତାହାକୁ ଜଳସ୍ଥାନସ୍ଥ ଦୁଇଟି ଫୁଲ ଆଧାରରେ ପ୍ରଦର୍ଶିତ, ପଶ୍ଚିମ ଦିଗ୍‌ଗଜ ଅଞ୍ଜନ । ତାହା ନାରୀର ନେତ୍ର କୋଣରେ ସ୍ଥିତ ଶବ୍ଦରେ ଉଲ୍ଲିଖିତ, ବାୟବ୍ୟ ଦିଗ୍‌ଜନ ପୁଷ୍ପଦନ୍ତ । ତାହା ଲତା ଓ ମୃଗରେ ଯେ ସ୍ଥିତ ଶବ୍ଦରେ ନିର୍ଦ୍ଦେଶିତ । ଉତ୍ତର ଦିଗ୍‌ଗଜ, ତାହା ମଣ୍ଡପବ ଶବ୍ଦରେ ଅଭିବ୍ୟକ୍ତ, ଐଶାନ୍ୟ ଦିଗ୍‌ଗଜ ସୁପ୍ରତୀକ, ସାର ବା ଉତ୍କୃଷ୍ଟ ଅର୍ଥରେ ସୁ ଏବଂ ବପୁ ବେ ପାଇଁ ବ୍ୟବହୃତ । ଦକ୍ଷିଣ ଦିଗ୍‌ଗଜର ନାମ ବାମନ, ତାହା ବଳିଦାନ ଘେନା ଶବ୍ଦରେ ପରିସ୍ଫୁଟ ।

ଐରାବତଃ ପୁଣ୍ଡରୀକୋ ବାମନଃ କୁମୁଦୋଽଞ୍ଜନଃ
ପୁଷ୍ପଦନ୍ତଃ ସାର୍ବଭୌମଃ ସୁପ୍ରତୀକଶ୍ଚ ଦିଗ୍‌ଗଜାଃ ।(ଅମର କୋଷ)
ଅଙ୍ଗପ୍ରତୀକୋଽବୟବଃ (ଅମର କୋଷ)

୪୭] ଅନ୍ୟ କେତେକ ଦୋଷ— ବାଣୀ ବା ଭାଷାର ଚାରି ପ୍ରକାର ଦୋଷ ବିଷୟରେ କୁହାଯାଇଛି ଯଥା— ଶ୍ରୁତ ଦୁଷ୍ଟ, ଅର୍ଥଦୁଷ୍ଟ, କଳ୍ପନାଦୁଷ୍ଟ ଓ ଶ୍ରୁତକଷ୍ଟ ।

ଓଡ୍ରବ୍ରେ ବସ୍ତି ତକ୍ଲ ନଛିନ୍ନିବାନ୍ତପ୍ରବୃତ୍ତୟୂଃ
ପ୍ରସୂରଧର୍ଷିତୋଦ୍‌ଗାରବସ୍ତଗ ହଦସନ୍ତ୍ରିତାଃ ॥ ୪୮ ॥
ହିରଣ୍ୟରେତାଃ ସମ୍ବାଧଃ ପେଲବୋପସ୍ଥିତାଣ୍ଡଜାଃ ।
ବାକ୍‌କାଟବାତପ୍ରଷ୍ଟେଭ ଶ୍ରୁତଦୁଷ୍ଟା ମତା ଗିରଃ ॥ ୪୯ ॥

୪୮, ୪୯] ଶ୍ରୁତଦୁଷ୍ଟ ଦୋଷ— ଅନ୍ୟୋକ୍ତ ଶବ୍ଦ ଶ୍ରୁତଦୁଷ୍ଟ ରୂପେ ପରିଗଣିତ । ଏହି ଦୁଇ କାରିକାରେ ଥିବା ଦୁଇ-ଅର୍ଥ ବଶିଷ୍ଟ ହେତେକ ଶବ୍ଦ ସଗୃହୀତ । ଗୋଟିଏ ଅର୍ଥ ସାମାନ୍ୟ ଓ ଅନ୍ୟ ଅର୍ଥଟି ଘୃଣିତ ବା ଅଶ୍ଳୀଳ । ଏ ଗୁଡ଼ିକ ସାମାନ୍ୟ ଅର୍ଥରେ ପ୍ରଯୁକ୍ତ ହୋଇଥିଲେ ମଧ୍ୟ ପଠନ ମାତ୍ରେ ଘୃଣିତ ଅର୍ଥଟି ପ୍ରତୀତ ହୁଏ । ସଗୃହୀତ ଶବ୍ଦ ଗୁଡ଼ିକର ସାମାନ୍ୟ ଅର୍ଥ ଓ ଅଶ୍ଳୀଳ ଅର୍ଥ ନିମ୍ନରେ ପ୍ରଦତ୍ତ ।

| ଶବ୍ଦ | ସାମାନ୍ୟ ଅର୍ଥ | ଅଶ୍ଳୀଳ ଅର୍ଥ |
|---|---|---|
| ଉରୁ | ବୈଶ୍ୟ | ବିଷ୍ଠା |
| ବର୍ଚ୍ଚସ୍ | ତେଜ | ପାର୍ଦ୍ଦ |
| ବର୍ଦ୍ଧିତ | ବିଶେଷ ରୂପରେ ସ୍ଥିତ | ବିଷ୍ଠା |
| କ୍ଲିନ୍ନ | ଆର୍ଦ୍ର | ରକ୍ତରଂଜିତ |
| ଛିନ୍ନ | ଛିଣ୍ଡା ଯାଇଥିବା | ମଙ୍ଗଳ ସୂଚକ ଛିଣ୍ଡିବା |
| ବାନ୍ତ | ବହିର୍ଗତ | ବାନ୍ତି |
| ପ୍ରବୃତ୍ତି | ପ୍ରବୃତ୍ତ ହେବା | ମାସିକ ରଜଃ ପ୍ରବୃତ୍ତି |
| ପ୍ରସୂର | ପ୍ରସାର | ଶୌଚହେବା ଇଚ୍ଛା |
| ଧର୍ଷିତ | ଅପମାନିତ | ବଳାତ୍କାର |
| ଉଦ୍‌ଗାର | ଉଦ୍ଭବ | ବାନ୍ତି |
| ବିସର୍ଗ | ତ୍ୟାଗ | ଅପାନବାୟୁ ନିର୍ଗମନ |
| ହଦ | ମଳତ୍ୟାଗ | ମଳତ୍ୟାଗ |
| ସଂହିତ | ମିଳିତ | ସଙ୍ଗମରେ ଆବଦ୍ଧ |
| ହିରଣ୍ୟରେତସ୍ | ଅଗ୍ନି | ପାର୍ଦ୍ଦ |
| ସମ୍ବାଧ | ଘର୍ଷଣ | ଯୋନି |
| ପେଲବ | କୋମଳ | ଅଣ୍ଡକୋଷ |
| ବାକାଟପୁଟ | କଟୁବାଣୀ | 'କାଟ' ଏହି ଅଂଶର ଅର୍ଥ ଲିଙ୍ଗ, ପୁରୁଷାଙ୍ଗ |

ଅର୍ଥଦୁଷ୍ଟଂ ପୁନର୍ଜ୍ଞେୟଂ ଯସ୍ମୋକ୍ତେ ଜାୟତେ ମତିଃ ।
ଅସଭ୍ୟବସ୍ତୁବିଷୟା ଶବ୍ଦେ ସ୍ତ୍ରଦ୍‌ବାଚ୍ୟତ୍ୱର୍ଥା ॥ ୫୦ ॥
ତନ୍ତ୍ରମେବ ପ୍ରବୃତ୍ତସ୍ୟ ପ୍ରବନ୍ଧସ୍ୟ ବିବର୍ତ୍ତିଷିଣଃ ।
ପତନଂ ଜାୟତେଽବଶ୍ୟଂ କୃଚ୍ଛ୍ରେଣ ପୁନରୁନ୍ନତିଃ ॥ ୫୧ ॥

ଓଡ଼ିଆ ଭାଷାରେ ମଧ୍ୟ ଏପରି ଶବ୍ଦ ରହିଛି, ଯାହା ପଠନ ମାତ୍ରେ ଜୁଗୁପ୍‌ସିତ ଅର୍ଥକୁ ସ୍ମରଣରୁ ପ୍ରକାଶିତ ହୁଏ । ଯଥା—

| | | |
|---|---|---|
| କୋଷ | ଅଭିଧାନ | ପେଲ |
| ଅଣ୍ଡଜ | ପକ୍ଷୀ | ଅଣ୍ଡକୋଷ |
| ଯୋନି | କାରଣ | ସ୍ତ୍ରୀଲିଙ୍ଗ |
| ଶୁକ୍ର | ଗ୍ରହବିଶେଷ | ବୀର୍ଯ୍ୟ |
| ଗୁହ | କାର୍ତ୍ତିକେୟ | ବିଷ୍ଠା ଇତ୍ୟାଦି । |

ଏପରି ଶବ୍ଦ ବ୍ୟବହାର ବେଳେ ଖୁବ ସାବଧାନ ହେବା ବିଧେୟ ।

୫୦] ଅର୍ଥ ଦୁଷ୍ଟ— କୌଣସି ଶବ୍ଦ ଉଚ୍ଚାରଣ କଲେ, ଯଦି ତାହାର ଅସଭ୍ୟ ଅର୍ଥ ପ୍ରକାଶିତ ହୁଏ, ତେବେ ତାହା ଅର୍ଥଦୁଷ୍ଟ ଦୋଷ ରୂପେ ଗୃହୀତ ହୁଏ ।

ଶ୍ରୁତିଦୁଷ୍ଟରେ ଶ୍ରବଣ ମାତ୍ରେ ଅଶ୍ଳୀଳ ଅର୍ଥ ପ୍ରକାଶିତ ହୁଏ, କିନ୍ତୁ ଅର୍ଥ ଦୁଷ୍ଟରେ ଅର୍ଥ ପର୍ଯ୍ୟାଲୋଚନା ପରେ ଦୋଷ ପ୍ରକାଶିତ ହୁଏ ।

୫୧] ଉଦାହରଣ— ଏହି ଶ୍ଳୋକରେ ଅପରିଣାମଦର୍ଶୀ ଦୁଷ୍ଟର ବର୍ଣ୍ଣନା କରାଯାଇଛି । କିନ୍ତୁ ସେଥିରୁ ପୁରୁଷ ଲିଙ୍ଗର କାର୍ଯ୍ୟ ମଧ୍ୟ ପ୍ରକାଶିତ ହୁଏ । ପ୍ରଯୁକ୍ତ ଶବ୍ଦ ଉଦ୍ଦେଶ୍ୟ । କିନ୍ତୁ ପ୍ରକାଶିତ ଅର୍ଥ ଅଶ୍ଳୀଳ - ତାଡ଼ନ କରିବା ପାଇଁ ଉଦ୍ୟତ ପ୍ରବନ୍ଧ, ଲିଙ୍ଗେନ୍ଦ୍ରିୟର ପତନ ଅବଶ୍ୟ ହୁଏ । କିନ୍ତୁ ଉନ୍ନତି କଷ୍ଟରେ ହୁଏ ।

ସାମାନ୍ୟ ଅର୍ଥ - ଶତ୍ରୁକୁ ମାରିବା ପାଇଁ ଉଦ୍ୟତ ଶତ୍ରୁର ଲିଙ୍ଗେନ୍ଦ୍ରିୟ, ଅନ୍ୟର ଉତ୍କର୍ଷ ବିଷୟରେ ଅନଭିଜ୍ଞ ଦୁଷ୍ଟ ଲୋକର ଶତ୍ରୁ ସହିତ ସଂଘର୍ଷରେ ଅଧଃପତନ ଘଟେ । ଶୀଘ୍ର ଉନ୍ନତି ଲାଭ ହୁଏ ନାହିଁ । ପ୍ରତୀୟମାନ ଅର୍ଥ - ସୁରତ କ୍ରିୟା ପାଇଁ ଯୋନି ତାଡ଼ନରେ ପ୍ରବୃତ୍ତ, କଷ୍ଟ ହୃଷ୍ଟ, ଦୃଢ ରୂପରେ ବର୍ଦ୍ଧମାନ, ସ୍ତ୍ରୀ ଯୋନି ଅଙ୍ଗ ଲିଙ୍ଗେନ୍ଦ୍ରିୟ ଶୁକ୍ର କ୍ଷରଣ ହେବା ପରେ ଶୀଘ୍ର ପତନ ଘଟେ, ପୁନରପି ଉନ୍ନତ ହୁଏ ନାହିଁ ।

| ଶବ୍ଦ | ଦୁଷ୍ଟ ଲୋକ ପକ୍ଷ | ଲିଙ୍ଗପକ୍ଷ |
|---|---|---|
| ତାଡ଼ନ | ମାରିବା | ସ୍ତ୍ରୀଯୋନି ସମ୍ଭୋଗ ତାଡ଼ନ |
| ପ୍ରବନ୍ଧ | ଶତ୍ରୁ | ଲିଙ୍ଗ |

ଯଦ୍‌ଦ୍ୱୟସ୍ୟ ସନ୍ଧାନେ ଯଦନଷ୍ଟଂ ପ୍ରକଳ୍ପତେ ।
ତଦାହୁଃ କଳ୍ପନାଦୁଷ୍ଟଂ ସ ଶୌର୍ଯ୍ୟାଭରଣୋ ଯଥା ॥ ୫୨ ॥
ଯଥାଽଜହ୍ଲାଦୟଦାତ୍ୟାଦି ଶ୍ରୁତିକଷ୍ଟଂ ଚ ତଦ୍‌ବିଦୁଃ ।
ନ ତଦଙ୍ଗନ୍ତ କୃତିନୋ ଗଣ୍ଡମଧ୍ୟପରେ କିଳ ॥ ୫୩ ॥

---

| | | |
|---|---|---|
| ଛିଦ୍ର | ଦୁର୍ବଳ ବନ୍ଧ | ଯୋନି |
| ପାତ | ଅଧଃ ପତନ | ଗର୍ଭତ୍ୟାଗ ଜନିତ ଶିଥିଳତା |
| ଉନ୍ନତ | ଉତ୍କର୍ଷ ପ୍ରାପ୍ତି | କଠୋରତା |

ଅଶ୍ଳୀଳ ଅର୍ଥ ପ୍ରକାଶ ହେତୁ ଏହାକୁ ଅର୍ଥଦୁଷ୍ଟ ଦୋଷ କୁହାଯାଏ । ଦର୍ପଣକାର ବିଶ୍ୱନାଥ ଏହାକୁ ଅଶ୍ଳୀଳ ଅର୍ଥ ଦୋଷ ରୂପେ ଗ୍ରହଣ କରିଛନ୍ତି । [ସପ୍ତମ ପରିଚ୍ଛେଦ]

ଅନୁରୂପ - ଗଣ୍ଠି ଗଣ୍ଠିଆ ଷୋଳ ଗଣ୍ଠିଆ ମୂଳରେ ଗୋଛାଏ ବାଳ,
ତ ଜଙ୍ଘତଳେ ମାଡ଼ିଦେଉଥିଲେ ବୋହି ପଡ଼ୁଥିବ ଲାଳ । [ଢଗ]

ସାଧାରଣ ଅର୍ଥ - ଆଖୁ ଗଣ୍ଠିଯୁକ୍ତ, ତାର ମୂଳରେ ଚେର ଗୁଚ୍ଛାଏ ଥାଏ ।
ବୋହୂମାନେ ଲୁହାଯନ୍ତ୍ର ମଧ୍ୟରେ ଚିପି ଦେଲେ ସେଥିରୁ ରସ ବୋହିଯାଏ ।

ଅଶ୍ଳୀଳ ଅର୍ଥ - ପୁରୁଷାଙ୍ଗଟି ଗଣ୍ଠିଯୁକ୍ତ ତାର ମୂଳରେ କେଶ ରହିଥାଏ ।
ନାରୀର ଦୁଇଜଙ୍ଘ ସନ୍ଧିରେ ପୁରାଇଦେଲେ ରେତର ସ୍ଖଳନ ଘଟେ ।
ପ୍ରତୀୟମାନ ଅର୍ଥଟି ଅଶ୍ଳୀଳ ହେତୁ ଅର୍ଥଦୁଷ୍ଟ ଦୋଷରେ ଦୂଷିତ ।

୫୨] କଳ୍ପନା ଦୁଷ୍ଟ— ଦୁଇଟି ଶବ୍ଦର ମିଳନରେ ଯେଉଁ ଅନଷ୍ଟ [ଅବାଞ୍ଛିତ] ଅର୍ଥ କଳ୍ପିତ ହୁଏ, ତାହାକୁ କଳ୍ପନା ଦୁଷ୍ଟ ଦୋଷ ବୋଲି କୁହାଯାଏ । ଯଥା - ଶୌର୍ଯ୍ୟାଭରଣ ।

କଳ୍ପନା ଦୁଷ୍ଟରେ ଦୁଇଟି ଶବ୍ଦ ପୃଥକ୍ ଭାବେ ନିର୍ଦୋଷ, କିନ୍ତୁ ସନ୍ନିହିତ ହେଲେ ଅବାଞ୍ଛିତ ଅର୍ଥ ବୋଧକ ହୋଇଯାଏ । ଶୌର୍ଯ୍ୟ + ଆଭରଣ = ଶୌର୍ଯ୍ୟାଭରଣ ଏଥିରେ ସନ୍ନିହିତ ଅଂଶ 'ଯାଭ' ମୈଥୁନ ବାଚକ ହେତୁ କଳ୍ପନା ଦୁଷ୍ଟ ଅଟେ ।

ଯଥା - ବାନ୍ଧବଆରେ, ବାନ୍ଧବଆରେ, ଫୁଲମାଳ ଦେବ ବାନ୍ଧବଆରେ । ଏଥିରେ
ବାନ୍ଧବ + ଆରେ ଉଭୟ ଶବ୍ଦ ନିର୍ଦୋଷ । କିନ୍ତୁ ନିକଟବର୍ତ୍ତୀ ହେତୁ 'ବଆ'
ଯୋନି ବାଚକ ହୋଇ କଳ୍ପନା ଦୁଷ୍ଟ ଦୋଷ ସୃଷ୍ଟି କରେ ।

୫୩] ଶ୍ରୁତ ଦୁଷ୍ଟ— ଉଦାହରଣ ସ୍ୱରୂପ ଅଜହ୍ଲଦତ୍ (ଆନନ୍ଦିତ କରାଇଲା) ଶବ୍ଦ ଶ୍ରୁତି କଷ୍ଟ ଦୋଷ ରୂପେ ଗୃହୀତ । ପଣ୍ଡିତ ବ୍ୟକ୍ତି ଏପରି ଶବ୍ଦ ପ୍ରୟୋଗକୁ ପସନ୍ଦ କରନ୍ତି ନାହିଁ । କେତେକ ବ୍ୟକ୍ତି 'ଗଣ୍ଡ' ଶବ୍ଦକୁ ମଧ୍ୟ ଶ୍ରୁତି କଷ୍ଟ ମନେ କରନ୍ତି ।

ସନ୍ନିବେଶବଶେଷାତ୍ ଦୁରୁକ୍ତମପି ଶୋଭତେ ।
ନୀଳଂ ପଲାଶମାବଦ୍ଧମନ୍ତରାଳେ ସ୍ରଜାମିବ ॥ ୫୪ ॥

କାଂଶଦାଶ୍ରୟସୌନ୍ଦର୍ଯ୍ୟାଦ୍ଧତ୍ତେ ଶୋଭାମସାଧ୍ୱପି ।
କାନ୍ତାବିଲୋଚନନ୍ୟସ୍ତଂ ମଲୀମସମିବାଞ୍ଜନମ୍ ॥ ୫୫ ॥

ଆପାଣ୍ଡୁଗଣ୍ଡମେତତ୍ତେ ବଦନଂ ବନଜେକ୍ଷଣେ ।
ସଙ୍ଗମାତ୍ ପାଣ୍ଡୁଶବ୍ଦସ୍ୟ ଗଣ୍ଡଃ ସାଧୁ ଯଥୋଦିତମ୍ ॥ ୫୬ ॥

---

ସ୍ୱମତ ଶ୍ରୁତି କଷ୍ଟର ଲକ୍ଷଣ ଲେଖି ନାହାନ୍ତି । ଶ୍ରୁତି କଷ୍ଟ ଅର୍ଥାତ୍ କର୍ଣ୍ଣକଟୁ । ଶୁଣିବା ମାତ୍ରେ ଅଶ୍ଳୀଳ ଅର୍ଥ ବୋଧ ଶ୍ରୁତିଦୁଷ୍ଟ, ଶୁଣିବାରେ ଯାହା କର୍ଣ୍ଣକଟୁ ତାହା ଶ୍ରୁତିକଷ୍ଟ ।

ହ୍ଳାଦ୍ ଧାତୁର ଣିଜନ୍ତ-ଲୁଙ୍ ପ୍ରଥମ ପୁରୁଷ ଏକବଚନ ରୂପ = ଅଜିହ୍ଲଦତ୍ । ଅନୁରୂପ ଯଥା - ହେ ସଖି ! ସୁଗ୍ରୀବଙ୍କ ବ୍ୟକ୍ତ ଭ୍ରମର ବରହରେ କପର କାର୍ତ୍ତାର୍ଥ୍ୟକୁ ଲଭିବ । ଏହି ବାକ୍ୟଟି ଦୁଃଶ୍ରବତ୍ୱ ଦୋଷ ରୂପେ ଅଳଙ୍କାର ବୋଧୋଦୟରେ ବର୍ଣ୍ଣିତ ।

୫୪] ଦୋଷପରିହାର — ପଦ ସନ୍ନିବେଶ ବୈଶିଷ୍ଟ୍ୟରୁ ଦୋଷଯୁକ୍ତ ଶବ୍ଦ ମଧ୍ୟ ଶ୍ୱେତପୁଷ୍ପ ମାଳାରେ ଗ୍ରଥିତ ନୀଳପତ୍ର ପରି ସୁନ୍ଦର ଓ ଆକର୍ଷକ ହୋଇଯାଏ ।

ଏ କାରିକାରେ ସନ୍ନିବେଶ ବୈଶିଷ୍ଟ୍ୟ ଅର୍ଥାତ୍ ସ୍ଥାପନ ଚାତୁର୍ଯ୍ୟ ମାଧ୍ୟମରେ ଦୋଷ ପରିହାରର ଗୋଟିଏ ଆଧାର ନିର୍ଦ୍ଦେଶିତ ।

୫୫] ରମଣୀର ନେତ୍ରରେ ସଂଯୋଜିତ ମଳିନ ଅଞ୍ଜନ ପରି ସ୍ଥଳ ବିଶେଷରେ ଆଶ୍ରୟ (ଆଧାର) ସୌନ୍ଦର୍ଯ୍ୟ ବଳରେ ଦୋଷ ମଧ୍ୟ ଗୁଣ ହୋଇଯାଏ ।

ଅଞ୍ଜନର ରମଣୀୟତା ଆଶ୍ରିତ ନେତ୍ରର ସୌନ୍ଦର୍ଯ୍ୟ ଆଧାରରେ ଦ୍ୱିଗୁଣ ହୋଇଯାଏ । ଆଶ୍ରିତ ସୌନ୍ଦର୍ଯ୍ୟର ଏହା ପ୍ରକୃଷ୍ଟ ଉଦାହରଣ । ସ୍ୱମତ ଦୁଇଟି ଉଦାହରଣ ଦେଇ ଦୋଷ ପରିହାରର ଦୁଇଟି ମାର୍ଗ ପ୍ରଦର୍ଶନ କରିଛନ୍ତି ।

୫୬] ସନ୍ନିବେଶ ବୈଶିଷ୍ଟ୍ୟରୁ ଅସାଧୁତାର ଉଦାହରଣ — ହେ କମଳ-ନେତ୍ରି ! ତୁମର ମୁଖଟି ଶ୍ୱେତ - ପୀତ ମିଶ୍ରିତ କପୋଳ ଯୁକ୍ତ ହେବାରୁ ସୁନ୍ଦର ଦିଶୁ ଅଛି । ଏଠାରେ ପାଣ୍ଡୁ ଶବ୍ଦ ସହିତ ଯୁକ୍ତ ଗଣ୍ଡ ଶବ୍ଦ ସାଧୁ ଓ ସୁନ୍ଦର । ସଂଯୋଜନ କୌଶଳରୁ 'ଗଣ୍ଡ' ଶବ୍ଦ ନିର୍ଦ୍ଦୋଷ ।

ଅନପ୍ଲାନ୍ୟଦପି ଜ୍ଞେୟଂ ଦଣା ଯୁକ୍ତମସାଧ୍ୱପି ।
ଯଥା ବଲ୍ଗନ୍ନଗଣ୍ଡାନାଂ କରଣାଂ ମଦବାରିଭିଃ ॥ ୫୭ ॥

ମଦକ୍ଲନ୍ନକପୋଳାନାଂ ଦ୍ୱିରଦାନାଂ ଚତୁଃଶତା ।
ଯଥା ତଦ୍‌ବଦସାଧୀୟଃ ସାଧୀୟସ୍ତୁ ପ୍ରୟୋଜୟେତ୍ତୁ ॥ ୫୮ ॥

ଏତଦ୍‌ଗ୍ରାହ୍ୟଂ ସୁରଭିକୁସୁମଂ ଗ୍ରାମ୍ୟମେତନ୍ନିଧେୟଂ,
ଧତ୍ତେ ଶୋଭାଂ ବିରଚିତମିଦଂ ସ୍ଥାନମସ୍ୟୈତଦସ୍ୟ ।
ମାଲାକାରୋ ରଚୟତି ଯଥା ସାଧୁ ବିଜ୍ଞାୟ ମାଲାଂ
ଯୋଜ୍ୟଂ କାବ୍ୟେଷ୍ୱବହିତଧିୟା ତଦ୍ୱଦେବାଭିଧାନମ୍ ॥ ୫୯ ॥

---

୫୭] ଅର୍ଥସ୍ଥ ସୌନ୍ଦର୍ଯ୍ୟରୁ ଅଦୋଷତା— ଏହି ସ୍ଥଳରେ ସଦୋଷ ପଦ ମଧ୍ୟ ସାଧୁ ଶବ୍ଦ ସହିତ ରହି ସୁନ୍ଦର, ନିର୍ଦୋଷ ଓ ଉପଯୁକ୍ତ ମନେହୁଏ । ଯଥା - "ମଦଜଳରେ ଆର୍ଦ୍ର କପୋଳ ବିଶିଷ୍ଟ ହସ୍ତୀଙ୍କର" ।

ଏଥିରେ ପ୍ରଯୁକ୍ତ କ୍ଲନ୍ନ ଓ ଗଣ୍ଡ ଶବ୍ଦ ହେୟ ଅଟେ । କିନ୍ତୁ ଅର୍ଥସ୍ଥ ଭୂତ ହସ୍ତୀର ସନ୍ନିଯୋଗରେ ଶବ୍ଦ ଦୁଇଟିର ଅସାଧୁତ୍ୱ ଦୂର ହୋଇଛି ।

୫୮] " ମଦଜଳରେ ଆର୍ଦ୍ର କପୋଳ ବିଶିଷ୍ଟ ଦ୍ୱିରଦହି ଦନ୍ତାହାଣି " ଏଥିରେ ଶବ୍ଦ ସଂଯୋଜନ ସୁନ୍ଦର ଓ ଗ୍ରହଣୀୟ ହୋଇଛି । ଏହି ସ୍ଥଳରେ ସାଧୁ ଓ ଅସାଧୁ ଶବ୍ଦର ସନ୍ନିବେଶ କୌଶଳ ଗ୍ରହଣୀୟ ।

ପଦସ୍ଥିତି ଓ ପ୍ରୟୋଗ ବିଶେଷରେ ଦୋଷ ମଧ୍ୟ ଗୁଣ ରୂପ ଗ୍ରହଣ କରେ । ଏ ବିଷୟ ବିଷ୍ଣୁଧର୍ମୋତ୍ତର ପୁରାଣରେ ଉକ୍ତ ହୋଇଅଛି । ଭାମହ ସେହି ଉକ୍ତିକୁ ବିଶ୍ଳେଷଣ କରି ଦୁଇଗୋଟି କାରଣ ଆବିଷ୍କାର କରିଛନ୍ତି । ଯଥା - ସନ୍ନିବେଶ ବୈଶିଷ୍ଟ୍ୟ ଓ ଅର୍ଥସ୍ଥ ସୌନ୍ଦର୍ଯ୍ୟ । ପରବର୍ତ୍ତୀ ପର୍ଯ୍ୟାୟରେ କାବ୍ୟତତ୍ତ୍ୱ ବିବେଚକ ଆଚାର୍ଯ୍ୟ ବୃନ୍ଦ ଭାମହଙ୍କ ଏହି ମୁଖ୍ୟମୂର୍ତ୍ତି ଉକ୍ତିକୁ ଅନୁସରଣ କରିଛନ୍ତି ।

୫୯] ଉପସଂହାର— ମାଳୀ ଯେପରି ସୁନ୍ଦର ମାଳଟିଏ ଗୁନ୍ଥିବାବେଳେ ଭାବେ ଏହି କୁସୁମଟି ସୁରଭିଯୁକ୍ତ, ଅତଏବ ଗ୍ରହଣୀୟ । ଏହା ଗ୍ରାମ୍ୟ, ତେଣୁ ତ୍ୟାଜ୍ୟ । ଏହି ସୁମନଟି ଗ୍ରଥିତ ହେଲେ ମାଳାର ସ୍ୱରୂପ ବର୍ଦ୍ଧିତ ହେବ । ଏହି ଫୁଲଟି ଏହି ସ୍ଥାନରେ ରଖିଲେ ମାଳାଟି ଅଧିକ ସୁନ୍ଦର ଦେଖାଯିବ । ଇତ୍ୟାଦି ଚିନ୍ତାକରି ମନୋମୁଗ୍ଧକର ପୁଷ୍ପହାର ରଚନା କରେ, ସେହିପରି ସତ୍କବି ସାବଧାନ ବୁଦ୍ଧିରେ ସୁନ୍ଦର, ସାର୍ଥକ, ମନୋଜ୍ଞ, ଓ ସରସ ପଦ ଚୟନ ଓ ସଂଯୋଜନକରି କାବ୍ୟ ରଚନା କରିବା ଉଚିତ ।

ଇତି ଭାମହ କାବ୍ୟାଲଙ୍କାରର ପ୍ରଥମ ପରିଚ୍ଛେଦଃ

—୦—

ପ୍ରୟୋଗ ପୂର୍ବରୁ ଶବ୍ଦର [illegible] ଜାଣିବା ଆବଶ୍ୟକ ।

୧) କେଉଁ ଶବ୍ଦ ଉପାଦେୟ ବା ଗ୍ରାହ୍ୟ ।

୨) କେଉଁ ଶବ୍ଦ ଅଗ୍ରାହ୍ୟ ବା ଅନୁପାଦେୟ ।

୩) କେଉଁ ଶବ୍ଦ ପ୍ରୟୋଗ ପରେ ସୁନ୍ଦର ଲାଗିପାରେ । କେତେକ ଶବ୍ଦକୁ ସ୍ୱତନ୍ତ୍ର ଭାବରେ ଅନୁଧ୍ୟାନ କଲେ ଚମତ୍କାରିତା ନ ମିଳିପାରେ । କିନ୍ତୁ ଅନ୍ୟ ଶବ୍ଦ ସହଯୋଗରେ ସୁନ୍ଦର ଦିଶିପାରେ ।

୪) କେଉଁ ଶବ୍ଦ କେଉଁ ସ୍ଥାନରେ ଉପଯୁକ୍ତ ହୋଇପାରେ ।

 କବି ଏ ସମସ୍ତ ବିଷୟ ଜାଣି ପ୍ରୟୋଗ କଲେ ରଚନା ଉଦ୍ଦେଶ୍ୟ ସଫଳ ହେବା ସ୍ୱାଭାବିକ ।

ଭାମହଙ୍କ କାବ୍ୟାଲଙ୍କାରର ପ୍ରଥମ ପରିଚ୍ଛେଦ ସମାପ୍ତ ।

## ଦ୍ୱିତୀୟ ପରିଚ୍ଛେଦ

ମାଧୁର୍ଯ୍ୟମଭିବାଞ୍ଛନ୍ତଃ ପ୍ରସାଦଞ୍ଚ ସୁମେଧସଃ ।
ସମାସବନ୍ତି ଭୂୟାଂସି ନ ପଦାନି ପ୍ରଯୁଂଜତେ ॥ ୧ ॥
କେଚଦୋଜୋଽଭିଧିତ୍ସନ୍ତଃ ସମସ୍ୟନ୍ତି ବହୂନ୍ୟପି ।
ଯଥା ମନ୍ଦାରକୁସୁମରେଣୁପିଂଜରିତାଳକା ॥ ୨ ॥
ଶ୍ରବ୍ୟଂ ନାତିସମସ୍ତାର୍ଥଂ କାବ୍ୟଂ ମଧୁରମିଷ୍ୟତେ ।
ଆବିଦ୍ୱଦଙ୍ଗନାବାଳପ୍ରଖ୍ୟାତାର୍ଥଂ ପ୍ରସାଦବତ୍ ॥ ୩ ॥

---

୧] ସୁକବି ଯଦି କାବ୍ୟକୁ ମାଧୁର୍ଯ୍ୟ ବା ପ୍ରସାଦ ବିଶିଷ୍ଟ କରିବାକୁ ଚାହାନ୍ତି, ତେବେ ସମାସ ବହୁଳ ପଦ ପ୍ରୟୋଗ କରନ୍ତି ନାହିଁ । ସମାସ ବହୁଳତା ଏ ଦୁଇଟିର ମହତ୍ତ୍ୱ କ୍ଷୁଣ୍ଣ କରେ ।

ଦ୍ୱିତୀୟ ପରିଚ୍ଛେଦରେ ଅଳଙ୍କାର ନିରୂପଣ କରାଯାଇଛି । କିନ୍ତୁ ତାହାର ବିଚାର ପୂର୍ବରୁ ଭାମହ ମାଧୁର୍ଯ୍ୟ, ଓଜ ଓ ପ୍ରସାଦର ସଂକ୍ଷିପ୍ତ ରୂପ ପ୍ରକାଶ କରିଛନ୍ତି । ଏ ସମସ୍ତକୁ ଗୁଣ ବା ଅଳଙ୍କାର କୌଣସି ନାମ ଦେଇ ନାହାନ୍ତି । କିନ୍ତୁ ଏ ସମସ୍ତ ଶବ୍ଦ ରଚନା ବିଧାୟକ ଚମତ୍କାର ଜନକ ଭାବେ ଚର୍ଚ୍ଚିତ ।

୨] କେତେକ ଆଚାର୍ଯ୍ୟ ଅଧିକ ସମାସ ଯୁକ୍ତ 'ଓଜ' କଥା କହିଛନ୍ତି । ଯଥା - ମନ୍ଦାର-କୁସୁମ ରେଣୁ ପିଂଜରିତାଳକା - [ ମନ୍ଦାର ଫୁଲର ରେଣୁରେ ପିଂଜରିତ ଚୂର୍ଣ୍ଣ କୁନ୍ତଳବତୀ ] [ନାରୀ] ଏଥିରେ ପାଞ୍ଚଗୋଟି ପଦ ସମାସ ଯୁକ୍ତ । ଭାମହଙ୍କ ମତରେ ଓଜର ଲକ୍ଷଣ ସମାସ ବହୁଳତା ।

ଅନୁରୂପ ଯଥା- ହରମୌଳୀମାଳାଦେବୀଭୃତ୍ସ୍ରୋତାକାନ୍ତବୀ [ମହାନଦୀ ] [ମହାଯାତ୍ରା]

୩] ଶ୍ରୁତି ସୁଖଦ ଓ ଅଧିକ ସମାସ ରହିତ କାବ୍ୟ ମଧୁର ଅଟେ । ଆବାଳବୃଦ୍ଧ ବନିତା ଯେଉଁ କାବ୍ୟକୁ ସହଜରେ ବୁଝିପାରନ୍ତି, ତାହା ପ୍ରସାଦ ଯୁକ୍ତ ଅଟେ ।

ଏହି କାରିକାର ପୂର୍ବାର୍ଦ୍ଧରେ ମାଧୁର୍ଯ୍ୟ ଲକ୍ଷଣ ଓ ଉତ୍ତରାର୍ଦ୍ଧରେ ପ୍ରସାଦ ଲକ୍ଷଣ କଥିତ । ମାଧୁର୍ଯ୍ୟର ଦୁଇଟି ବୈଶିଷ୍ଟ୍ୟ ଯଥା - ଶ୍ରୁତି ସୁଖଦ ଓ ଅଧିକ ସମାସ ହୀନ । ପ୍ରସାଦର ବୈଶିଷ୍ଟ୍ୟ - ଯାହା ଅଜ୍ଞ ଓ ବିଜ୍ଞ ସମସ୍ତଙ୍କ ପାଇଁ ବୋଧଗମ୍ୟ । ଏ ଦୁଇଟିର

ଅନୁପ୍ରାସଃ ସଯମକୋ ରୂପକଂ ଦୀପକୋପମେ ।
ଇତି ବାଗ୍ମଲଂକାରାଃ ପଞ୍ଚୈବାନ୍ୟୈରୁଦାହୃତାଃ ॥ ୪ ॥

ସରୂପବର୍ଣ୍ଣ ବିନ୍ୟାସମନୁପ୍ରାସଂ ପ୍ରଚକ୍ଷତେ ।
କଂଚିତ୍ପ୍ରା ଚନ୍ଦ୍ରପ୍ରା କାନ୍ତେ ନିତାନ୍ତେତି ଯଥୋଦିତମ୍ ॥ ୫ ॥

---

ଉଦାହରଣ ଭାମହ ଦେଇ ନାହାନ୍ତି । ଲକ୍ଷଣ ଅନୁସାରେ ନିମ୍ନୋକ୍ତ ପଦ୍ୟକୁ ଉଦାହରଣ ରୂପେ ଗ୍ରହଣ କରାଯାଇପାରେ ।

ମାଧୁର୍ଯ୍ୟ - ବସନ୍ତ ବିଜୟ ବାରତା ପ୍ରଚରିଲା ଭୁବନେ ।
ପାଦପ ଅଙ୍କୁରିତ ଧରିର ପଲ୍ଲବିତ ପଠନେ । [ଲାବଣ୍ୟବତୀ]

ପ୍ରସାଦ- ଝଲକଇ ନାଆ ବୁହାରେ ନାଉରୀ, ନିଅକୁ ମାଡ଼ୁଛି ଡ଼ର ।
ଗଡ଼ୁଗଡ଼ଲେକେ ଗ୍ରହିବସିଥିବେ ନିଅ ଯିବ ଶାଣୁଘର [କାଞ୍ଚିକାବେ]

୪] ଅଳଂକାର -- ଅନ୍ୟ କେତେକ ଆଚାର୍ଯ୍ୟ, ଯମକ, ଅନୁପ୍ରାସ, ରୂପକ, ଦୀପକ ଓ ଉପମା ଏହି ପାଞ୍ଚ ଗୋଟିକୁ ବାଣୀର ଅଳଂକାର ବୋଲି କହନ୍ତି ।

ଭାମହଙ୍କ ପୂର୍ବରୁ ଭରତ ନାଟ୍ୟଶାସ୍ତ୍ରରେ ଚାରିଗୋଟି ଅଳଂକାର ଉଲ୍ଲେଖ କରିଛନ୍ତି । ଯଥା - ଉପମା ରୂପକଂ ଚୈବ ଦୀପକଂ ଯମକଂ ଯଥା । ( ନାଟ୍ୟଶାସ୍ତ୍ର ) ଭାମହଙ୍କ ଅନୁପ୍ରାସର ଉଲ୍ଲେଖରୁ ସୂଚିତ ହୁଏ, ଭରତଙ୍କ ପରେ ଅନୁପ୍ରାସର ମହତ୍ତ୍ୱ ସ୍ୱୀକୃତ ହୋଇସାରିଥିଲା । କିନ୍ତୁ ଭାମହଙ୍କ ପର୍ଯ୍ୟନ୍ତ ଅଳଂକାର ଶବ୍ଦ - ଅର୍ଥ ରୂପରେ ବିଭକ୍ତ ହୋଇ ନଥିଲା ।

୫] ଅନୁପ୍ରାସ— ସମାନ ରୂପ ଯୁକ୍ତ ବର୍ଣ୍ଣର ବିନ୍ୟାସକୁ ଅନୁପ୍ରାସ କୁହାଯାଏ । ଯେପରି କୁହାଯାଇଛି - କଂଚିତ୍ପ୍ରା ଚନ୍ଦ୍ରପ୍ରା କାନ୍ତେ ନିତାନ୍ତେତି ( ହେ କାନ୍ତେ ! ତୁମେ ସେହି ଚନ୍ଦ୍ରାରେ ନିତାନ୍ତ ଖିନ୍ନା କାହିଁକି ) ଏହି ଭାବରେ ପୂର୍ବାର୍ଦ୍ଧରେ ଅନୁପ୍ରାସର ଲକ୍ଷଣ ଓ ଉତ୍ତରାର୍ଦ୍ଧରେ ଉଦାହରଣ ପ୍ରଦତ୍ତ ।

ଉଦାହରଣରେ ବାରମ୍ବାର 'ନ୍ତ' ପ୍ରୟୋଗରେ ସରୂପ ବର୍ଣ୍ଣ ବିନ୍ୟାସ ହେତୁ ଅନୁପ୍ରାସ ।

ଉଦାହରଣ— କନ୍ଦର୍ପଦ୍ୱୀପନା ସୁନ୍ଦରୀ ପୁରନ୍ଦରୀ ଦର୍ପଣ ମୁଁ ରୁ ନିଧି ପ୍ରତିମା ।
ଦର୍ପକ ଦର୍ପ ବିଭଞ୍ଜନ ଧନ ଦର୍ପଣ ବଦନ ଅଶେଷ ଅନଙ୍ଗ ରଙ୍ଗ ସୀମାରେ ।
(ଲ-ବ ୩-୨)

ଏଥିରେ ଦର୍ପ ୩ ଥର, ଦର୍ପ ୩ ଥର, ଧନ ୨ ଥର, ଙ୍ଗ ୨ ଥର ବ୍ୟବହୃତ । ଏକା ପ୍ରକାର ବର୍ଣ୍ଣ ବିନ୍ୟାସ ହେତୁ ଅନୁପ୍ରାସ ଅଳଂକାର ।

॥ ୪ ଗ୍ରାମ୍ୟାନୁପ୍ରାସମନ୍ୟତ୍ର ମନ୍ୟନ୍ତେ ସୁଧିୟୋଽପରେ ।
ସ ଲୋଲମାଲାନୀଲାଲିକୁଲାକୁଲଗଲୋ ବଲଃ ॥ ୭ ॥

ନାନାର୍ଥବନ୍ତୋଽନୁପ୍ରାସା ନ ଶୁଭ୍ୟପଦ୍ଧଶାଷ୍ଟଶାଃ ।
ଯୁକ୍ତ୍ୟାନୁଯୋଜିତାସ୍ତେ ତୁ ଭାୟନ୍ତେ ଭୃଶମଦ୍ଭୁତାଃ ॥ ୭ ॥

ଲାଟାନୁପ୍ରାସମିଚ୍ଛନ୍ତ୍ୟନ୍ୟେ ଯଥା
ଦୃଷ୍ଟିଂ ଦୃଷ୍ଟିସୁଖାଂ ଧେହି ଚନ୍ଦ୍ରଶ୍ଚନ୍ଦ୍ରମୁଖୋଦିତଃ

୭] ଗ୍ରାମ୍ୟାନୁପ୍ରାସ - କେତେକ ବିଦ୍ୱାନ ଗ୍ରାମ୍ୟ ଅନୁପ୍ରାସକୁ ମଧ୍ୟ ସ୍ୱୀକାର କରନ୍ତି । ଯଥା - ଚଞ୍ଚଳ ବଳରାମ ଗଳାରେ ଲୋଲ ମାଳ ଉପରେ ଆସୀନ ନୀଳ ଭ୍ରମର ସମୂହ ଦ୍ୱାରା ଆକୁଳ ଅଟନ୍ତି । ( ଲୋଲମାଲା ଚଞ୍ଚଳା ନୀଳାନାମ୍ ଅଳୀନାଂ କୁଳଂ ତେନ ଆକୁଳଃ ଗଳଃ ଯସ୍ୟ ସ ବଳଃ )

ଗ୍ରାମ୍ୟ ଅନୁପ୍ରାସର ତତ୍ତ୍ୱପର୍ଯ୍ୟ ଅସ୍ପଷ୍ଟ । ଲକ୍ଷଣ ଦିଆଯାଇ ନାହିଁ । କିନ୍ତୁ ଭାମହ ଅନୁପ୍ରାସର ବହୁଳ ପ୍ରଶଂସା କରିଥିବା ହେତୁରୁ ଗ୍ରାମ୍ୟ କଦାପି ଗ୍ରାମୀଣ ନୁହେଁ । ଉଦ୍‌ଭଟଙ୍କ ଦ୍ୱାରା ପରେ ସ୍ୱୀକୃତ ତିନି ପ୍ରକାର ବୃତ୍ତି ଯଥା - ଗ୍ରାମ୍ୟ, ପରୁଷା ଓ ଉପନାଗରିକା । ସେ ମଧ୍ୟରୁ ଏ ଉଦାହରଣ ଗ୍ରାମ୍ୟା ବୃତ୍ତି ସୂଚକ ହୋଇପାରେ । କୋମଳା ବା ଗ୍ରାମ୍ୟା ଦୌଣ୍ଡି ଏଠା କୋମଳତା ଅର୍ଥରେ ପ୍ରଯୁକ୍ତ । ଅନୁରୂପ ଯଥା - ଦେଖି ଜଳଦ କାଳିକା ବଳାକାଳି ମାଳିକା ଆଳ କାଳକୀ କାନ୍ତ ସ୍ୱର (ଲ-ବ. ୨୨-୧)

୭] ଭିନ୍ନାର୍ଥକ କିନ୍ତୁ ସମାନ ବର୍ଣ୍ଣ ବିଶିଷ୍ଟ ହେଲେ ଅନୁପ୍ରାସ ହୁଏ । ଏହି ମାଧ୍ୟମ ଯୁକ୍ତିରେ ବାଣୀ ମନୋରମ ହୁଏ । ଯୁକ୍ତି = ମାର୍ଗ ।

'ସମାନ ଅକ୍ଷର' ଉକ୍ତିରୁ ମନେହୁଏ, ଭାମହ ବ୍ୟଞ୍ଜନ ବର୍ଣ୍ଣ ପ୍ରତି ଇଙ୍ଗିତ ଦେଇଛନ୍ତି । କୋଚେତ୍ ଯମକଠାରୁ ଏହାର ଭିନ୍ନତା ରହିବ ନାହିଁ । ଶ୍ରୁତି ଭାଷକାର ପୂର୍ବ ଲକ୍ଷଣାନୁସାରେ ଅନୁପ୍ରାସ ସଂଯୋଜନା ଓ ଉଜ୍ଜ୍ୱଳ ଶବ୍ଦ ଓ ଅର୍ଥ ଉଭୟ ପ୍ରତି ଧ୍ୟାନ ଦେବା ପାଇଁ ନିର୍ଦ୍ଦେଶ ରହିଛି ।

୮] ଲାଟାନୁପ୍ରାସ - ଅନ୍ୟ କେତେକ ବିଦ୍ୱାନ ଅନୁପ୍ରାସର ଆଉ ଏକ ଭେଦ ରୂପରେ ଲାଟାନୁପ୍ରାସ ସ୍ୱୀକାର କରନ୍ତି । ଯଥା - ଚନ୍ଦ୍ରମୁଖ ଚନ୍ଦ୍ର ଉଦୟ ହେଲେଣି । ଦୃଷ୍ଟି ସୁଖଦାୟକ ଦୃଷ୍ଟି ଧାରଣ କର ।

ଏଠାରେ ଲାଟାନୁପ୍ରାସର ଲକ୍ଷଣ ନ ଦେଇ ଉଦାହରଣ ମାତ୍ର ପ୍ରସ୍ତୁତ କରିଛନ୍ତି । ସେଥିରୁ ସ୍ପଷ୍ଟ ହୁଏ । ତାତ୍ପର୍ଯ୍ୟ ମାତ୍ର ଭେଦରେ ଶବ୍ଦ ଓ ଅର୍ଥର ଆବୃତ୍ତି ଲାଟାନୁପ୍ରାସ ।

॥ ଆଦ୍ୟମଧ୍ୟାନ୍ତଯମକଂ ପାଦାଭ୍ୟାସ ତଥାବଳୀ ।
ସମସ୍ତପାଦଯମକମିତ୍ୟେତତ୍ପଞ୍ଚଧୋଚ୍ୟତେ ॥ ୯ ॥

ସନ୍ଦଷ୍ଟକସମୁଦ୍‌ଗାବେରଷ୍ଟ୍ୟେ ବାନ୍ତଗ ତମିତା ।
ଆଦୌ ମଧ୍ୟାନ୍ତଯୋର୍ବା ସ୍ୟାଦିତି ପଞ୍ଚୈବ ତଦ୍‌ଯଥା ॥ ୧୦ ॥

---

ନାୟିକା ପ୍ରତି ବିମନା ନାୟକଙ୍କ ଭୂଷା ବଳୁଛୁ - ଚିହ୍ନ ଉଦୟ ହେଉଛି । ନାୟିକାର ବିରହ ବେଦନା ବଢ଼ିଲାଣି + ବର୍ତ୍ତମାନ ତୁମର ଉଦାସୀନତା ଶୋଭନୀୟ ନୁହେ । ତୁମେ ତାର ଆଖିର ଉଦାସୀନତା ଦୂର କର ଅନୁରାଗ ପୂର୍ଣ୍ଣ କର । ଅର୍ଥାତ୍ ନାୟିକା ପ୍ରତି ଅନୁରକ୍ତ ହୁଅ । ଏହି ଶ୍ଳୋକରେ ଦୃଷ୍ଟି, ଦୃଷ୍ଟି, ଚନ୍ଦ୍ର, ଚନ୍ଦ୍ର, ପୁନରୁକ୍ତି । ତଥାପି ତାତ୍ପର୍ଯ୍ୟ ଭେଦ ରହିଛି ତେଣୁ ଲାଟାନୁପ୍ରାସ ।

ଉଦାହରଣ - ଜୀବନ ସଙ୍ଗିନୀ ଦେଇ ତୋଠାରେ ଜୀବନ ।
ପିଲାଙ୍କୁ ଆଦେଶେ ଆଜ ନାଡ଼ିଅଛୁ ବନ । (ତପସ୍ୱିନୀ)

'ଶ୍ରୀମଦ୍‌ଙ୍କ ବିବରଣ' ରେ ଉଦ୍‌ଭଟ ଏହାକୁ ପୁନରୁକ୍ତବଦାଭାସ ରୂପେ ଗ୍ରହଣ କରିଛନ୍ତି । କିନ୍ତୁ ଶ୍ରୀମଦ୍‌ ପୁନରୁକ୍ତବଦାଭାସ ବିଷୟ ଉଲ୍ଲେଖ କରି ନାହାନ୍ତି ।

୯] ଯମକ — ଯମକ ପଞ୍ଚବିଧ - ଯଥା - ଆଦି ଯମକ, ମଧ୍ୟାନ୍ତ ଯମକ, ପାଦାଭ୍ୟାସ ଯମକ, ଆବଳୀ ଯମକ, ଓ ସମସ୍ତପାଦ ଯମକ ।

ଶ୍ରୀମଦ୍‌ ଯମକର ଲକ୍ଷଣ ଏହି ପରିଚ୍ଛେଦର ସପ୍ତଦଶ କାରିକାରେ ଦେଇଛନ୍ତି । ଏଠାରେ କେବଳ ତାର ବିଭାଗ ପ୍ରଦର୍ଶିତ । ପରେ ଦଣ୍ଡୀ ଯମକର ଶତାଧିକ ବିଭାଗ ପ୍ରଦର୍ଶନ କରିଛନ୍ତି ।

୧୦] ସନ୍ଦଷ୍ଟକ, ସମୁଦ୍‌ଗକ ଆଦି ଯମକର ଅନ୍ୟ ଭେଦ, ଯାହାକି ସ୍ୱୀକୃତ, ତାହା ପୂର୍ବୋକ୍ତ ଆଦି ଯମକ ବା ମଧ୍ୟାନ୍ତ ଯମକ ବିଭାଗରେ ଅନ୍ତର୍ଭୁକ୍ତ । ତେଣୁ ଯମକ ମୁଖ୍ୟତଃ ପାଞ୍ଚ ପ୍ରକାର ଅଟେ ।

ସନ୍ଦଷ୍ଟରେ ସ୍ୱାର୍ଥରେ 'କ' ପ୍ରତ୍ୟୟ ହୋଇ ସନ୍ଦଷ୍ଟକ । ସନ୍ଦଷ୍ଟ ଓ ସନ୍ଦିଷ୍ଟକ ସମାର୍ଥକ । ଦଣ୍ଡୀଙ୍କ ସନ୍ଦଷ୍ଟର ଲକ୍ଷଣ - ସନ୍ଦଷ୍ଟଯମକ ସ୍ଥାନ ମନ୍ତ୍ୟାଦି ପାଦୟୋର୍ଦ୍ୱୟୋଃ । ଅର୍ଥାତ୍ କୌଣସି ପାଦରେ ଅନ୍ତ ଓ ଅନ୍ୟ ପାଦର ଆଦିରେ ଯମକ ଥିଲେ ତାର ନାମ ସନ୍ଦଷ୍ଟକ ।

ଯଥା - ଦେହଟି ଶିରୀଷ କୋମଳ ତହିଁରେ ଦାରୁଣ ପଞ୍ଚବିଶିଖ,
ପଞ୍ଚବିଶିଖ ଶିକ୍ଷା କରି ବିଛିବ, ତୋପରି ଶୀଘ୍ର ମନ୍ଦୁଖ ।

ସାଧୁନା ସାଧୁନା ତେନ ରାଜତା ରାଜତା ଭୃତା ।
ସହିତଂ ସହିତଂ କର୍ତ୍ତୁଂ ସଂଗତଂ ସଙ୍ଗତଂ ଜନମ୍ ॥ ୧୧ ॥

ସାଧୁଃ ସଂସାରଦ୍ବିଦ୍ୟଦସ୍ଥାଦସାରତ୍ ।
କୃତ୍ୱା କ୍ଲେଶାନ୍ତଂ ଯାତି ବର୍ତ୍ମ ପ୍ରଶାନ୍ତମ୍ ।
ଜାତଂ ବ୍ୟାଧୀନାଂ ଦୁର୍ଦ୍ଧମାନାମଧୀନାଂ
ବାଞ୍ଛଂ ଜ୍ୟାସୃଷ୍ଟଂ ଛିନ୍ଧି ମୁକ୍ତାନସୃଷ୍ଟମ୍ ॥ ୧୨ ॥

---

ଶୀତମସ୍ପୃଶ ଚନ୍ଦନ ଯେ ହୋଇବ ଶୀତ ଉପଚାର ସଖି !
ବଂଶୀଙ୍କ ପଚାର ଅଣ ଆସୁଅଛି ଯାଉଛୁ ରାଜୀବମୁଖୀ । (ପ୍ରେ.ସୁ. ୮-୮)

ଏଥିରେ ପ୍ରଥମ ପାଦର ଅନ୍ତ-ଦ୍ୱିତୀୟ ପାଦର ଆଦ, ଦ୍ୱିତୀୟର ଅନ୍ତ, ତୃତୀୟର ଆଦ ତୃତୀୟର ଅନ୍ତ-ଚତୁର୍ଥର ଆଦରେ ଯମକୁ ରହିଛୁ । ତେଣୁ ଏହା ସନ୍ଦଷ୍ଟ ଯମକ । ସମୁଦ୍ଗର ଲକ୍ଷଣ ଅର୍ଦ୍ଧାଭ୍ୟାସଃ ସମୁଦ୍ଗଃ ସ୍ୟାତ୍ । (କାବ୍ୟାଦର୍ଶ) ପଦ୍ୟର ଅର୍ଦ୍ଧେକର ପୁନରାବୃତ୍ତି ସମୁଦ୍ଗ ଯମକ ଅଟେ । ଯଥା —

ଅହିମକର ତାପ ନାଶେ ଶୋଭି ସାରସ-ଚନ୍ଦେ ।
ଅହି ମକର ତାପ ନାଶେ ଶୋଭି ସାରସ ଚନ୍ଦେ । (ଲ-ବ ୬-୨୩)

୧୧) **ଆଦ ଯମକ**— ନିଜ ଅନୁଗତଙ୍କ ହିତ ସାଧନ ପାଇଁ ଏବଂ ଅଭ୍ୟାଗତଙ୍କୁ ମଙ୍ଗଳ ସହିତ ସଂଗତ କରିବା ପାଇଁ ଶୀଳାଦିଗୁଣ ସମ୍ପନ୍ନ, ଗୁପ୍ତ କାନ୍ତି ବର୍ତ୍ତିମାନ ସେହି ସବୁ ପ୍ରଶଂସିତ ରାଜତ୍ୱ ଗ୍ରହଣ କଲେ ।

ଏହି ପଦ୍ୟରେ କୌଣସି ରାଜାର ସିଂହାସନ ଆରୋହଣ ବର୍ଣ୍ଣିତ । ଅନ୍ୱୟ - ସହିତଂ (ଜନଂ) ସହିତଂ, ସଙ୍ଗତଂ ଜନଂ ସଂଗତଂ(ଚ) କର୍ତ୍ତୁ ରାଜତା ତେନ ସାଧୁନା ଅଧୁନା ସା ରାଜତା ଭୃତା । ପ୍ରତ୍ୟେକ ପଦର ଆରମ୍ଭରେ ଗୋଟି ଗୋଟି ବର୍ଣ୍ଣର ଆବୃତ୍ତି ହେତୁ ଆଦ୍ୟ ଯମକ ।

ଅନୁରୂପ ଯଥା— ବରାଜ ବ-ରାଜ ଅଛନ୍ତି ମୀନ ଭକ୍ଷଣ ପାଇଁ ।
ରାଜୀବ ରାଜୀବ ନୟନା ଏଥି ଖେଳି କରଇ । (ଲ-ବ. ୬-୧୯)

୧୨) **ମଧ୍ୟାନ୍ତ ଯମକ**— ସାଧୁ ବ୍ୟକ୍ତି ଏହି ଅସାର ସଂସାରକୁ ଡର ଦୁଃଖ ନିବୃତ୍ତି ପାଇଁ ଶାନ୍ତ ମାର୍ଗକୁ ଗ୍ରହଣ କରେ । ଯଦି ତୁମେ ଉତ୍କର୍ଷ ଅଭିଳାଷୀ ଅଟ, ତେବେ ଅଜ୍ଞାତକୁ ବର୍ଜନ କରି ଦୁର୍ଦ୍ଦମନୀୟ ବ୍ୟାଧିର ଆଧାର ଜନ୍ମ ବନ୍ଧନକୁ ଛେଦନ କର ।

ନ ଚେ ଧୀଧୀର୍ଭି ଭୋଗେଷୁ ରମଣୀୟେଷୁ ସଙ୍ଗତା ।
ମୁନୀନପି ହରନ୍ତ୍ୟେତେ ରମଣୀ ଯେଷୁ ସଂଗତା ॥ ୧୩ ॥
ସିତାସିତାକ୍ଷୀଂ ସୁପୟୋଧରାଧରାଂ
ସୁସମ୍ପଦାଂ ବ୍ୟକ୍ତମଦାଂ ଲସନ୍ମଦାମ୍ ।
ଘନାଘନା ମାଳ ଘନାଘନାଳକାଂ
ପ୍ରିୟାମିମାମୁଦ୍ଧକଯୁନ୍ତି ଯନ୍ତି ଚ ॥ ୧୪ ॥

---

କ୍ଲେଶ ଶବ୍ଦର ଅର୍ଥ- କଷ୍ଟ, ଅଥବା ପତଞ୍ଜଳିଙ୍କ କଥିତ ଅବିଦ୍ୟା, ଅସ୍ମିତା ରାଗ, ଦ୍ୱେଷ ଓ ଅଭିନିବେଶ । "ଅବିଦ୍ୟାସ୍ମିତାରାଗଦ୍ୱେଷାଭିନିବେଶାଃ କ୍ଲେଶାଃ (ଯୋଗସୂତ୍ର) ସାରନ୍ତ, ଶାନ୍ତଂ, ଧୀନାଂ, ଯନ୍ତ୍ୟଂ ଏହି ଚାରିଗୋଟି ଅକ୍ଷର ସମୂହ ପ୍ରତ୍ୟେକ ଚରଣର ମଧ୍ୟ ଓ ଅନ୍ତରେ ପୁନରାବୃତ୍ତି ହେତୁ ଏହା ମଧ୍ୟାନ୍ତ ଯମକ । ଏଥିରେ ସାର୍ଥକ ଓ ଅସାର୍ଥକ ପଦ ମିଶି ରହିଛି ।

ଅନ୍ୱୟ – ଅସାନ୍ତ ଅସାରନ୍ତ ବିଭ୍ୟନ୍ ସାଧୁଃ କ୍ଲେଶାନ୍ତଂ କୃତ୍ୱା ପ୍ରଶାନ୍ତଂ ବର୍ତ୍ମଂ ଯାତ । ଜ୍ୟାୟନ୍ତଂ ବାଞ୍ଛନ୍ ମୁକ୍ତାନସ୍ତଃ ତ୍ୱଂ ବୃଦ୍ଧମାନାଂ ବ୍ୟାଧୀନାମ୍ ଅଧୀନାଂ ଜାତଂ (ଜନ୍ମ) ଛିନ୍ଧି ।

ଉଦାହରଣ—ଚନ୍ଦ୍ରକୁ କହେ କୁମାର ମାରକୁ କି ଏହି ନିକଟେ ନ ସାଇବ ।
ଥିବ ଜିବ ଜୀବନକ୍ଷଣି ଲଭିବା ଯାଏ କି କାର୍ଯ୍ୟ ଦଶାଇବ ।
ଚନ୍ଦ୍ରମା, ରହସ୍ୟେ ରସେ ବସାଇବ ।
ନବସ୍ଥାଇ ତାକୁ ପଲକେ ପଲଙ୍କେ ଭରୁ ଉପରେ ବସାଇବ (ପ୍ରେ.ସୁ. ୩-୧)

୧୩) ପାଦାଭ୍ୟାସଯମକ— ହେ ଧୀର, ତୁମେ ସୁଖଦାୟକ ଭୋଗରେ ଅଭିଳାଷୀ ନୁହ । ଯେଉଁ ଭୋଗରେ ରମଣୀ ସଂଯୁକ୍ତା ସେହି ଭୋଗ ମୁନିଙ୍କ ମନକୁ ମଧ୍ୟ ହରଣ କରେ । (ସାଧନାରୁ ବିଚଳନ କରେ)

ଏହି ପଦ୍ୟରେ କୌଣସି ଜିତେନ୍ଦ୍ରିୟର ପ୍ରଶଂସା କରାଯାଇଛି । ଅଭ୍ୟାସର ଅର୍ଥ ଆବୃତ୍ତି । ପାଦାଭ୍ୟାସର ଅର୍ଥ ପୂର୍ବପାଦର ଆବୃତ୍ତି । ପ୍ରସ୍ତୁତ ଶ୍ଳୋକରେ ଚାରିଗୋଟି ପାଦ । ଏଠାରେ ଦ୍ୱିତୀୟ ଓ ଚତୁର୍ଥ ପାଦ ସମାନ । ତେଣୁ ପାଦାଭ୍ୟାସଯମକ ।

ଅନୁରୂପ ଯଥା- ବର ପ୍ରକାଶିବ ସୁମନମର ସୁମନସରାଗ
ମସ୍ତକ ଆଣିଲ ସୁମନସର ସୁମନଶର । (ଲ-ବ-୬-୨୪)
(ସ୍ୱର୍ଗଲୋକର, ଆନନ୍ଦ ଦାୟକସରୋବର, ପୁଷ୍ପ ସମୂହ, କନ୍ଦର୍ପବାଣ)

ଅମୀନ୍ ପାଦଞ୍ଜସମଗ୍ର ଶାସନ୍ତାଃ
ଶଙ୍କାଚଦ୍ଧପ୍ୟଦ୍ଭିତବନ୍ଧି ଶାସନ୍ତାଃ ।
କୃତାଗସାଂ ମାର୍ଗଭିଦାଂ ଚ ଶାସ୍ତ୍ରକାଃ
ପିତୃସମାଧ୍ୟାସିତ ଚାଦ୍ ଶାସନ୍ତାଃ ॥ ୧୫ ॥

---

୧୪) ଆବଳୀ ଯମକ— ଶ୍ୱେତ ଓ ଶ୍ୟାମବର୍ଣ୍ଣଯୁକ୍ତ ସୁଲକ୍ଷ୍ମ ଭ୍ରୂ ଓ ଅଧର ବଶିଷ୍ଟା ଆନନ୍ଦମୟୀ, ମଦମତ୍ତା, ସୌନ୍ଦର୍ଯ୍ୟରେ ଉଲ୍ଲସିତା, ମେଘ ପରି ଘନ ଓ କାଳିମା ଯୁକ୍ତ କେଶବତୀ ସେହି ପ୍ରେମିକାକୁ ଏହି କଳାପରୂ ବର୍ଷା ମେଘ ଉତ୍କଣ୍ଠିତ କରି ଦୂର ଯାଉଛନ୍ତି ।

ବର୍ଷା ଋତୁରେ ପ୍ରବାସୀ ବିରହୀର ଉକ୍ତି । ଆବଳୀ = ଫଳ, ଘନାଘନ = ବର୍ଷାର ମେଘ, ସନ୍ମାଦ = ଆନନ୍ଦ, ସୁସ୍ମନ୍ଦଦାଂ = ପ୍ରସନ୍ନଚିତ୍ତ ସ୍ଫୂର୍ତ୍ତି, ଲକ୍ଷ୍ମଦାଂ = ସୌନ୍ଦର୍ଯ୍ୟଦାତ୍ରୀ, କୌଣସି ସ୍ଥାନରେ ସମ ଅକ୍ଷରକରି ସିତା-ସିତା, ଧବ-ଧବ, ମଦାଂ-ମଦାଂ ଘନାଘନା-ଘନାଘନା, ସୁନ୍ଦ-ସୁନ୍ଦ ଆଦି ଅନେକ ଯମକ ରହିଥିବାରୁ ଏହା ଆବଳୀ ଯମକ ଅଟେ ।

ଅନୁରୂପ ଉଦାହରଣ– ଗ୍ରମା ଶିଶିରେ ଘୋର ଶଶିରେ ଦୂରଗଗିରେ ଛପି ।

ବସି ଏକାନ୍ତ ମାନସେ କାନ୍ତ ସ୍ୱରୂପକାନ୍ତ ଘୋଷି ।
ଚନ୍ଦ୍ର ବଦନେଣ ଙ୍କ ଲ୍ବଦଦେଶ ଛେଳ ସନ୍ଦେଶ ଛାଡି ।
କେଉଁ ସୁନ୍ଦରୀ ମନ ଦଶ୍ମ କ୍ରୀଡ ଆନ୍ତର କୁଞ୍ଜ । (ବୈଦେହୀ-୧-୮)

ଆବଳୀ ଯମକର ଏହା ପ୍ରକୃଷ୍ଟ ଉଦାହରଣ ।

୧୫) ସମସ୍ତ ପାଦ ଯମକ— ଏହି ରାଜାମାନଙ୍କର ଶାସନ ଅଖଣ୍ଡ ଅଟେ । ଏମାନଙ୍କ ଆଦେଶ କେବେ ମଧ୍ୟ ଅନ୍ୟଥା ହୁଏ ନାହିଁ । ଅପରାଧୀ ଓ ମର୍ଯ୍ୟାଦା ଲଙ୍ଘନକାରୀଙ୍କୁ କଠୋର ଦଣ୍ଡ ଦିଅନ୍ତି । ଏହିପରି ସିଂହାସନକୁ ଏମାନେ ଦୀର୍ଘ ଯୁଗ ଧରି ଅଳଂକୃତ କରିଛନ୍ତି ।

କୌଣସି ରାଜାଙ୍କ ସ୍ତୁତି ଏହି ଶ୍ଳୋକରେ ବର୍ଣ୍ଣିତ । ଏହି ଶ୍ଳୋକର ପ୍ରତ୍ୟେକ ପାଦ ଶେଷରେ 'ଶାସନାଃ' ର ଆବୃତ୍ତି ହୋଇଛି । ତେଣୁ ଏହା ସମସ୍ତ ପାଦ ଯମକର ଉଦାହରଣ ।

ଅନୁରୂପ ଯଥା— ବନଦ ତମାଳ ତମ, ବାଳେ ନୀଳେ ଚାରୁ ତମ ।
ବିଚ୍ଛେଦରୁ ହେଲେ ତମ କ୍ଲେଶ ଉତ୍ତମ ଏ । (ବୈ-ବି-୨୨-୩)

ଏ ପଦ୍ୟର ପ୍ରତି ପାଦ ଶେଷରେ ତମ ରହିଥିବାରୁ ସମସ୍ତ ପାଦ ଯମକ ଅଟେ ।

ଅନନ୍ତରୈକାଂତରଯୋରେଙ୍କ ପାଦାଂତଯୋରପି ।
କୃତ୍ସ୍ନଂଚ ସର୍ବପାଦେଷୁ ଦୁଷ୍କରଂ ସାଧୁ ତଦ୍ଦୃଶମ୍ ॥ ୧୬ ॥
ତୁଲ୍ୟ ଶ୍ରୁତୀନାଂ ଭିନ୍ନାନାମଭିଧେୟୈଃ ପରସ୍ପରମ୍ ।
ବର୍ଣ୍ଣାନାଂ ଯଃ ପୁନର୍ବାଦୋ ଯମକଂ ତନ୍ନିଗଦ୍ୟତେ ॥ ୧୭ ॥
ପ୍ରସିଦ୍ଧଶବ୍ଦମୋଜସ୍ୱି ସୁଶ୍ଳିଷ୍ଟପଦସନ୍ଧି ଚ ।
ପ୍ରସାଦି ସ୍ୱଭିଧାନଂ ଚ ଯମକଂ କୃତିନାଂ ମତମ୍ ॥ ୧୮ ॥
ନାନାଧାତ୍ୱର୍ଥଗମ୍ଭୀରା ଯମକ ବ୍ୟପଦେଶିନୀ ।
ପ୍ରହେଳିକା ସାତ୍ୱ୍ୟଦିତା ରାମଶର୍ମାଚ୍ୟୁତୋତ୍ତରେ ॥ ୧୯ ॥

---

୧୬) ଅନ୍ତର ରହିତ ଭାବେ, ପୁଣି ଏକାନ୍ତର ପାଦରେ ତଥା ସମସ୍ତ ପାଦରେ ସମୋଚ୍ଚାରିତ ପଦକୁ ଆବୃତ୍ତି କରି ଯମକ ଅଳଂକାର ସୃଷ୍ଟି କରାଯାଇ ପାରେ । କିନ୍ତୁ ଏହି ପରି ଶବ୍ଦ ସଂଯୋଜନ କଲା ସୁନ୍ଦର ଓ ସରସ ହେବା କଠିନ ।

ଅନନ୍ତର — ୧-୨, ୨-୩, ୩-୪ ଇତ୍ୟାଦି । ଏକାନ୍ତର— ୧-୩, ୨-୪, ଏବଂ ସବୁ ପାଦରେ ଗୋଟିଏ ପାଦର ଆବୃତ୍ତି । ଏହିପରି ଯମକର ଉଦାହରଣ ପ୍ରସ୍ତୁତ କରାଯାଇପାରେ । କିନ୍ତୁ ସେଥିରେ ସୁନ୍ଦରତା ଓ ସରସତା ସୃଷ୍ଟି କଠିନ ବ୍ୟାପାର ।

୧୭ ଯମକ ଲକ୍ଷଣ— ସମାନ ଭାବେ ଶୁଣାଯାଉଥିବା, କିନ୍ତୁ ଅର୍ଥ ଭିନ୍ନ ଥିବା ବର୍ଣ୍ଣମାନଙ୍କର ଆବୃତ୍ତିକୁ ଯମକ ଅଳଂକାର କୁହାଯାଏ ।

ପୁନର୍ବାଦ = ଆବୃତ୍ତି, ପରବର୍ତ୍ତୀ କାଳରେ ଭିନ୍ନ ଶବ୍ଦରେ କିନ୍ତୁ ଅନୁରୂପ ଭାବରେ ଯମକ ଲକ୍ଷଣ କରାଯାଇଛି ।

ସତ୍ୟର୍ଥେ ପୃଥଗର୍ଥାୟାଃ ସ୍ୱରବ୍ୟଂଜନସଂହତେଃ ।
କ୍ରମେଣ ତେନୈବାବୃତ୍ତିର୍ଯମକଂ ବିନିଗଦ୍ୟତେ ! (ଦର୍ପଣ)
ଯମକରେ ଅର୍ଥସୌଷ୍ଠବ ଅପେକ୍ଷା ବର୍ଣ୍ଣଯୋଜନା ମୁଖ୍ୟ ।

୧୮) ଯମକର ବୈଶିଷ୍ଟ୍ୟ— ସତ୍କବିଙ୍କ ଅଭିମତ ଯମକ ପ୍ରସିଦ୍ଧ ଶବ୍ଦଯୁକ୍ତ, ଓଜପୂର୍ଣ୍ଣ ଅର୍ଥାତ୍ ସମାସ ଯୁକ୍ତ, ସୁଶ୍ଳିଷ୍ଟ ପଦସନ୍ଧି ସମନ୍ୱିତ ଓ ସହଜ ଉଚ୍ଚାରିତ ହୋଇଥାଏ ।

୧୯) ହେୟ ଯମକ— ବିଭିନ୍ନ ଅପ୍ରସିଦ୍ଧ ଧାତୁରେ ନିଷ୍ପନ୍ନ ଦୁର୍ବୋଧ ଶବ୍ଦ ପ୍ରୟୋଗ ବସ୍ତୁତଃ ପ୍ରହେଳିକା ମାତ୍ର । ରାମଶର୍ମା ନାମକ ଲେଖକଙ୍କ 'ଅଚ୍ୟୁତୋତ୍ତର' କାବ୍ୟରେ ଏହିପରି ନିକୃଷ୍ଟ ପ୍ରଚୁର ଯମକ ଥିବା ଲକ୍ଷ୍ୟ କରି ଦଣ୍ଡୀ ତାହାର ସୂଚନା

ନୀଗମ୍ୟାଗମ୍ୟାନି
କାବ୍ୟାନ୍ୟପି ଯଦୀମାନି ଶାସ୍ତ୍ରବତ୍ ।
ଉତ୍ସବଃ ସୁଧିୟାମେବ ହନ୍ତ ଦୁର୍ମେଧସୋ ହତାଃ ॥ ୨୦ ॥
ଉପମାନେନ ଯତ୍ତତ୍ତ୍ୱମୁପମେୟସ୍ୟ ରୂପ୍ୟତେ ।
ଗୁଣାନାଂ ସମତାଂ ଦୃଷ୍ଟ୍ୱା ରୂପକଂ ନାମ ତଦ୍ ବିଦୁଃ ॥ ୨୧ ॥
ସମସ୍ତ ବସ୍ତୁବିଷୟ ମେକଦେଶବିବର୍ତ୍ତି ଚ ।
ଦ୍ୱିଧା ରୂପକମୁଦ୍ଦିଷ୍ଟମେତତ୍ତଚ୍ଚୋଚ୍ୟତେ ଯଥା ॥ ୨୨ ॥
ଶୀକରାମ୍ଭୋମଦସୃଜସ୍ତୁଙ୍ଗା ଜଳଦଦନ୍ତିନଃ ।
ନର୍ଯାନ୍ତୋ ମଦୟନ୍ତୀମେ ଶକ୍ରକାର୍ମୁକବାରଣାଃ ॥ ୨୩ ॥

---

ଦେଇଛନ୍ତି । ବର୍ତ୍ତମାନ କିନ୍ତୁ ସେ ଗ୍ରନ୍ଥ ଅନୁପଲବ୍ଧ । ଦୁରୂହାର୍ଥ ଶବ୍ଦବନ୍ଧ ଯମକକୁ ଭାମହ ହେୟ ମନେ କରିଛନ୍ତି ।

୨୦) ଯଦି କୌଣସି କାବ୍ୟ ଶାସ୍ତ୍ରପରି ବ୍ୟାଖ୍ୟାଦ୍ୱାରା ବୋଧଗମ୍ୟ ହୁଏ, ତେବେ ତାହା ପଣ୍ଡିତଙ୍କ ଆନନ୍ଦ ବିଧାନ କରିପାରେ । କିନ୍ତୁ ସୁକୁମାର ମତି ବ୍ୟକ୍ତି ମଲେ ବୋଲି ଜାଣ ।

ଏଥିରୁ ସ୍ପଷ୍ଟ ହୁଏ, ଭାମହ କ୍ଲିଷ୍ଟ କାବ୍ୟର ବିରୋଧୀ ଥିଲେ । ସୁବୋଧ କାବ୍ୟକୁ ହିଁ ସେ ବାଞ୍ଛନୀୟ ମନେ କରୁଥିଲେ । ଭଟ୍ଟିକାବ୍ୟରେ ଏପରି ଏକ ଶ୍ଳୋକ ମିଳେ । ଯଥା -

ବ୍ୟାଖ୍ୟାଗମ୍ୟମିଦଂ କାବ୍ୟମୁତ୍ସବଃ ସୁଧିୟାମଲମ୍ ।
ହତା ଦୁର୍ମେଧସଶ୍ଚାସ୍ମିନ୍ ବିଦ୍ୱତ୍ପ୍ରିୟତୟା ମୟା ।

ଅର୍ଥାତ୍— ଏହି କାବ୍ୟ ବ୍ୟାଖ୍ୟା ଦ୍ୱାରା ବୋଧ୍ୟ ଅଟେ । ଅତଏବ ବିଦ୍ୱାନ୍ ବ୍ୟକ୍ତିଙ୍କୁ ପର୍ଯ୍ୟାପ୍ତ ଆନନ୍ଦ ମିଳିବ । ମୁଁ ବିଦ୍ୱତ୍ ପ୍ରେମୀ ହେତୁ ଦୁର୍ବୁଦ୍ଧି ଅବଶ୍ୟ ମରିବେ । ଅର୍ଥାତ୍ ଦୁର୍ବୁଦ୍ଧିଙ୍କ ପାଇଁ ଏ ଗ୍ରନ୍ଥ ନୁହେ । ମନେ ହୁଏ ଭଟ୍ଟି କବିଙ୍କ ବାହାସ୍ଫୋଟକୁ ଭାମହ ପରିହାସ କରିଛନ୍ତି ।

୨୧) ରୂପକ – ଗୁଣର ସମତାକୁ ଦେଖି ଉପମାନ ସହିତ ଉପମେୟର ତାଦାତ୍ମ୍ୟ ନିରୂପିତ ହେଲେ ତାହାକୁ ରୂପକ କହନ୍ତି । ତତ୍ତ୍ୱ = ତାଦାତ୍ମ୍ୟ ବା ଅଭେଦ ।

ଉପମେୟରେ ଉପମାନର ଆରୋପ ଅର୍ଥାତ୍ ଉପମେୟ ଓ ଉପମାନର ଅଭେଦ କଥନ ରୂପକ ଅଟେ । ଏହି ଅଭେଦର ଆଧାର ଗୁଣସାମ୍ୟ ।

୨୨) ରୂପକ ଭେଦ — ରୂପକ ଦୁଇ ପ୍ରକାର - ୧) ସମସ୍ତବସ୍ତୁ ବିଷୟ ୨) ଏକଦେଶ ବିବର୍ତ୍ତୀ । ଏହି ଦୁଇଟି ନିମ୍ନୋକ୍ତ ସ୍ଥଳରେ କଥିତ, ଯଥା —

୨୩) **ସମସ୍ତ ବସ୍ତୁ ବିଷୟ** — ଜଳକଣା ରୂପୀ ମଦଜଳ ବର୍ଷଣକାରୀ ମେଘ ରୂପକ ବିଶାଳ ହସ୍ତୀ ଇନ୍ଦ୍ରଧନୁ ରୂପ ଅଂକୁଶ ଧାରଣ କରି କାମୁକଙ୍କୁ ଉନ୍ମତ୍ତ କରୁଅଛି ।

ତଡିଦ୍‌ବଲୟକକ୍ଷ୍ୟାଣାଂ ବଲାକାମାଲଧାରିଣାମ୍ ।
ପୟୋମୁଚାଂ ଧ୍ୱନିର୍ଧୀରୋ ଦୁନୋତି ମମ ତାଂ ପ୍ରିୟାମ୍ ॥ ୨୪ ॥
ଆଦି ମଧ୍ୟାନ୍ତ ବିଷୟଂ ତ୍ରିଧା ଦୀପକମିଷ୍ୟତେ ।
ଏକସ୍ୟୈବ ବ୍ୟବସ୍ଥତ୍ୱାଦିତି ତଦ୍‌ଭିଦ୍ୟତେ ତ୍ରିଧା ॥ ୨୫ ॥

---

ଏଠାରେ ଜଳକଣା ସହିତ ମଦଜଳ, ମେଘ ସହିତ ହସ୍ତୀ ଓ ଇନ୍ଦ୍ରଧନୁ ସହିତ ଅଙ୍କୁଶ ଅଭେଦ ରୂପରେ ଉପସ୍ଥାପିତ । ଅତଏବ ସମସ୍ତବସ୍ତୁ ବିଷୟକ ରୂପକ ଅଟେ ।

ଅନୁରୂପ ଉଦାହରଣ ଯଥା —

ବିଶ୍ୱାମିତ୍ର ଗୁରୁ ସଙ୍ଗେ ରାମଚନ୍ଦ୍ର,
ବନବ୍ୟୋମେ ଜଣ ଉଦେ ପ୍ରଖରତର ବିଧ୍ୱଂସିଲେ ତାଡ଼କା ଘୋରାନ୍ଧକାର ।
ବିଚେଷ୍ଟିତ ମାରୀଚ ବାୟସ କରି, ବିଟପଠ ସୁବାହୁକୁ ସେ ନିବାରି । (ବୈ-ବି-୧୩-୧୪)

ବିଶ୍ୱାମିତ୍ର-ବୃହସ୍ପତି, ରାମ-ଚନ୍ଦ୍ର, ବନ-ଆକାଶ, ପ୍ରଖରତର ଅଧିକଦୀପ୍ତ, ତାଡକା-ଅନ୍ଧକାର, ମାରୀଚ-ବାୟସ, ସୁବାହୁ-ବିଟପଠ (ବିଚେଷ୍ଟିତ-ଅଚେତନ)

ଏଠାରେ ସମସ୍ତ ବସ୍ତୁରେ ଅଭେଦାରୋପ ହେତୁ ସମସ୍ତ ବସ୍ତୁ ବିଷୟକ ରୂପକ ଅଟେ ।

୨୪) ଏକଦେଶ ବିବର୍ତ୍ତୀ— ବିଦ୍ୟୁତ୍ ବଳୟ ରୂପୀ ଜଂଜୀର (କକ୍ଷ୍ୟା) ଏବଂ ବକପନ୍ତି ରୂପମାଳା ଧାରଣ କରିଥିବା ମେଘର ଗମ୍ଭୀର ଧ୍ୱନି ମୋର ସେହି ପ୍ରେମିକାକୁ ବ୍ୟଥିତ କରୁଅଛି ।

ଏଠାରେ ବିଦ୍ୟୁତ୍‌ବଳୟରେ ଜଂଜୀର, ବକପନ୍ତିରେ ମାଳାର ଆରୋପ ଶାବ୍ଦ । କିନ୍ତୁ ମେଘରେ ହସ୍ତୀର ଆରୋପ ଆର୍ଥ ଅଟେ । ତାହାର ଉଲ୍ଲେଖ ହୋଇନାହିଁ । ଗୋଟିଏ ଅଂଶରେ ଆରୋପ ଆର୍ଥ ହେଲେ ଏକଦେଶବିବର୍ତ୍ତୀ ରୂପକ ହୁଏ ।

ଯଥା— ବାଲ୍ମୀକି ଆଶ୍ରମ ରାଜ୍ୟରେ ଶାନ୍ତ ରାଜତ୍ୱ କରେ ।
କୋଷ ଧୂର୍ଣ୍ଣି କରି ପାଦପ ଦଳ ସ୍ୱଚ୍ଛାୟା କରେ । (ତପସ୍ୱିନୀ)

ଏଠାରେ ଆଶ୍ରମରେ ରାଜତ୍ୱ, ଛାୟାରେ କରତ୍ୱ ଆରୋପିତ ଶାବ୍ଦ । କିନ୍ତୁ ଶାନ୍ତରେ ରାଜ୍ଞୀତ୍ୱ ବା ପାଦପରେ ପ୍ରଜାତ୍ୱ ଆରୋପିତ ହୋଇନାହିଁ । ଏହା ଆର୍ଥ ହେତୁ ଏକ ଦେଶ ବିବର୍ତ୍ତୀ ।

୨୫) ଦୀପକ— ଆଦି, ମଧ୍ୟ ଓ ଅନ୍ତରେ ରହିବା ହେତୁ ଦୀପକ ତିନି ପ୍ରକାର ଅଟେ । ଗୋଟିଏ ଧର୍ମ (ବୈଶିଷ୍ଟ୍ୟ) ର ତ୍ରିବିଧ ସ୍ଥିତି ହେତୁ ଏହା ତ୍ରିବିଧ ରୂପେ ଗୃହୀତ ।

ଅମୂନ କୁର୍ବତେଽନ୍ୱର୍ଥାମସ୍ୟାଖ୍ୟାମର୍ଥଦୀପନାତ୍ ।
ତ୍ରିଭିର୍ନିଦର୍ଶନୈଶ୍ଚେଦଂ ତ୍ରିଧା ନିର୍ଦ୍ଦିଶ୍ୟତେ ଯଥା ॥ ୧୭ ॥
ମଦୋ ଜନୟତି ପ୍ରୀତିଂ ସାଽନଙ୍ଗ ମାନଭଙ୍ଗୁରମ୍ ।
ସ ପ୍ରିୟା ସଙ୍ଗମୋତ୍କଣ୍ଠାଂ ସାସହ୍ୟାଂ ମନସଃ ଶୁଚମ୍ ॥ ୧୭ ॥
ମାଲମାଲ୍ୟଂଶୁକଭୃତଃ ସ୍ତ୍ରିୟୋଽଲଂକୁରୁତେ ମଧୁଃ ।
ହାରୀତଶୁକବାଚଶ୍ଚ ଭୂଧରାଣାମୁପତ୍ୟକାଃ ॥ ୧୮ ॥

---

ଭାମହ ଦୀପକ ଅଲଂକାରର ଲକ୍ଷଣ ଦେଇ ନାହାନ୍ତି । କେବଳ ଭେଦର ନିର୍ଦ୍ଦେଶ ରହିଛି । ଯଥା - ଆଦି ଦୀପକ, ମଧ୍ୟ ଦୀପକ ଓ ଅନ୍ତ ଦୀପକ ।

ପରବର୍ତ୍ତୀ କାଳରେ ଦୀପକର ଲକ୍ଷଣ ବଦଳିଛି ।

ଭାମହଙ୍କ ଦୀପକ କିମ୍ବା ଦୀପକ ମାନ ।

୧୭) ଏ ସମସ୍ତ ଅର୍ଥର ଦୀପକ [ପ୍ରକାଶକ] ହେତୁ ଏମାନଙ୍କର ନାମର ସାର୍ଥକତା ରହିଛି । ତିନି ପ୍ରକାର ଉଦାହରଣ ମାଧ୍ୟମରେ ଏହି ତ୍ରିବିଧ ଦୀପକର ସ୍ୱରୂପ ନିର୍ଦ୍ଦେଶ କରା ଯାଉଛି । ଯଥା—

୧୭) **ଆଦି ଦୀପକର ଉଦାହରଣ—** ମଦ ପ୍ରୀତିକୁ ଉତ୍ପନ୍ନ କରେ, ସେହି ପ୍ରୀତି ମାନ-ଭଙ୍ଗକ ସ୍ତ୍ରୀ କାମକୁ, ସେହି କାମ ପ୍ରିୟା ସହିତ ମିଳନ ଉତ୍କଣ୍ଠାକୁ ଏବଂ ସେହି ଉତ୍କଣ୍ଠା ମନରେ ଅସହ୍ୟ ବେଦନା ଉତ୍ପନ୍ନ କରେ ।

ଏଠାରେ ଜନୟତି (ଜାତକରିବା) କିମ୍ବା ପ୍ରଥମ ଚରଣ (ଆଦି) ରେ ରହି ଶେଷ ତିନି ଚରଣର ଭାବନାକୁ ଦୀପନ (ପ୍ରକାଶନ) କରିବା ହେତୁ ଏହା ଆଦି ଦୀପକ ।

ଅନୁରୂପ - ଯୁବତୀରୁ ଜାତ ଲୋଭ, ଲୋଭୁଁ ପ୍ରୀତି ଲୋଗ,
ପ୍ରୀତିରୁ ସୁରତି ସାଧ, ସୁରତିରୁ ସୁଖ ।

ଏଠାରେ ସେହି ଜାତ ହେବା କିମ୍ବାଟି ଆଦ୍ୟରେ ରହି ସମସ୍ତ ଭାବନାକୁ ଉଦ୍ଦୀପ୍ତ କରୁଅଛି ।

୧୮) **ମଧ୍ୟ ଦୀପକ—** ବସନ୍ତ ଋତୁ ମାଳା ଏବଂ ସୂକ୍ଷ୍ମ ବସ୍ତ୍ର ପରିହିତା ରମଣୀଙ୍କୁ, ହାରୀତ ଓ ଶୁକଙ୍କ ବାଣୀକୁ ତଥା ପର୍ବତର ଉପତ୍ୟକାଗୁଡ଼ିକୁ ଅଳଂକୃତ କରୁଅଛି ।

ଅଲଂକୁରୁତେ (ଶୋଭାବର୍ଦ୍ଧନ କରେ) କିମ୍ବା ପଦଟି ଶ୍ଳୋକର ମଧ୍ୟରେ ରହି ସ୍ତ୍ରୀ, ବାଣୀ ଓ ଉପତ୍ୟକା ସହିତ ଅନ୍ୱିତ ହେଉଛି । ତେଣୁ ଏହା ମଧ୍ୟ ଦୀପକ ।

ତୀଷ୍ମମଷ୍ଟମରଣ୍ୟାନୀଃ ସରିତଃ ଶୁଷ୍କଦମ୍ଭସଃ ।
ପ୍ରବାସିନାଂଚ ଚେତାଂସି ଶୁଚରନ୍ତଂ ନମୀଷତ ॥ ୨୯ ॥
ବସ୍ତୁଭେଦୋପମାନେନ ଦେଶକାଳକ୍ରିୟାଦିଭିଃ ।
ଉପମେୟସ୍ୟ ଯତ୍ସାମ୍ୟଂ ଗୁଣଲେଶେନ ସୋପମା ॥ ୩୦ ॥

---

ଅନୁରୂପ ଯଥା - ବସ୍ତ୍ରଶୋଭା ଗୁଣ, ଦେଖ ଦେଖ ପଦ୍ମାଳୟା। × × × ×
ଦେବୀଙ୍କ ପ୍ରସାଦେ ମେଘେ ଗକେ ଇନ୍ଦ୍ରଧନୁ, ପୁଷ୍ପମାଳ ବନେ,
କଗତ ଜୀବନ ଯଷ୍ଟି ଶସ୍ୟ ଶସ୍ୟ କ୍ଷେତ୍ରେ । [ମନ୍ଦାକ୍ରାନ୍ତା]

ଗକେ କ୍ରିୟା ପଦଟି ମଧ୍ୟରେ ରହି ସମସ୍ତ ଭାବନାକୁ ଦୀପନ କରୁଅଛି । ତେଣୁ ମଧ୍ୟ ଦୀପକ ।

୨୯] ଅନ୍ତ ଦୀପକ— ଆଷାଢ ମାସ ହିଂସ୍ରାଣ ଝଂକୃତ ଜଙ୍ଗଲକୁ, ଶୁଷ୍କ ଜଳ ବିଶିଷ୍ଟ ନଦୀକୁ ଏବଂ ପ୍ରବାସୀଙ୍କ ହୃଦୟକୁ ସମାପ୍ତ କରିଦେବାକୁ ଗ୍ଭହେଁ ।

ଏଠାରେ ନମୀଷତ [ନେତୁମ୍ ଇଚ୍ଛତ ବା ନେବାକୁ ଗ୍ଭହେଁ] କ୍ରିୟା ପଦଟି ଶ୍ଳୋକ ଶେଷରେ ରହି ଅରଣ୍ୟାନୀଃ, ସରିତଃ, ଚେତାଂସି ଏହି ତିନ ଗୋଟି ଶବ୍ଦ ସହିତ ଅନ୍ୱିତ ହେଉଅଛି । ତେଣୁ ଏହା ଅନ୍ତ ଦୀପକ । ଅନୁରୂପ - ଅଭିସାରିକା ଦୀପ ଫଣିମଣି କଳାପ ତେଜିଲେ ଶ୍ୱାସ ଯେ, [ଲ-ବ. ୪୭-୨୩] ଯଥା ହେବାରୁ ଅଭିସାରିକା ରମଣୀ, ଦୀପ ଓ ସର୍ପଙ୍କ ମଣି ସମୂହ ଶ୍ୱାସ ତେଜିଲେ । ଏଠାରେ ଶ୍ୱାସ, ନିଃଶ୍ୱାସ, ଶିଖା ଓ ଦୀପ୍ତି ଅର୍ଥରେ ପ୍ରଯୁକ୍ତ । ତେଜିବା କ୍ରିୟାଟି ଶେଷରେ ରହି ସମସ୍ତ ପଦ ସହିତ ଅନ୍ୱିତ ହୁଏ । ତେଣୁ ଅନ୍ତ ଦୀପକ । ପରବର୍ତ୍ତୀ କାଳରେ ରୁଦ୍ରଟ ଭାମହଙ୍କ ଅନୁସରଣ କରିଛନ୍ତି । ଲକ୍ଷଣ ଯଥା - ଆଦୌ ମଧ୍ୟେଽନ୍ତେ ବାକ୍ୟେ ତତ୍ ସ୍ଥିତଂ ଦୀପମୁତ । ଦର୍ପଣ କାରଙ୍କ ଲକ୍ଷଣ ଏହାଠାରୁ ଭିନ୍ନ ଯଥା —

ଅପ୍ରସ୍ତୁତ ପ୍ରସ୍ତୁତୟୋର୍ଦୀପକଂ ତୁ ନିଗଦ୍ୟ ତେ ।
ଅଥକାରଣମେକଂ ସ୍ୟାଦନେକାସୁ କ୍ରିୟାସୁ ଚେତ୍ ।

ଅର୍ଥାତ୍ ପ୍ରାକରଣିକ ଓ ଅପ୍ରାକରଣିକ ଏକ ଧର୍ମ ସହିତ ସମ୍ବନ୍ଧିତ ହେଲେ ଦୀପକ ଅଳଂକାର ହୁଏ । ଅନେକ କ୍ରିୟାର ଏକ କାରଣ ହେଲେ ଦୀପକ ହୁଏ । ଅତଏବ ଦୀପକ ଦ୍ୱିବିଧ ।

୩୦] ଉପମା ଲକ୍ଷଣ— ଦେଶ, କାଳ, କ୍ରିୟା ଆଦିରୁ ଭିନ୍ନ ଉପମାନ ସହିତ ଆଂଶିକ ଗୁଣ ବା କମ୍ ଗୁଣ ବିଶିଷ୍ଟ ଉପମେୟର ସାମ୍ୟ ଉପମା ଅଳଂକାର ଅଟେ ।

ଯଥେବବନ୍ତେକୌ ସାଦୃଶ୍ୟମାହୁର୍ବ୍ୟତିରେକଣୋଃ ।
ଦୂର୍ବାକାଣ୍ଡମିବ ଶ୍ୟାମଂ ତନ୍ୱୀ ଶ୍ୟାମାଲତା ଯଥା ॥ ୩୧ ॥
ବିନା ଯଥେବଶବ୍ଦାଭ୍ୟାଂ ସମାସାଭିହିତା ପର ।
ଯଥା କମଳପତ୍ରାକ୍ଷୀ, ଶଶାଙ୍କବଦନେତି ଚ ॥ ୩୨ ॥

---

ଦୁଇଟି ଭିନ୍ନ ବସ୍ତୁ [ଉପମେୟ ଓ ଉପମାନ] ରେ ସାମ୍ୟ ପ୍ରଦର୍ଶନ ଉପମା । ଏହି ଭିନ୍ନତା - ଦେଶ, କାଳ, କ୍ରିୟା, ସ୍ୱରୂପ, ସ୍ୱଭାବ ଆଦି ଦ୍ୱାରା ସମ୍ଭବ । ଦୁଇଟି ବସ୍ତୁ ସର୍ବତୋଭାବେ ସମାନ ହେବା ଅସମ୍ଭବ । ତେଣୁ ଉପମାନ ଓ ଉପମେୟରେ ସାମାନ୍ୟ ଗୁଣ ସାମ୍ୟ ରହିଲେ ଉପମା ବାଧିତ ହେବ ନାହିଁ । ଚନ୍ଦ୍ର ଓ ମୁଖ ବସ୍ତୁ ଭାବରେ ଭିନ୍ନ । କେବଳ ଆହ୍ଲାଦକତ୍ୱ ଓ ପ୍ରକାଶକତ୍ୱ ଆଧାରରେ ଉପମା ସ୍ୱୀକୃତ ।

୩୧] ଉପମାଭେଦ— ଯଥା ଓ ଇବ ଶବ୍ଦ ଦୁଇଟି ଭିନ୍ନ ବସ୍ତୁରେ ସାଦୃଶ୍ୟ ସୃଷ୍ଟି କରନ୍ତି । ଯଥା - ଏହି କ୍ଷୀଣାଙ୍ଗୀ ରମଣୀଟି ଦୂର୍ବାକାଣ୍ଡ ପରି ଶ୍ୟାମଳା ଓ ଶ୍ୟାମଳତା ପରି ଦୁର୍ବଳା ।

ବ୍ୟତିରେକ = ପରସ୍ପର ଭିନ୍ନ, ଯଥା, ଇବ ଆଦି ଶବ୍ଦ ସାଦୃଶ୍ୟ ପ୍ରତିପାଦକ ହେତୁ ସେ ସମସ୍ତ ସାଦୃଶ୍ୟ ବାଚକ ଅଟନ୍ତି । ଏଠାରେ ତନ୍ୱୀ ଉପମେୟ, ଦୂର୍ବାକାଣ୍ଡ ଓ ଶ୍ୟାମାଲତା ଉପମାନ । ସାଧାରଣ ଧର୍ମ ଶ୍ୟାମଳତା ଓ କ୍ଷୀଣତା, ଉପମା ବାଚକ ଇବ, ଯଥା ଶବ୍ଦ ସାହାଯ୍ୟ ସୃଷ୍ଟି କରନ୍ତି । ଯଥା ବା - କଛୁ ବୁଦ୍ଧି ନ ଦିଶଇ, ଅନ୍ଧକାର ପ୍ରାୟେ ଚିନ୍ତା ନରତେ ଛାସଇ । [ପ୍ରେ. ସୁ. ୧୪-୨୮] ସଂସ୍କୃତ ଭାଷାରେ ଯଥା, ଇବ ସଦୃଶ ଓଡ଼ିଆ ଭାଷାରେ ଯେସନ, ତେସନ, ପରି, ପ୍ରାୟ, ଯଥା, ଇବ, ସମାନ ଆଦି ଶବ୍ଦ ବ୍ୟବହୃତ ।

୩୨] ସ୍ଥଳ ବିଶେଷରେ ଯଥା, ଇବ ଆଦି ଉପମା ବାଚକ ଶବ୍ଦ ନଥାଇ ସମାସ ଦ୍ୱାରା ଉପମା ଅଭିବ୍ୟକ୍ତ ହୋଇଯାଏ ।

ଯଥା - କମଳପତ୍ରାକ୍ଷୀ = କମଳ ପତ୍ର ପରି ଆକ୍ଷି ଯାହାର ସେ ଚନ୍ଦ୍ରମୁଖୀ- ଚନ୍ଦ୍ର ପରି ମୁଖ ଯାହାର ସେ ସମାସରେ ସାଦୃଶ୍ୟ ଅର୍ଥ ଅନ୍ତର୍ନିହିତ ।

ଯଥା ବା - ପଦ୍ମିନୀ ପଦ୍ମବାସୀ ସଖୀ, ପଦ୍ମଜନ୍ମନା, ପଦ୍ମମୁଖୀ,
ପଦ୍ମକର ପଲ୍ଲବ ପଦ୍ମପତ୍ର ଉଦର ପଦ୍ମକୋଷ ଉରଜେ ଯୋଷି [ଲ-ବ.୨୨-୨୨]
ଆଗ୍ନେୟ ଦଣ୍ଡୀ ମଧ୍ୟ ଉପମାର ରୂପକୁ ଏହି ସ୍ୱୀକୃତ ଦେଇଛନ୍ତି ।
ସମାସସ୍ତ ବହୁବ୍ରୀହିଃ ଶଶାଙ୍କବଦନାଦିଷୁ । [ହରିଦ୍ରାଦ-ଦର୍ପଣ-ଲକ୍ଷ୍ମୀଟୀକା]

ବତନାପି କ୍ରିୟାସାମ୍ୟଂ ତଦ୍ୱଦେବାଭିଧୀୟତେ ।
ଦ୍ୱିଜାତବଦଧୀତେଽସୌ ଗୁରୁବଚ୍ଚାନୁଶାସ୍ତି ଚ ॥ ୩୩ ॥

୩୩ ] ଯେଉଁଠାରେ 'ବତ' ପ୍ରତ୍ୟୟ ଦ୍ୱାରା କ୍ରିୟା ସାମ୍ୟ ପ୍ରକାଶିତ ହୋଇ ଉପମା ବୋଧ କରାଏ । ଯଥା - ଏହି ବ୍ୟକ୍ତି ଦ୍ୱିଜାତ [ବ୍ରାହ୍ମଣ] ବତ୍ ଅଧ୍ୟୟନ କରେ ଓ ଆମକୁ ଗୁରୁବତ୍ [ଗୁରୁଙ୍କପରି] ଶାସନ କରେ ।

ବତ [ବତ୍] ଏହି ତଦ୍ଧିତ ପ୍ରତ୍ୟୟ ତୁଲ୍ୟ ଅର୍ଥରେ ବ୍ୟବହୃତ । ପାଣିନିଙ୍କ ଅଷ୍ଟାଧ୍ୟାୟୀ ସୂତ୍ର – "ତେନ ତୁଲ୍ୟଂ କ୍ରିୟା ଚେଦ୍‌ବତିଃ" [୫-୧-୧୧୫] ଅନୁସାରେ କ୍ରିୟା ପ୍ରୟୋଗ କରାଗଲେ ତୁଲ୍ୟ ଅର୍ଥରେ 'ବତ' ପ୍ରତ୍ୟୟ ହୁଏ । ଯଥା - ଦ୍ୱିଜାତେନ ତୁଲ୍ୟମ୍ ଅଧୀତେ ବଦଳରେ ଦ୍ୱିଜାତିବତ୍ ଅଧୀତେ କୁହାଯାଇପାରେ । ଏଠାରେ ବତ ତୁଲ୍ୟ ଅର୍ଥକ ଭାବେ ପ୍ରଯୁକ୍ତ । ପାଣିନିଙ୍କ ଅନ୍ୟଏକ ସୂତ୍ର ଅଛି- ତତ୍ର ତସ୍ୟେବ [୫-୧-୧୧୬] ଏଠାରେ ତତ୍ର ସପ୍ତମ୍ୟର୍ଥକ ଓ ତସ୍ୟ ଷଷ୍ଠ୍ୟର୍ଥକ । ତେଣୁ ଏ ସୂତ୍ର ଅନୁଯାୟୀ ସପ୍ତମ୍ୟନ୍ତ ବା ଷଷ୍ଠ୍ୟନ୍ତ ଶବ୍ଦ ସହିତ ଇବ ପ୍ରଯୁକ୍ତ ହେବାକୁ ଥିଲେ 'ବତ' ପ୍ରତ୍ୟୟ ଲଗାଇ ସେହି ଅର୍ଥ କରାଯାଇ ପାରେ । ଯଥା - ସ ଗୃହେ ଇବ [ଗୃହବତ୍] ବନେ ନିବସତି । [ସେ ଘରେ ପରି ବନରେ ରହେ] ପୁଣି – ରାମସ୍ୟ ଇବ (ରାମବତ୍) କୃଷ୍ଣସ୍ୟ ବ୍ୟବହାରଃ [ରାମ ପରି କୃଷ୍ଣର ବ୍ୟବହାର] । ଏଥିରୁ ସ୍ପଷ୍ଟ ହୁଏ । ତୁଲ୍ୟ ବା ଇବ ଶବ୍ଦ ବଦଳରେ ବତ ପ୍ରତ୍ୟୟ ପ୍ରଯୁକ୍ତ ହେଲେ ମଧ୍ୟ ଉପମା ହୁଏ । ତେଣୁ ଉପମା ତିନି ରୂପରେ ହୁଏ ।

୧- ଇବ, ଯଥା ଆଦି ସାଦୃଶ୍ୟ ବାଚକ ଶବ୍ଦର ସାକ୍ଷାତ୍ ପ୍ରୟୋଗରେ,
୨- ସାଦୃଶ୍ୟବାଚକ ଶବ୍ଦ ଅଭାବରେ ସମାସ ଦ୍ୱାରା
୩- ତଦ୍ଧିତ 'ବତ' ପ୍ରତ୍ୟୟ ଯୋଗରେ ।

ଯଥା ନିମ୍ନୋକ୍ତ ପଂକ୍ତିରେ —

ତା ତୀରେ ଦେଖିଲି ମହାତେଜ ପୁଞ୍ଜ ତପୋଧନ ଧ୍ୟାନେ ରତ ।
ନିଭୃତେ ନିଷ୍ଚଳେ ଆସୀନ ନିବାତେ ନିଷ୍କମ୍ପ ପ୍ରଦୀପବତ । (ଯଯାତି)
ବତ [ବତ୍] ପ୍ରତ୍ୟୟ ଦ୍ୱାରା ଔପମିକ ସୌନ୍ଦର୍ଯ୍ୟ ଏଠାରେ ପ୍ରକାଶିତ ।

ପ୍ରାୟ ସମସ୍ତ ଆଚାର୍ଯ୍ୟ ନିଜ ନିଜ ଦୃଷ୍ଟି କୋଣରୁ ଉପମା ଅଳଂକାରର ଲକ୍ଷଣ ନିର୍ଦ୍ଦେଶ କରିଛନ୍ତି । ଉପମାନ, ଉପମେୟ, ସାଧାରଣ ଧର୍ମ ଓ ଉପମା ବାଚକ ଶବ୍ଦ ଭିନ୍ନ ଭାବରେ ପ୍ରକାଶିତ । ସେ ମଧ୍ୟରୁ ମୁଖ୍ୟ କେତେକ ଲକ୍ଷଣ -

ଯଥା - ନାଟ୍ୟଶାସ୍ତ୍ର - ଯତ୍ କିଂଚିତ୍ କାବ୍ୟବନ୍ଧେଷୁ ସାଦୃଶ୍ୟେନୋପମୀୟତେ ।
ଉପମା ନାମ ସା ଜ୍ଞେୟା ଗୁଣାକୃତ ସମାଶ୍ରୟା ।

ସମାନବସ୍ତୁନ୍ୟାସେନ ପ୍ରତିବସ୍ତୂପମୋଚ୍ୟତେ ।
ଯଥେବାନଭିଧାନେଽପି ଗୁଣସାମ୍ୟ ପ୍ରତୀତିତଃ ॥ ୩୪ ॥
ସାଧୁ ସାଧାରଣତ୍ୱାଦି ଗୁଣୋଽତ୍ର ବ୍ୟତିରିଚ୍ୟତେ ।
ସ ସମ୍ୟମାପାଦୟତ୍ୟେବ ବିରୋଧେଽପି ତୟୋର୍ଯଥା ॥ ୩୫ ॥
କିୟନ୍ତଃ ସନ୍ତି ଗୁଣିନଃ ସାଧୁସାଧାରଣଶ୍ରିୟଃ ।
ସ୍ୱାଦୁପାକଫଳାନମ୍ରାଃ କିୟନ୍ତୋ ବାଧ୍ୱଶାଖିନଃ ॥ ୩୬ ॥

---

ଉଦ୍ଭଟ - ଯତ୍ରୈକେ ଦ୍ୱାଭି ସାଧର୍ମ୍ୟମୁପମାନୋପମେୟୟୋଃ ।
ମିଥୋ ବିଭିନ୍ନ କାଳାଦି ଶବ୍ଦୟୋରୁପମା ତୁ ତତ୍ ।
ଦର୍ପଣ - ସାମ୍ୟଂ ବାଚ୍ୟମବୈଧର୍ମ୍ୟଂ ବାକ୍ୟୈକ୍ୟମୁପମା ଦ୍ୱୟୋଃ ।
ଚନ୍ଦ୍ରାଲୋକ - ଉପମା ଯତ୍ର ସାଦୃଶ୍ୟ ଲକ୍ଷ୍ମୀରୁଲ୍ଲସତି ଦ୍ୱୟୋଃ । ଇତ୍ୟାଦି ।

୩୪] **ପ୍ରତିବସ୍ତୂପମା**— ଯଥା, ଇବ ଆଦି ଶବ୍ଦ ଉକ୍ତ ନ ହୋଇ ସୁଦ୍ଧା ସମାନ ବସ୍ତୁର ବିନ୍ୟାସ [କଥନ] ଗୁଣ ସାମ୍ୟ ପ୍ରତୀତି ଆଧାରରେ ପ୍ରତିବସ୍ତୂପମା ଅଳଂକାର ହୁଏ ।

ପରବର୍ତ୍ତୀ ଆଳଂକାରିକ ପ୍ରତିବସ୍ତୂପମାକୁ ସ୍ୱତନ୍ତ୍ର ଅଳଂକାର ଭାବେ ଗ୍ରହଣ କରିଛନ୍ତି । ଭାମହ କିନ୍ତୁ ଏହାକୁ ଉପମାର ଭେଦ ଭାବେ ପ୍ରତିପାଦନ କରିଛନ୍ତି । ବସ୍ତୁ = ବାକ୍ୟ, ପ୍ରତିବସ୍ତୁ = ପ୍ରତିବାକ୍ୟ, ଉପମା = ସାଦୃଶ୍ୟ, ଉପମାରେ ଗୋଟିଏ ବାକ୍ୟ ରହେ, ପ୍ରତିବସ୍ତୂପମାରେ ଦୁଇଟି ବାକ୍ୟ ରହେ । ଦୁଇଟି ବାକ୍ୟରେ ସମାନ ବସ୍ତୁର ନିର୍ଦ୍ଦେଶ ରହିବା ହେତୁ ସାଦୃଶ୍ୟ ପ୍ରତୀତ ହୁଏ । କିନ୍ତୁ ସାଦୃଶ୍ୟ ବାଚକ ଶବ୍ଦ ତାତ୍ପର୍ଯ୍ୟ - ସାଦୃଶ୍ୟ ବାଚ୍ୟ ନ ହୋଇ ବ୍ୟଙ୍ଗ୍ୟ ହୁଏ ।

୩୫] (ପରବର୍ତ୍ତୀ ଉଦାହରଣରେ) ସାଧୁ, ସାଧାରଣତ୍ୱାଦି ପ୍ରଦର୍ଶିତ ଗୁଣ ଅନ୍ୟ ବାକ୍ୟରେ ପ୍ରଦର୍ଶିତ ଗୁଣ ଠାରୁ ଭିନ୍ନ ହେଲେ ମଧ୍ୟ ସାମ୍ୟପ୍ରତିପାଦନ କରୁଥିବା ହେତୁ ପ୍ରତିବସ୍ତୂପମା ଅଟେ ।

୩୬] ଉଦାହରଣ— ନିଜ ସମ୍ପତ୍ତିକୁ ଅନ୍ୟ ସତ୍ ପୁରୁଷଦ୍ୱାରା ଉପଭୋଗ କରିବା ଭଳି କେତେ ବା ଗୁଣୀ ବ୍ୟକ୍ତି ଅଛନ୍ତି ? ଅଥବା କେତେ ବା ମାର୍ଗସ୍ଥିତ ବୃକ୍ଷ ମଧୁର ପକ୍ୱ ଫଳରେ ନମ୍ର ହୋଇ ଅଛନ୍ତି ।

ଏହି ଉଦାହରଣରେ ଗୁଣୀ ଉପମେୟ ଓ ବୃକ୍ଷ ଉପମାନ । ଯଥା, ଇବ ଆଦି ସାଦୃଶ୍ୟ ବାଚକ ଶବ୍ଦ ନାହିଁ । ଉପମେୟର ଧର୍ମ ସାଧୁ ସାଧାରଣ ଶ୍ରୀତ୍ୱ [ସଜ୍ଜନଙ୍କ ଦ୍ୱାରା ସମ୍ପତ୍ତିର ଉପଭୋଗ] ଉପମାନର ଧର୍ମ ପକ୍ୱ ଫଳ ନମ୍ରତ୍ୱ(ସ୍ୱାଦୁଯୁକ୍ତ । ପାଚିଲା ଫଳ ନଇଁ ଯାଇଥିବା) । ଏହି ଦୁଇଟି ଧର୍ମର ପାର୍ଥକ୍ୟ ସ୍ପଷ୍ଟ । କିନ୍ତୁ 'ଅନ୍ୟ ପାଇଁ ତ୍ୟାଗର ବିରଳତ

ଯଦୁକ୍ତଂ ତ୍ରିପ୍ରକାରତ୍ୱଂ ତସ୍ୟାଃ କୈଶ୍ଚିନ୍ମହାତ୍ମଭିଃ ।
ନିନ୍ଦାପ୍ରଶଂସାଚିଖ୍ୟାସାଭେଦାଦତ୍ରାଭିଧୀୟତେ ॥ ୩୭ ॥

ସାମାନ୍ୟଗୁଣ ନିର୍ଦ୍ଦେଶାତ୍ତ୍ରୟମପ୍ୟୁଦିତଂ ନନୁ ।
ମାଲୋପମାଦିଃ ସର୍ବୋଽପି ନ ଜ୍ୟାୟାନ୍ ବିସ୍ତରୋ ମୁଧା ॥ ୩୮ ॥

---

ପ୍ରତୀତ ହୋଇ ପରସ୍ପର ଭିନ୍ନ ବାକ୍ୟରେ ସାଦୃଶ୍ୟ ସ୍ଥାପନ କରେ । ଅତଏବ ପ୍ରତିବସ୍ତୂପମା ଅଲଂକାର । ଦର୍ପଣକାର ଏହାକୁ ସ୍ପଷ୍ଟ ଶବ୍ଦରେ ବ୍ୟକ୍ତ କରିଛନ୍ତି ।

ପ୍ରତିବସ୍ତୂପମା ସା ସ୍ୟାତ୍ ବାକ୍ୟୟୋର୍ଗମ୍ୟ ସାମ୍ୟୟୋଃ ।
ଏକୋଽପି ଧର୍ମ ସାମାନ୍ୟୋ ଯତ୍ର ନିର୍ଦ୍ଦିଶ୍ୟତେ ପୃଥକ୍ ।

ଅନୁରୂପ ଉଦାହରଣ- ଭୂଲା ଉଡ଼ିଲ ତେଜି ଶାଳ୍ମଳୀ ତରୁ ।
କୃପଣଧନ ଭାଳେ ଉଡ଼େ ଜାଣରୁ । (ଉପେନ୍ଦ୍ର ଭଞ୍ଜ)

ଯେପରି କାଳେ କୃପଣଧନ ଶୀଘ୍ର ଉଡ଼େ, ସେହିପରି ଭୂଲା ଶାଳ୍ମଳୀ ତରୁରୁ ଉଡ଼ିଲା । ଉଡ଼ିବା ଧର୍ମ ଦୁଇଟି ବାକ୍ୟରେ ପୃଥକ୍ ଭାବେ ନିର୍ଦ୍ଦିଷ୍ଟ ହୋଇଥିଲେ ମଧ୍ୟ ନଷ୍ଟ ହେବା ଧର୍ମଟି ପ୍ରତୀତ ହୋଇ ପରସ୍ପର ଭିନ୍ନ ବାକ୍ୟରେ ସାଦୃଶ୍ୟ ସ୍ଥାପନ କରେ । ଅତଏବ ପ୍ରତିବସ୍ତୂପମା ।

୩୭, ୩୮) ଉପମାର ଅନ୍ୟ ଉଦାହରଣ ଖଣ୍ଡନ— କେତେକ ଆଚାର୍ଯ୍ୟ ଉପମାର ନିନ୍ଦା, ପ୍ରଶଂସା ଓ ଆଚିଖ୍ୟାସା (କହିବା ଇଚ୍ଛା) ଭେଦରେ ତିନିଗୋଟି ବର୍ଗ ସ୍ୱୀକାର କରିଛନ୍ତି । ସେ ଏସବୁଠାରେ ଏଠାରେ କୁହାଯାଉଥିବା ସେହି ସାମାନ୍ୟ ଗୁଣର ନିର୍ଦ୍ଦେଶରେ ସେହି ତିନି ପ୍ରକାର ଭେଦ ଅନ୍ତର୍ଭୁକ୍ତ । ମାଲୋପମା ଆଦି ଅନ୍ୟାନ୍ୟ ଭେଦ ମଧ୍ୟ ଯୁକ୍ତି ନୁହେ । ତେଣୁ ତାହାର ବିସ୍ତାର ବ୍ୟର୍ଥ ଅଟେ ।

ଭାମହଙ୍କ ମତରେ ବର୍ଗୀକରଣର ଉପଯୋଗିତା ବୈଶିଷ୍ଟ୍ୟ ଆଧାରରେ ହେବା ଉଚିତ । ତେଣୁ ନିନ୍ଦା, ପ୍ରଶଂସା, ଆଚିଖ୍ୟାସା, ମାଲୋପମା, ରସନୋପମା ଆଦି ଉପମାର ବର୍ଗୀକରଣ ବ୍ୟର୍ଥ ଅଟେ । କିନ୍ତୁ ଭାମହଙ୍କ ପରେ ଦଣ୍ଡୀ ନିନ୍ଦା, ପ୍ରଶଂସା, ଆଚିଖ୍ୟାସା ଆଦିଭେଦ ସ୍ୱୀକାର କରିଛନ୍ତି ଓ ପରବର୍ତ୍ତୀ ପର୍ଯ୍ୟାୟରେ ଉପମାର ସମସ୍ତ ବର୍ଗ ବହୁସଂଖ୍ୟାରେ ପ୍ରଦର୍ଶିତ ହୋଇଛି । ନମୁନା ସ୍ୱରୂପ—

ନିନ୍ଦୋପମା - ପଦ୍ମଂ ବହୁରଜଶ୍ଚନ୍ଦ୍ରଃ କ୍ଷୟୀ ତାଭ୍ୟାଂ ତବାନନମ୍ ।
ସମାନମପି ସୋତ୍ସେକମିତି ନିନ୍ଦୋପମା ସ୍ମୃତା । (କାବ୍ୟାଦର୍ଶ)

ପଦ୍ମରେ ବହୁତ ଧୂଳି [ପରାଗ] ଅଛି । ଚନ୍ଦ୍ର କୃଷ୍ଣ ପକ୍ଷରେ କ୍ଷୟଶୀଳ । ସେହି ଦୁଇଟି ସହିତ ତୁଳିତ ତୁମର ମୁଖରେ ଗର୍ବ ! ଏହା ନିନ୍ଦୋପମା ।

ହୀନତାଽସମ୍ଭବୋ ଲିଙ୍ଗବଚ୍ଚେ ଭେଦୋ ବିପର୍ଯ୍ୟୟଃ ।
ଉପମାନାଧିକତ୍ୱଂ ଚ ତେନାସଦୃଶତାପି ଚ ॥ ୩୯ ॥

ତ ଏବ ଉପମାଦୋଷାଃ ସପ୍ତମେଧାବିନୋଦିତାଃ ।
ସୋଦାହରଣଲକ୍ଷ୍ମାଣୋ ବର୍ଣ୍ଣ୍ୟନ୍ତେଽତ୍ର ତ ତେ ପୃଥକ୍ ॥ ୪୦ ॥

ସ ମାରୁତାକମ୍ପିତପୀତବାସା
ବିଭ୍ରତ୍ସମୁଜ୍ଜ୍ୱଳଂ ଶଶିସମଂ ଶଶିଭାସମବ୍ଜମ୍ ।
ସଦୁ ଦ୍ରବାରଃ ପ୍ରଗୃହୀତଶାର୍ଙ୍ଗଃ
ସେନ୍ଦ୍ରାୟୁଧୋ ମେଘ ଇବାବଭାସେ ॥ ୪୧ ॥

ଶଙ୍ଖରୂପତ୍ରହାଦତ୍ର ଦର୍ଶିତଂ କଲ କାର୍ମୁକମ୍ ।
ବାସଃଶଂଖାନୁପାଦାନାଦ୍ଧୀନମିତ୍ୟଭିଧୀୟତେ । ॥ ୪୨ ॥

---

ପ୍ରଶଂସୋପମା - ବ୍ରହ୍ମଣୋଽପ୍ୟୁଦ୍ଭବଃ ପଦ୍ମଶ୍ଚନ୍ଦ୍ରଃ ଶମ୍ଭୁଶିରୋଧୃତଃ ।
ତୌ ତୁଲ୍ୟୌ ତ୍ୱନ୍ମୁଖେନେତି ସା ପ୍ରଶଂସୋପମୋଚ୍ୟତେ ।[କାବ୍ୟାଦର୍ଶ]

ବ୍ରହ୍ମାଙ୍କ ଉତ୍ପତ୍ତିସ୍ଥଳ ପଦ୍ମ, ଶଙ୍କରଙ୍କ ଶିରୋଭୂଷଣ ଚନ୍ଦ୍ର, ସେ ଦୁହେଁ ତୁମର ସହିତ ସମାନ ଅଟନ୍ତି । ଏହା ପ୍ରଶଂସୋପମା ।

ଆଚଖ୍ୟାସା-ଉପମା-ଚନ୍ଦ୍ରେଣ ତ୍ୱନ୍ମୁଖଂ ତୁଲ୍ୟମିତ୍ୟାଚଖ୍ୟାସୁ ମେ ମନଃ,
ସ ଗୁଣୋ ବାସ୍ତୁ ଦୋଷୋ ବେତ୍ୟାଚଖ୍ୟାସୋପମାଂ ବିଦୁଃ[କାବ୍ୟାଦର୍ଶ]

ମୋର ମନ କହେ - ତୁମର ମୁଖ ଚନ୍ଦ୍ରମା ପରି । ଏହା କହିବା ଉଚିତ କି ଅନୁଚିତ [ତାହା ମୁଁ ଜାଣେ ନାହିଁ] ଏହା ଆଚଖ୍ୟାସା ଉପମା ଅଟେ ।

୩୯-୪୦) **ଉପମା ଦୋଷ—** ମେଧାବୀ ନାମକ ଆଚାର୍ଯ୍ୟ ଉପମାର ସାତଗୋଟି ଦୋଷ କଥା କହିଛନ୍ତି ଯଥା - ହୀନତା, ଅସମ୍ଭବ, ଲିଙ୍ଗଭେଦ, ବଚନ ଭେଦ, ବିପର୍ଯ୍ୟୟ, ଉପମାନର ଆଧିକ୍ୟ ଓ ଉପମାନର ଅସାଦୃଶ୍ୟ ।

ସେ ସମସ୍ତ ଦୋଷର ଲକ୍ଷଣ ଓ ଉଦାହରଣ ପୃଥକ୍ ଭାବେ ଉପସ୍ଥାପନ କରାଯାଉଛି ।

୪୧) **ହୀନତା ଦୋଷ—** ବାୟୁ ଦ୍ୱାରା ଆନ୍ଦୋଳିତ ପୀତାମ୍ବର ପିନ୍ଧି, ଚନ୍ଦ୍ରମା ସଦୃଶ ଉଜ୍ଜ୍ୱଳ ବର୍ଣ୍ଣ ଶଂଖ ଧାରଣ କରି ଶାର୍ଙ୍ଗ ଧନୁର୍ଦ୍ଧାରୀ ଯଦୁବୀର କୃଷ୍ଣ ଇନ୍ଦ୍ରଧନୁ ଯୁକ୍ତ ମେଘ ପରି ଦୀପ୍ତ ଦେଖାଗଲେ । ଜଳଜାତ ହେତୁ ଶଂଖ ମଧ୍ୟ ଅବ୍ଜ ।

୪୨) **ଉଦାହରଣ—** ଉଲ୍ଲିଖିତ ପଦ୍ୟରେ ଶଙ୍ଖରୂପ ଦ୍ୱାରା ଶାର୍ଙ୍ଗ ଧନୁର ଓ ଚନ୍ଦ୍ର ଦ୍ୱାରା ଶଙ୍ଖର ତୁଳନା ହୋଇଗଲା । କିନ୍ତୁ ପୀତବାସର ଉପମା ଅଭାବରୁ ଏହା ଉପମା ହୀନତା ଦୋଷ ଯୁକ୍ତ ଅଟେ ।

ସର୍ବଂ ସର୍ବେଣ ସାରୂପ୍ୟଂ ନାସ୍ତି ଭାବସ୍ୟ କସ୍ୟଚିତ୍ ।
ଯଥୋପପତ୍ତି କୃତଭିସ୍ତୁପମାସୁ ପ୍ରଯୁଜ୍ୟତେ ॥ ୪୩ ॥
ଅଖଣ୍ଡମଣ୍ଡଳଃ କ୍ୱେନ୍ଦୁଃ କ୍ୱ କାନ୍ତାନନମଦ୍ୟୁତି ।
ଯତ୍କିଂଚିତ୍କାନ୍ତିସାମାନ୍ୟଚ୍ଛଶିନୈବୋପମୀୟତେ ॥ ୪୪ ॥
କିଂଚ କାବ୍ୟାନି ନେୟାନି ଲକ୍ଷଣେନ ମହାତ୍ମନାମ୍ ।
ଦୃଷ୍ଟଂ ବା ସର୍ବସାରୂପ୍ୟଂ ରାଜମିତ୍ରେ ଯଥୋଦିତମ୍ ॥ ୪୫ ॥

---

କୃଷ୍ଣ ମେଘ ପରି ଦେଖାଯାଉଥିଲେ । କୃଷ୍ଣ ଉପମେୟ ଓ ମେଘ ଉପମାନ । କୃଷ୍ଣଙ୍କ ପକ୍ଷରେ ଉପମେୟ ଭୂତ ତିନିଗୋଟି ବସ୍ତୁ ଉଲ୍ଲିଖିତ - ଯଥା - ପୀତାମ୍ବର, ଶଙ୍ଖ ଓ ଧନୁ । ଏହି ତିନିଗୋଟି ବସ୍ତୁର ଉପମାନ ମଧ୍ୟ ମେଘ ପକ୍ଷରେ ତିନିଗୋଟି ବସ୍ତୁ ହେବା ଉଚିତ । କିନ୍ତୁ କୃଷ୍ଣଙ୍କ ଶାର୍ଙ୍ଗଧନୁ ସହିତ ଇନ୍ଦ୍ର ଧନୁର ଓ ଶଙ୍ଖ ପାଇଁ ଚନ୍ଦ୍ରର ତୁଳନା ପ୍ରଦତ୍ତ । ପୀତାମ୍ବର ପାଇଁ ତୁଳିତ ଉପମା ନାହିଁ । ବିଦ୍ୟୁତ୍ ପ୍ରଦତ୍ତ ହୋଇଥିଲେ ଯଥାର୍ଥ ହୋଇଥାନ୍ତା । ତେଣୁ ଉପମା ହୀନ ଦୋଷରେ ଦୂଷିତ । "ଶଶି ଭାସମାନ୍ କଂ" ଶବ୍ଦରେ ଶଙ୍ଖ ପାଇଁ ଚନ୍ଦ୍ର ଉପମାନ ଥିବା ସତ୍ତ୍ୱେ ଏହି କାରିକାରେ "ଶଂଙ୍ଖାନୁଯାଦାନାନ୍ତ" ଅର୍ଥ ତ୍ରି ଶଙ୍ଖ ପାଇଁ ଉପମା ନାହିଁ, କାହିଁକି କୁହାଯାଇଛି ତାହା ଚିନ୍ତ୍ୟ ।)

ଅନୁରୂପ ଉଦାହରଣ

୪୩) ପୂର୍ଣ୍ଣ ସାଦୃଶ୍ୟ ଅସମ୍ଭବ— ଗୋଟିଏ ବସ୍ତୁ ଅନ୍ୟ କୌଣସି ବସ୍ତୁ ସହିତ ସର୍ବତୋଭାବେ ସମାନ ନୁହେ । ତଥାପି କବିମାନେ ଉପମାରେ ଯଥା ସମ୍ଭବ ଅନୁରୂପ ଶବ୍ଦ ପ୍ରୟୋଗ କରିଥାନ୍ତି ।

ପୂର୍ବୋକ୍ତ ହୀନତା ଦୋଷ ସମ୍ବନ୍ଧୀୟ ସନ୍ଦେହର ନିରାକରଣ ଏଥିରେ କରାଯାଇଛି । ଉପମା ପାଇଁ ଆଂଶିକ ଗୁଣ ସାମ୍ୟ ପର୍ଯ୍ୟାପ୍ତ ହେଲେ ମଧ୍ୟ ଯଦି ସମ୍ଭବ ହୁଏ, ତେବେ ପୂର୍ଣ୍ଣତା ଦିଗରେ କବିର ଚେଷ୍ଟା ରହିବା ଉଚିତ । ଯଥା ସମ୍ଭବ ତ୍ରୁଟି କମ୍ ହେଲେ ବିଦ୍ୱାନ୍ ପାଠକଙ୍କ ମନରେ ଉଦ୍‌ବେଗ ସୃଷ୍ଟି ହୁଏ ନାହିଁ । ଦଣ୍ଡୀ ଏ ସମ୍ବନ୍ଧରେ କହନ୍ତି - ଯତ୍ରୋଦ୍ୱେଗୋ ନଧୀମତାମ୍ (କାବ୍ୟାଦର୍ଶ) ସହୃଦୟ ପାଠକ ମନରେ ଉଦ୍‌ବେଗ ସୃଷ୍ଟି ନହେଲେ ଦୋଷ ଦୋଷ ନୁହେ ।

୪୪) ପୂର୍ବ କାରିକାର ସ୍ପଷ୍ଟୀକରଣ — ଉଦାହରଣ ସ୍ୱରୂପ - ସମ୍ପୂର୍ଣ୍ଣ କଳା ଯୁକ୍ତ ଚନ୍ଦ୍ରମା କେଉଁଠି ? ଦ୍ୟୁତିମାନ କାନ୍ତାର ମୁଖ ମଣ୍ଡଳ ବା କେଉଁଠି ? ଲେଶମାତ୍ର କାନ୍ତି ସାମାନ୍ୟ ଦେଖି ମୁଖକୁ ଚନ୍ଦ୍ର ସହିତ ତୁଳନା କରାଯାଏ ।

ସୂର୍ଯ୍ୟାଂଶୁସମ୍ମିଳିତ ଲୋଚନେଷୁ
ଦୀନେଷୁ ପଦ୍ମାନିଳନର୍ମଦେଷୁ ।
ସାଧ୍ୟଃ ସ୍ୱଗେହେଷ୍ୱିବ ଭର୍ତ୍ତୃହୀନାଃ ।
କେକା ବନେଶୁଃ ଶିଖିନାଂ ମୁଖେଷୁ ॥ ୪୭ ॥

---

୪୬। ମନ୍ଦ କବିଙ୍କ କାବ୍ୟକୁ ଲକ୍ଷଣ ଅନୁସାରେ ପରୀକ୍ଷା କରିବା ଆବଶ୍ୟକ । [କିଂତ ମନ୍ଦାତ୍ମନାଂ କାର୍ଯ୍ୟାଣି ଲକ୍ଷଣେନ ନେୟାନି] ଅଥବା ମହା କବିଙ୍କ ପ୍ରଦତ୍ତ ଲକ୍ଷଣ (ପ୍ରୟୋଗ) ଅନୁସାରେ କାବ୍ୟକୁ ପରୀକ୍ଷା କରିବା ଆବଶ୍ୟକ । [ମହାତ୍ମନାଂ ଲକ୍ଷଣେନ କାବ୍ୟାନି ନେୟାନି]

ଉପମାରେ ମୂର୍ତ୍ତି ସାଦୃଶ୍ୟ କେଉଁଠି ଦେଖା ଯାଉଛି କି? ଗଜନିପ ଗ୍ରନ୍ଥରେ ଯେପରି କୁହାଯାଇଛି । ଶ୍ରୀମଦ୍ଭଣ୍ଡଙ୍କ ଏହି କାରିକାକୁ ଦୁଇ ପ୍ରକାରରେ ଅର୍ଥ କରାଯାଇପାରେ । ପ୍ରଥମପ୍ରକାର - କାବ୍ୟଶାସ୍ତ୍ରର କଠୋର ନିୟମ ଅନୁସାରେ କୌଣସି କାବ୍ୟର ଦୋଷ ଗୁଣ ନିର୍ଣ୍ଣୟ ନ ହେବା ଉଚିତ । ଏ କ୍ଷେତ୍ରରେ ମହାକବିଙ୍କ ପ୍ରୟୋଗକୁ ଅଧିକ ପ୍ରାମାଣିକ ମନେ କରିବା ବିଧେୟ । କାରଣ ମହାକବିଙ୍କ ରଚନାକୁ ଭିତ୍ତି କରି ନିୟମ ପ୍ରଣୀତ ହୁଏ । ତେଣୁ କୌଣସି ସ୍ଥଳରେ ଦୋଷ ଦେଖାଦେଲେ ତଥା ସମ୍ଭବ ପରିହାର କରିବା ଆବଶ୍ୟକ । ଅନ୍ୟ ପକ୍ଷରେ - ଯଦି କାବ୍ୟ ଶାସ୍ତ୍ରର ନିୟମ ସହିତ କବିର ପ୍ରୟୋଗରେ ଅନ୍ତର ଦେଖା-ଯାଏ । ତେବେ କବିର ପ୍ରୟୋଗକୁ ଅନୁସରଣ କରିବା ଉଚିତ । ସେ କ୍ଷେତ୍ରରେ କିନ୍ତୁ କବି ଅସାଧାରଣ ହୋଇଥିବା ଆବଶ୍ୟକ ।

୪୭। ସୂର୍ଯ୍ୟ କିରଣରେ ମୁଦ୍ରିତ ନେତ୍ର ତଥା କମଳ ସୌରଭ ଯୁକ୍ତ ପବନ, ସ୍ପର୍ଶରେ ମଦଶୂନ୍ୟ ଦୀନମୟୂରଙ୍କ ମୁଖରେ କେକାଧ୍ୱନି ସେହିପରି ଲୁଚିଗଲା, ଯେପରି ପତି ବିହୀନା ସତୀ ନାରୀ ନିଜ ଗୃହ କୋଣରେ ଲୁଚି ରହେ ।

( ଯେପରି ପତି ବିହୀନା ସତୀ ନାରୀ ଘରୁ ବାହାରନ୍ତି ନାହିଁ, ସେହିପରି ଶରତ ଋତୁରେ ମୟୂରଙ୍କ ଧ୍ୱନି ତାଙ୍କ ମୁଖରୁ ବାହାରେ ନାହିଁ । ). ଏହା ଶରତ ଋତୁର ବର୍ଣ୍ଣନା ଅଟେ । ବର୍ଷା ଋତୁରେ ସୂର୍ଯ୍ୟ ମେଘରେ ଲୁଚିଯାନ୍ତି । କମଳ ନଷ୍ଟ ହୁଏ ଓ ମୟୂର କେକା ଧ୍ୱନି କରେ । କିନ୍ତୁ ଶରତ ଋତୁରେ ସୂର୍ଯ୍ୟ କିରଣ ପ୍ରଖର ହୁଏ । କମଳ ବିକଶିତ ହୁଏ । ମୟୂରର ଧ୍ୱନି ଲୁଚିଯାଏ । ଏହାକୁ କବି ଉପମା ଆଧାରରେ ବ୍ୟକ୍ତ କରିଛନ୍ତି । ଏଠାରେ ମୟୂରର କେକା ଧ୍ୱନି ଉପମେୟ ପତିବ୍ରତା ନାରୀ ଉପମାନ । ଉପମେୟରେ ତିନିଗୋଟି ଧର୍ମ ନିର୍ଦ୍ଦିଷ୍ଟ - ସୂର୍ଯ୍ୟାଂଶୁ ସମ୍ମିଳିତ ଲୋଚନେଷୁ, ପଦ୍ମାନିଳ ନର୍ମଦେଷୁ ଓ ଦୀନେଷୁ ଏ ସମସ୍ତ ମୁଖେଷୁ ପଦର ବିଶେଷଣ । ଉପମାନରେ ପ୍ରଦତ୍ତ ସ୍ୱଗେହେଷୁ ପଦରେ

ନଷ୍ଟେ ଭୁବସ୍ୟାବ୍ଦନ ସ୍ୱସ୍ୟ ଧାମ୍ନାଃ
ଶବ ଧନୁର୍ମଣ୍ଡଳମଧ୍ୟଭାଜଃ ।
ଜାଜ୍ୱଲ୍ୟମାନା ଇବ ବାରିଧାରା
ବନାର୍ଦ୍ଧଭାଜଃ ପରିବେଷି ଶ୍ରୋଃକାଃ ॥ (ଶାଖବର୍ଦ୍ଧନସ୍ୟ) ॥ ୪୭ ॥

କଥଂ ପାତୋଽମ୍ବୁଧାରାଣାଂ ଜ୍ୱଲନ୍ତୀନାଂ ବିବସ୍ୱତଃ ।
ଅସମ୍ଭବାଦସ୍ୟଂ ଯୁକ୍ତ୍ୟା ତେନାସମ୍ଭବ ଉଚ୍ୟତେ ॥ ୪୮ ॥

ତଥାସମ୍ଭବନାର୍ଥେନ କଃ କୁର୍ଯ୍ୟାଦୁପମାଂ କୃତୀ
କୋ ନାମ ବହ୍ନୈରୌପମ୍ୟଂ କୁର୍ବୀତ ଶଶିଲକ୍ଷ୍ମଣଃ ॥ ୪୯ ॥

---

ଏ ସମସ୍ତ ଧର୍ମର ନିର୍ଦ୍ଦେଶ ନାହିଁ । ତେଣୁ ଭେଦ, ଭେଦ ଏହାକୁ ଉପମା ଗ୍ରନ୍ଥ ଦୋଷ ରୂପେ ଗ୍ରହଣ କରିପାରନ୍ତି । କିନ୍ତୁ କେତାଧିକ ଓ ସ୍ତ୍ରୀ ପୁଂ ପ୍ରତି ଉପମେୟ - ଉପମାନ ଭାବ ପ୍ରଦର୍ଶନ କରିବା ଅଶ୍ଳୀଳ ହେତୁ ଏହା ଗ୍ରାମ୍ୟତା ଦୋଷରେ ଦୁଷ୍ଟ ନୁହେ ।

୪୭) ଅସମ୍ଭବ ଦୋଷ— ପରିଧି ବେଷ୍ଟିତ ମଧ୍ୟାହ୍ନ ସୂର୍ଯ୍ୟରୁ ଜ୍ୱଳନ୍ତ ଜଳଧାରା ଯେପରି, ବୋଧ ହୁଏ ଧନୁ ମଣ୍ଡଳ ମଧ୍ୟ ବର୍ତ୍ତୀ ତାଙ୍କର ଶାଣିତ ବାଣ ନିର୍ଗତ ହେଉଥିଲା । (ଏହା ଶାଖବର୍ଦ୍ଧନଙ୍କ ରଚିତ ଶ୍ଳୋକ ଅଟେ)

କୌଣସି ରାଜା ଶୀଘ୍ର ଶୀଘ୍ର ଶର କ୍ଷେପଣ କରୁଥିଲେ । ଅନବରତ କର୍ଷଣ ହେତୁ ଧନୁଟି ମଣ୍ଡଳାକାର ଧାରଣ କରିଥିଲା । ଧନୁ ମଧ୍ୟରେ ଥିବା ତାଙ୍କର ମୁଖ ସାମାନ୍ୟ ମେଘ ମଧ୍ୟରେ ପରିଧି ଯୁକ୍ତ ସୂର୍ଯ୍ୟପରି ଦେଖାଦେଉଥିଲା । ଧନୁରୁ ନିର୍ଗତ ବାଣ ରାଜାଙ୍କ ମୁଖରୁ ବାହାରିଲାପରି ବୋଧ ହେଉଥିଲା । ତବ ବାଣ ସମାଗତ ଦ୍ୱାରେ ଉପମା ପାଇଁ ସୂର୍ଯ୍ୟରୁ ନିର୍ଗତ ଜ୍ୱଳନ୍ତ ଜଳଧାରା ଉଲ୍ଲେଖ କରିଛନ୍ତି । କିନ୍ତୁ ସୂର୍ଯ୍ୟରୁ ଜଳଧାରା ନିର୍ଗମନ ଅସମ୍ଭବ ହେତୁ ଏହା ଅସମ୍ଭବ ଉପମା ଦୋଷରେ ଦୁଷ୍ଟ ।

୪୮) ସୂର୍ଯ୍ୟରୁ ପ୍ରଜ୍ୱଳିତ ଜଳଧାରାର ପତନ ହେବ କିପରି ? ଏ ପ୍ରକାର ଯୁକ୍ତି ଅସଙ୍ଗତ ହେତୁ ଏହାକୁ ଅସମ୍ଭବ ଉପମାଦୋଷ କୁହାଯାଏ ।

୪୯) କେଉଁ ବୁଦ୍ଧିମାନ କବି ଅସମ୍ଭାବିତ ବସ୍ତୁକୁ ଉପମା ରୂପେ ବ୍ୟବହାର କରିବ ? କିଏ ବା ଅଗ୍ନି ସହିତ ଚନ୍ଦ୍ରକୁ ତୁଳନା କରିବ ?

(ଏଇଠି ପ୍ରଶ୍ନ ଉଠେ ଅନ୍ତିମଶ୍ଳୋକକୁ ଅସମ୍ଭବ ଦୋଷ କୁହାଯାଇ ପାରେ କି ? ତାର ଉତ୍ତର ଦେଇଛନ୍ତି ପରବର୍ତ୍ତୀ କାରିକାରେ ଲେଖକ )

ଯସ୍ୟାତିଶୟବାନର୍ଥଃ କଥଂ ସୋଽସମ୍ଭବୋ ମତଃ ।
ଇଷ୍ଟଂ ସ୍ୱତିଶୟାର୍ଥତ୍ୱମୁପମୋତ୍ପ୍ରେକ୍ଷୟୋର୍ଯଥା ॥ ୫୦ ॥

ପୁଂଜୀଭୂତମିବ ଧ୍ୱାନ୍ତମେଷ ଭାତି ମତଙ୍ଗଜଃ ।
ସରଃ ଶରତ୍ପ୍ରସନ୍ନାଂଭୋନଭଃ ଖଣ୍ଡମିବୋଜ୍ଝିତମ୍ ॥ ୫୧ ॥

---

୫୦) ଯେଉଁ ରଚନାର ଅର୍ଥ ଅତିଶୟ ଯୁକ୍ତ ଅଟେ, ତାହା ଅସମ୍ଭବ କପରି ମନେକରାଯିବ ? ଅର୍ଥର ଏହି ଅତିଶୟତା ଉପମା ଓ ଉତ୍ପ୍ରେକ୍ଷାରେ ସର୍ବଥା ଅଭିଲଷିତ ଆଟେ ।

ଅତିଶୟୋକ୍ତି ବ୍ୟତୀତ ଅଳଂକାରର ସତ୍ତା ଅକଳ୍ପନୀୟ । ତେଣୁ ଯେଉଁଠି ଅତିରଞ୍ଜନା ରହିଛି, ତାହା ଅସମ୍ଭ ଦୋଷରେ ଦୂଷିତ ନୁହେ । ଯଥା —

୫୧) ଏହି ହାତୀଟି ପୁଞ୍ଜିଭୂତ ଅନ୍ଧକାର ପରି ଶୋଭାପାଏ । ଶରତଋତୁରେ ସ୍ୱଚ୍ଛଜଳଯୁକ୍ତ ସରୋବର ବୋଧ ହୁଏ ପୃଥିବୀ ଉପରେ ପତିତ ଆକାଶର ଖଣ୍ଡ ଅଟେ ।

ଏ ଦୁଇ ଉଦାହରଣ ଅସମ୍ଭବ ଦୋଷ ପରି ମନେ ହୋଇପାରେ । କାରଣ ଅନ୍ଧକାର ପୁଂଜୀଭୂତ ହେବା ଅସମ୍ଭବ ଓ ଆକାଶ ଖଣ୍ଡ ପୃଥିବୀ ଉପରେ ପତିତ ହେବା ଅସମ୍ଭବ କିନ୍ତୁ ଏପରି ଉପସ୍ଥାପନ ଅତିଶୟୋକ୍ତି ଆଧାରିତ ହେତୁ ଦୋଷଯୁକ୍ତ ନ ହୋଇ ଅଳଂକାର ପରିପୋଷକ ହୋଇପାରିଛି । କିନ୍ତୁ ଭାମହଙ୍କ ଏହି ଉକ୍ତିରୁ ଅସମ୍ଭବ ଦୋଷ ଓ ଅତିଶୟୋକ୍ତି ମଧ୍ୟରେ ଥିବା ବିଭାଜକ ରେଖା ସ୍ପଷ୍ଟ ହୁଏ ନାହିଁ ।

ନିମ୍ନୋକ୍ତ ଉଦାହରଣକୁ ଲକ୍ଷ୍ୟ କରାଯାଇପାରେ—

ଉର୍ଦ୍ଧେ ଛିଦ୍ର କର ବେନି ଶୋଭା ଲପନକୁ ଘେନି ।
ଚନ୍ଦ୍ରକ ବିଦ୍ୟୁତ୍‌ପରିଧି ହୋଇଲା ଏବେ । [ଲ-ବ ୧୧-୨୭]

ଛିଦ୍ରିତ ହସ୍ତ ମଧ୍ୟରେ ଥିବା ମୁଖକୁ ବିଦ୍ୟୁତପରିଧି ଯୁକ୍ତ ଚନ୍ଦ୍ର ସହିତ ତୁଳନା ଅସମ୍ଭବ ବ୍ୟାପାର । କାରଣ ବିଦ୍ୟୁତର ଉପସ୍ଥିତି ଘନମେଘ କୋଳରେ ସମ୍ଭବ ଓ ଘନମେଘର ସ୍ଥିତିରେ ଚନ୍ଦ୍ର ଅଦୃଶ୍ୟ ହେବା ସ୍ୱାଭାବିକ । ତେଣୁ କବିଙ୍କ ଏ ଅଦ୍ଭୁତ କଳ୍ପନା ଭାମହଙ୍କ ମତରେ ଅସମ୍ଭବ ଦୋଷରେ ଦୂଷିତ ହେବ ନା ଅତିରଂଜିତ ଉତ୍ପ୍ରେକ୍ଷା ହେବ, ତାହ ସ୍ପଷ୍ଟ ହୁଏ ନାହିଁ ।

ଅତିଶୟାର୍ଥକ ଉପମା—ଜମ୍ଭୁନଦହାର ମଧ୍ୟରେ ଖାରି ପଦକପରି
ଦଶୁଥିଲେ ନାରୀ ଗହଣେ ଷଷ୍ଠଇନ୍ଦ୍ରୀ ସୁନ୍ଦରୀ ( କୀଚକ ବଧ )

ଅତିଶୟାର୍ଥକ ଉତ୍ପ୍ରେକ୍ଷା—ସୁନ୍ଦରୀ ସମାଜ ଦର୍ଶନେ ହୁଦ ଏ ଭାବ ପୋଷେ ।
ପକ୍ଷିଳ କ ଦୃଷ୍ଟି ସମ୍ମୋଧ ପଡ଼ି ରତନ କୋଷେ । (କୀଚକବଧ)

ଅଥ ଲିଙ୍ଗବଚସୋର୍ଭେଦାବୁଚ୍ୟେତେ ସଙ୍କପଞ୍ଚଷ୍ୟୌ ।
ହୀନାଧିକତ୍ୱାସ୍ତ୍ରେଧା ବିପୂମପ୍ୟୁଚ୍ୟତେ ଯଥା ॥ ୫୨ ॥
ଅବଗାହ୍ୟୋଽପି ନାସ୍ୱଣା ମନନ୍ୟମନସାମପି ।
ବିଷମୋପଲଭିନ୍ନୋର୍ମି ରାପଗେବୋତ୍ତିତୀର୍ଷତଃ ॥ ୫୩ ॥

---

୫୨) ଲିଙ୍ଗଭେଦ—ବଚନ ଭେଦ ବିପର୍ଯ୍ୟୟ—ବର୍ତ୍ତମାନ ଲିଙ୍ଗଭେଦ, ବଚନ ଭେଦଓ ବିପର୍ଯ୍ୟୟ ଜନିତ ଉପମା ଦୋଷ ବିଷୟରେ କୁହାଯାଉଛି । ଏହି ବିପର୍ଯ୍ୟୟ ହୀନ ଓ ଅଧିକ ଭେଦରେ ଦ୍ୱିବିଧ ଦୋଷ ବିଷୟ କୁହାଯାଉଛି ।

ଏହି କାରିକାରେ ଉପମା ସମ୍ବନ୍ଧୀୟ ଚାରୋଟି ଦୋଷ ଉଲ୍ଲିଖିତ । ଲିଙ୍ଗଭେଦର ଅର୍ଥ ଅପମାନ ଓ ଉପମେୟ ସମଲିଙ୍ଗ ନହେବା । ବଚନ ଭେଦର ଅର୍ଥ ଉପମାନ ଓ ଉପମେୟ ସମବଚନ ବିଶିଷ୍ଟ ନ ହେବା । ବିପର୍ଯ୍ୟୟର ଅର୍ଥ ଉପମାର ଉପମେୟ ଠାରୁ ଅତ୍ୟନ୍ତ ହୀନ ବା ଅତ୍ୟନ୍ତ ଅଧିକ ହୋଇଥିବ । ତେବେ ତାକୁ ହୀନ ବିପର୍ଯ୍ୟୟ ଓ ଅଧିକ ବିପର୍ଯ୍ୟୟ ଦୋଷ କୁହାଯିବ ।

୫୩) ତୁମେ ଅନନ୍ୟହୃଦୟା (ତୁମକୁ କେବଳ ଭଲ ପାଉଥିବା) ନାରୀ ମାନଙ୍କ ପାଇଁ ମଧ୍ୟ ଦୁଷ୍ପ୍ରବେଶ୍ୟ ଅଟ । ଯେପରି ପାର ହେବା ପାଇଁ ଇଚ୍ଛୁକ ବ୍ୟକ୍ତି ସକାଶେ ବିଷମ ପ୍ରସ୍ତର ଦ୍ୱାରା ଖଣ୍ଡିତ ଲହରୀ ଯୁକ୍ତ ନଦୀ ।

ଏ ଶ୍ଳୋକରେ କୌଣସି ରାଜାର ସ୍ତୁତି ବର୍ଣ୍ଣିତ । ହେ ରାଜନ୍ ! ତୁମର ଚରିତ୍ର ଏତେ ଦୃଢ଼ ଯେ, ଅନନ୍ୟ ହୃଦୟା ନାରୀ ବୃନ୍ଦ ପ୍ରଯତ୍ନ କରି ମଧ୍ୟ ତୁମ ହୃଦୟରେ ବିକାର ଉତ୍ପନ୍ନ କରିପାରନ୍ତି ନାହିଁ । ସେମାନଙ୍କର ପ୍ରୟାସ ସେହିପରି ନିଷ୍ଫଳ ହୁଏ, ଯେପରି ଉନ୍ନତ ଅବନତ ପ୍ରସ୍ତର ଖଣ୍ଡ ମଧ୍ୟଦେଇ ପ୍ରଖର ପ୍ରବାହିତ ନଦୀକୁ ପାର କରିବା ଇଚ୍ଛା-ପ୍ରତିହତ ହୁଏ । ଏଥିରେ ଏକାଧାରରେ ଲିଙ୍ଗଭେଦ ଓ ବଚନ ଭେଦ ଦୋଷ ପ୍ରଦର୍ଶିତ । ଏଠାରେ ତୁମେ (ରାଜା) ଉପମେୟ ଓ ନଦୀ (ଆପଗା) ଉପମାନ । ଏଣୁ ପୁଂଲିଙ୍ଗର ସ୍ତ୍ରୀଲିଙ୍ଗ ଉପମାରେ ଲିଙ୍ଗ ଭେଦର ରହିଛି । ସେହିପରି ନାରୀମାନଙ୍କର (ନାରୀଣାଂ) ବହୁବଚନ ଉପମେୟ ପାରହେବାକୁ ଇଚ୍ଛୁକ ବ୍ୟକ୍ତି (ଉତ୍ତିତୀର୍ଷତଃ) (ଶତୃପ୍ରତ୍ୟୟାନ୍ତ ଉତ୍ ପୂର୍ବକ ତୃ ଧାତୁର ସନ୍ନନ୍ତ ଷଷ୍ଠୀ ଏକ ବଚନ ରୂପ) ଉପମାନ ଏକବଚନ । ଅତଏବ ବଚନ ଭେଦ ଦୋଷ । ତଥା ନାରୀଣାଂ ସ୍ତ୍ରୀଲିଙ୍ଗ ଓ ଉତ୍ତିତୀର୍ଷତଃ ପୁଂଲିଙ୍ଗ ହେତୁ ଲିଙ୍ଗ ଭେଦ ଦୋଷ ମଧ୍ୟ ରହିଛି । ଅନୁରୂପ ଉଦାହରଣ ଯଥା—[ଲିଙ୍ଗଭେଦ]

ସୁଶୀଳାକୁ ଦିବ୍ୟ ବେଶ କରି ହରିନାରୀ ବାହାରି ସଙ୍ଗେ ଯେନି ।

କ୍ୱଚିଦଗ୍ରେ ପ୍ରସରତା କ୍ୱଚିଦାପତତା ନିବୃତ୍ତା ।
ଶୁନେବ ସାରଙ୍ଗ କୁଳଂ ତ୍ୱୟା ଭିନ୍ନଂ ଦ୍ୱିଷାଂ ବଳମ୍ ॥ ୫୪ ॥
ଅୟଂ ପଦ୍ମାସନାସୀନ ଶ୍ଚକ୍ରବାକୋ ବିରାଜତେ ।
ଯୁଗାଦୌ ଭଗବାନ୍ ବ୍ରହ୍ମା ବିନିର୍ମିତ୍ସୁରିବ ପ୍ରଜାଃ ॥ ୫୫ ॥
ନନ୍ଦ୍ ପ୍ରମିପୁରେ ପାଣିଃ କମଳେନ ବିକାସିନା ।
ଅଧରେ ବନ୍ଧୁଜୀବଚ୍ଛେଦଶ୍ରିୟା ବିମ୍ବ ଫଳେନ ଚ ॥ ୫୬ ॥

---

ସାତପଟି ହୋଇବାରୁ ରଜନୀ ।
ପରସ୍ଥାନ ପାଶେ ଭଗୀରଥ କରା କେଉଁଅଛୁ ମନ୍ଦାକିନୀ । [ସୁ-ପ-୯-୧୬]
ଏଥିରେ ସତ୍ୟସ୍ୱାମୀ ପାଇଁ ଭଗୀରଥ ଉପମା ଲିଙ୍ଗଭେଦ ଦୋଷରେ ଦୂଷିତ ।

୫୪) ହୀନ ବିପର୍ଯ୍ୟସ୍ତ -- କେତେବେଳେ ଅଗ୍ରସର ହୋଇ କେତେବେଳେ ପଛକୁ ଫେରି ତୁମେ ଶତ୍ରୁ ସେନାକୁ ଛିନ୍ନଭିନ୍ନ କରିଦେଲ । ଯେପରି କୁକୁର ମୃଗପଲକୁ ଇତସ୍ତତଃ କରିଦିଏ ।

ଏଠାରେ ରାଜାଙ୍କର ସ୍ତୁତି ପ୍ରଯୁକ୍ତ କୁକୁର ଉପମାନ ହୀନ ବିପର୍ଯ୍ୟସ୍ତ ଦୋଷର ସୂଚକ । ଯଥା — ବେଢ଼ି ଛନ୍ତି ଯାତୁଧାନ ମଧ୍ୟେ ହନୁମାନ ।
ବନ୍ଧନ କରି ତସ୍କର ଆଣିବା ବିଧାନ (ବୈ-ଧ୍ୱ-୩୬-୧୯)

ହନୁମାନ ପାଇଁ ତସ୍କର (ଚୋର) ଉପମାନ ହୀନ ବିପର୍ଯ୍ୟସ୍ତ ଦୋଷ ସୂଚକ ।

୫୫) ଅଧିକ ବିପର୍ଯ୍ୟସ୍ତ—ପଦ୍ମ ଆସନ ଉପରେ ଆସୀନ ଏହି ଚକ୍ରବାକ ଯୁଗଆରମ୍ଭରେ ପ୍ରଜା ସୃଷ୍ଟି ପାଇଁ ଇଚ୍ଛୁକ ବ୍ରହ୍ମାଙ୍କ ପରି ଶୋଭା ପାଉଅଛୁ ।
ଏଠାରେ ସାଧାରଣ ପକ୍ଷୀ ଚକ୍ରବାକ ଉପମେୟ ଓ ବ୍ରହ୍ମା ଉପମାନ ଅଧିକ ବିପର୍ଯ୍ୟସ୍ତ ବୋଧକ । ଅନୁରୂପ—

ବଦନ୍ତି ଯେ ସନ୍ଧ୍ୟାକାଳେ ହେଲା ପରି
ବିହାୟସେ ଏକ କାବ୍ୟ ଅବତାର [ବୈ-ବ୍ର-୧୩-୬୧]

ସୀତାଙ୍କ ମଥା ଓ ମଥାମଣିକୁ ଆକାଶ ଓ ଶୁକ୍ରତାରା ସହିତ ତୁଳନାରେ ଅଧିକ ବିପର୍ଯ୍ୟସ୍ତ ଦୋଷ ପ୍ରକଟିତ ।

୫୬) ଶଙ୍କା—କନ୍ଦ୍ର ପାଣି (ହାତ) ବିକଶିତ କମଳ ସହିତ ଓ ଅଧର ବନ୍ଧୁମଣ୍ଡର ପ୍ରଶ୍ନ ତଥା ବିମ୍ବଫଳ ସହିତ ତୁଳିତ ହୋଇଅଛୁଅଛୁ ।

ଉଚ୍ୟତେ କାମମସ୍ତୀଦଂ କନ୍ତୁ ସ୍ତ୍ରୀପୁଂସୟୋରସ୍ୱମ୍ ।
ବର୍ଧର୍ନାଭ୍ରମତୋଽନେ୍ୟୟୁ ସପ୍ତାଣାମପି ନେଷ୍ୟତେ ॥ ୪୭ ॥

ସ ପୀତବାସାଃ ପ୍ରଗୃହୀତଶାର୍ଙ୍ଗେ।
ମନୋଜ୍ଞଭୀମଂ ବପୁରାପ କୃଷ୍ଣଃ ।
ଶତହ୍ରଦେନ୍ଦ୍ରାୟୁଧବାନ୍ ନିଶାୟାଂ
ସଂସୃଜ୍ୟମାନଃ ଶଶିନେବ ମେଘଃ (ସମଶର୍ମଣଃ) ॥ ୪୮ ॥

---

ଏଠାରେ ପ୍ରଶ୍ନ ହଉଠେ- ଉପମାନ ଓ ଉପମେୟରେ ଲିଙ୍ଗଭେଦ ଦୋଷ ରୂପରେ ଗୃହୀତ ହେଲେ ପ୍ରଚଳିତ ଉପମାରେ ଏହା ଅଧିକେ, ସଦଂଜ ଏ ଦୋଷ ଦେଖାଯିବ । ଯଥା—ସଂସ୍କୃତ ଭାଷାରେ ପାଣି ପୁଂଲିଙ୍ଗ ଓ କମଳ କ୍ଲୀବଲିଙ୍ଗ ଅଧର ପୁଂଲିଙ୍ଗ ଓ ବନ୍ଧୁମପ୍ରସ୍ର ସ୍ତ୍ରୀଲିଙ୍ଗ ତଥା ବମ୍ବଫଳ କ୍ଲୀବଲିଙ୍ଗ । ତେଣୁ ଏପରି ତୁଳନାରେ ମଧ୍ୟ ଲିଙ୍ଗ ଦୋଷ ରହିବା କଥା । କିନ୍ତୁ ଏହାକୁ କେହି ଦୋଷ ବୋଲି ଗ୍ରହଣକରନ୍ତି ନାହିଁ । ତେବେ ଲିଙ୍ଗ ଭେଦ ଦୋଷର ତାତ୍ପର୍ଯ୍ୟ କଣ ?

୪୭) ସମାଧାନ—ଏହି ଶଙ୍କାର ସମାଧାନ ଅଟେ— ଯଦ୍ୟପି ଏହିପରି ଲିଙ୍ଗଭେଦ ପ୍ରାୟଶଃ ଦେଖାଯାଏ, ତଥାପି ଏହାକୁ ଦୋଷ କୁହାଯିବ ନାହିଁ । କାରଣ ଲିଙ୍ଗ ଭେଦ ଦୋଷର ତାତ୍ପର୍ଯ୍ୟ ଉପମାନ ଓ ଉପମେୟ ମଧ୍ୟରୁ ଗୋଟିଏ ସ୍ତ୍ରୀଲିଙ୍ଗ ଓ ଅନ୍ୟଟି ପୁଂଲିଙ୍ଗ ହେଲେ ଲିଙ୍ଗ ଭେଦ ଦୋଷ ଗ୍ରହଣୀୟ କିନ୍ତୁ ସ୍ତ୍ରୀଲିଙ୍ଗ ବା ପୁଂଲିଙ୍ଗ ଉପମାନ ଓ ଉପମେୟର କ୍ଲୀବଲିଙ୍ଗ ଉପମାନ ବା ଉପମେୟ ହେଲେ ଏ ଦୋଷ ହୁଏ ନାହିଁ । କେତେକ ଆଲୋଚକ କହନ୍ତି ଯେ କୌଣସି ଲିଙ୍ଗଭେଦ ଗ୍ରହଣୀୟ ନୁହେଁ । ସଦଂଜ ପୁଂଲିଙ୍ଗ ଉପମାନ ସହିତ ପୁଂଲିଙ୍ଗ ଉପମେୟ, ସ୍ତ୍ରୀଲିଙ୍ଗ ସହିତ ସ୍ତ୍ରୀଲିଙ୍ଗ ଓ ନପୁଂସକ ଲିଙ୍ଗ ସହ ନପୁଂସକ ଲିଙ୍ଗ ପ୍ରୟୋଗ କରାଯିବା ଉଚିତ ।

୪୮) ପୀତାମ୍ବର ପରିହିତ ଓ ଶାର୍ଙ୍ଗଧନୁର୍ଧାରୀ ଶ୍ରୀକୃଷ୍ଣଙ୍କ ଶରୀର ସୁନ୍ଦର ଓ ଭୟଙ୍କର ମନେ ହେଉଥିଲା । ଯେପରି ରାତିରେ ଚନ୍ଦ୍ରମା, ବିଦ୍ୟୁତ ଓ ଇନ୍ଦ୍ରଧନୁ ଯୁକ୍ତ ମେଘ (ସୁନ୍ଦର ଓ ଭୟଙ୍କର ଦେଖାଯାଏ) ଏହି ଶ୍ଳୋକଟି ରାମଶର୍ମାଙ୍କ ଦ୍ୱାରା ରଚିତ ।

ଏଠାରେ ଉପମେୟ କୃଷ୍ଣ ଓ ଉପମାନ ମେଘ । ଉପମେୟରେ ଦୁଇଟି ବିଶେଷଣ ଉଲ୍ଲିଖିତ- ପୀତାମ୍ବର ଓ ଶାର୍ଙ୍ଗଧନୁ । କିନ୍ତୁ ଉପମାନ ମେଘରେ ବିଦ୍ୟୁତ୍, ଇନ୍ଦ୍ରଧନୁ ଓ ଚନ୍ଦ୍ରର ଉଲ୍ଲେଖ ରହିଛି । ବିଦ୍ୟୁତ୍ ଦ୍ୱାରା ପୀତାମ୍ବର ଓ ଇନ୍ଦ୍ରଧନୁ ଦ୍ୱାରା ଶାର୍ଙ୍ଗଧନୁ ସୂଚିତ । କିନ୍ତୁ ଉପମାନ ଭୂତ ଚନ୍ଦ୍ରର ଉପମେୟ ନାହିଁ ତେଣୁ ଏହା ଉପମାନାଧିକତ୍ୱ ଦୋଷରେ

ଶଶିନୋ ଗ୍ରହଣା ଦେତବାଧିକ୍ୟଂ କଲ ନ ଢ୍ୟପୂମ ।
ନଦ'ଷ୍ଟ ଉପମେୟ୍ୱଽର୍ଥେ ବାଚ୍ୟୋ ବା ଜଳଜୋଽଽ ଭୁ ।। ୫୯ ।।
ନ ସଙ୍ଗସାରୂପ୍ୟମିତ୍ତ ବସ୍ତୁରେଣୋଦ୍ଧତୋ ବଧିଃ ।
ଅଭିପ୍ରାୟ୍ୟାତ୍ତ୍ୱକବେର୍ନାଽ ବଧେୟ୍ୟା ଜଳଜେ ମତଃ ।। ୬୦ ।।

---

ଦୂଷିତ । କୃଷ୍ଣ ଉପମେୟରେ ଶଙ୍ଖଧାରୀ ବିଶେଷଣଟି ଉକ୍ତ ହୋଇଥିଲେ ଯଥାର୍ଥ ହୋଇ ଥାନ୍ତା । ଯଥାର୍ଥ ବିଷୟରେ ଉପମାଧିକତ୍ୱ ଅପେକ୍ଷା ଅସମ୍ଭବ ଦୋଷ ଅଧିକ ମନେ ହୁଏ । ଗ୍ରୀଷ୍ମରେ ଇନ୍ଦ୍ରଧନୁ କଣ ଦେଖାଯାଏ ?

୫୯) ଉପମାନା-ଧିକତା ଦୋଷ — (ପୂର୍ବୋକ୍ତ ଉଦାହରଣରେ) ଉପମାନ ରୂପେ ଚନ୍ଦ୍ରର ଉଲ୍ଲେଖ ଅଧିକ ଅଛି । କାରଣ ତାହାର ତୁଲ୍ୟଧର୍ମ ଉପମେୟରେ ନାହିଁ । ଶଙ୍ଖ ଶବ୍ଦଟି ଉପମେୟରେ ରହିଥିଲେ ଉପମାଧିକତ୍ୱ ଦୋଷ ହୋଇନଥାନ୍ତା ।

ଚନ୍ଦ୍ରମା ସହିତ ସଂଯୁକ୍ତ (ସଂସୃଜ୍ୟମାନଃ ଶଶିନେବ)ର ପ୍ରତିରୂପ ଉପମେୟରେ ନାହିଁ । ଯଦି କେହି କହେ— ଉପମାନରେ ଚନ୍ଦ୍ରର ନିର୍ଦ୍ଦେଶ ଶାଢ । ଉପମେୟରେ ଅନିର୍ଦ୍ଦିଷ୍ଟ ଶଙ୍ଖ ଆକ୍ଷେପ ବଳରେ ଆସିଯିବ । ତେଣୁ ଦୋଷ ପରିହାର ହୋଇଯିବ । କିନ୍ତୁ ଏପରି କଥନ ଯୁକ୍ତିଯୁକ୍ତ ନୁହେ । କାରଣ ଉପମା ବାଚ୍ୟ ଅଲଙ୍କାର ହେଉ ସେଠାରେ ଗମ୍ୟର ସ୍ଥାନ ନାହିଁ ।

୬୦) ଉପମାରେ ସର୍ବାତ୍ମନା ସାରୂପ୍ୟ ସମ୍ଭବ ନୁହେଁ । ଏ ବିଷୟ ସର୍ବତ୍ର କୁହାଯାଇଛି । ଏଠାରେ କବିର ଅଭିପ୍ରାୟରୁ ଶଙ୍ଖର ପ୍ରତୀତି ହୁଏ କହିବା ଯଥାର୍ଥ ନୁହେ ।

ଉପମା ଅଲଙ୍କାରରେ ଉପମାନ ସହିତ ଉପମେୟର ସାଦୃଶ୍ୟ ସର୍ବତୋ ଭାବେ ସମାନ ହୁଏ ନାହିଁ, ଏକଥା ସ୍ପଷ୍ଟ ରୂପେ ପ୍ରକାଶ କରାଯାଇଛି । ପୂର୍ବ ଉଦାହରଣ (୨-୫୮)ରେ ଉପମାନର ତିନଗୋଟି ଧର୍ମ ଓ ଉପମେୟର ଦୁଇଗୋଟି ଧର୍ମ ଉଲ୍ଲେଖ ହୋଇଥିଲେ ମଧ୍ୟ କୌଣସି ଦୋଷ ନାହିଁ । ଏହା ମଧ୍ୟ ହୋଇପାରେ କବି ଶଙ୍ଖର ପ୍ରତୀତି କରାଇବାକୁ ଇଚ୍ଛୁ ନଥିବେ । ତେଣୁ ତାର ନିର୍ଦ୍ଦେଶ କରିନାହାନ୍ତି । କିନ୍ତୁ ଏ ଯୁକ୍ତିକୁ ସ୍ୱୀକାର କଲେ ଉପମାନ ଅଧିକତ୍ୱ ଦୋଷ ନ ହୋଇ ପାରେ । ମାତ୍ର 'ଶଶିନା ସଂସୃଜ୍ୟମାନଃ' ବିଶେଷଣ ଦ୍ୱାରା ଅପୁଷ୍ଟାର୍ଥ ଦୋଷ ଖଣ୍ଡିତ ହୁଏ ନାହିଁ । ଅପୁଷ୍ଟାର୍ଥ ଦୋଷ ସମ୍ବନ୍ଧରେ ସାହିତ୍ୟ ଦର୍ପଣକାର କହନ୍ତି

ଅପୁଷ୍ଟାର୍ଥଂ ମୁଖ୍ୟାନୁପକାରତ୍ୱମ୍ [ ମୁଖ୍ୟର ଉପକାରକ ନହେଲେ ଅପୁଷ୍ଟାର୍ଥ ଦୋଷ ହୁଏ] ଉଦାହରଣ-ବିଲୋକ୍ୟ ବିତତେ ବ୍ୟୋମ୍ନି ବିଧୁଂ ମୁଞ୍ଚ ରୁଷଂ ପ୍ରିୟେ । ଅର୍ଥାତ୍ ହେ ପ୍ରିୟେ ! ବିସ୍ତୃତ ଆକାଶରେ ଚନ୍ଦ୍ରକୁ ଦେଖି ମାନ ତ୍ୟାଗ କର ।

ଆଧିକ୍ୟମୁପମାନାନାଂ ନ୍ୟାଯ୍ୟଂ ନାଧିକତା ଭବେତ୍ ।
ଗୋକ୍ଷୀରକୁନ୍ଦଧବଳନାଂ ବିଶୁଦ୍ଧ୍ୟା ସଦୃଶଂ ଯଶଃ ॥ ୬୧ ॥
ଏତେନୈବୋପମାନେନ ନନୁ ସାଦୃଶ୍ୟମୁଚ୍ୟତେ ।
ଉକ୍ତାର୍ଥସ୍ୟ ପ୍ରୟୋଗୋ ହି ଗୁରୁତ୍ୱମର୍ଥଂ ନ ପୁଷ୍ୟତି ॥ ୬୨ ॥

---

ଏଠାରେ ମାନ ତ୍ୟାଗ ପାଇଁ ଚନ୍ଦ୍ରର ଉଲ୍ଲେଖ ଅନିବାର୍ଯ୍ୟ । କିନ୍ତୁ ଅସ୍ତ୍ରମିତ ଆକାଶ ମାନ ତ୍ୟାଗର କାରଣ ହୋଇ ନ ପାରେ । 'ଅତତେ ବ୍ୟୋମ୍ନି' ମୁଖ୍ୟ ଅର୍ଥର ପ୍ରତୀତିରେ ସାହାଯ୍ୟ କରୁ ନଥିବାରୁ ଅପୁଷ୍ଟାର୍ଥ ଦୋଷରେ ଦୂଷିତ । ସେହିପରି "ଶଶିନା ସହ ଯାନ୍ତ୍ୟ-ମାଃ" ଅପୁଷ୍ଟାର୍ଥ ଦୋଷ ସୃଷ୍ଟି କରିବ । ତେଣୁ ପ୍ରଦତ୍ତ ଉଦାହରଣରେ ଉପମାନାଧିକତ୍ୱ ଦୋଷ ନ ମାନିଲେ ଅପୁଷ୍ଟାର୍ଥ ଦୋଷ ସ୍ୱୀକାର କରିବାକୁ ପଡ଼ିବ ।
ଅନୁରୂପ ଉଦାହରଣ ଯଥା—

ସରସିଜେ ଶିଶୁ ଅଳି ଆବଳୀ, ବସିଥିଲା ପରି ଅଳକାଞ୍ଚଳି । [ଲ-ବ.୧୦-୩]
ଉପମାନରେ ଥିବା ସରସିଜ [ପଦ୍ମ] ସ୍ଥାନଟି ଉପମେୟରେ ନାହିଁ । ଉପମେୟରେ ମୁଖ ଶବ୍ଦଟି ଉଲ୍ଲିଖିତ ହୋଇ ନଥିବାରୁ ଉପମାନାଧିକ୍ୟ ଦୋଷ ଅଛି ।

୬୧) ଉପମାନ ଗୁଡ଼ିକର ନ୍ୟାଯ୍ୟ ସଂଗତ ଆଧିକ୍ୟ ଉପମାନାଧିକତା ଦୋଷରେ ଦୂଷିତ ନୁହେ । ଯେପରି ଯଶର ଉଜ୍ଜ୍ୱଳତା ପ୍ରଦର୍ଶନ ପାଇଁ ଗୋ-କ୍ଷୀର, କୁନ୍ଦପୁଷ୍ପ, ବଳରାମ ଆଦିଙ୍କ ସହିତ ତୁଳନା କରାଯାଏ ।

ଉପମାର ଆଧିକ୍ୟ ଦୁଇ ରୂପରେ ସମ୍ଭବ । ଗୋଟିଏ ସାଦୃଶ୍ୟ ପ୍ରତିପାଦକ ବିଶେଷଣଦ୍ୱାରା, ଅନ୍ୟଟି ଏକ ଉପମେୟ ପାଇଁ ବହୁ ଉପମାନ ପ୍ରୟୋଗ ଦ୍ୱାରା । ଭାମହଙ୍କ ମତରେ ଏପରି ସ୍ଥଳରେ ଉପମାନାଧିକ୍ୟ ଦୋଷ ହୁଏ ନାହିଁ ।
୬୨) ସାଦୃଶ୍ୟ ଗୋଟିଏ ଉପମାନ ଦ୍ୱାରା ପ୍ରତିପାଦିତ ହୋଇଯାଏ । କଥିତ ଅର୍ଥର [ବସ୍ତୁର] ପୁନଃ ପ୍ରୟୋଗ ଅର୍ଥ ଗୌରବକୁ ପୁଷ୍ଟ କରେ ନାହିଁ ।

ଭାମହଙ୍କ ଏହି ଉକ୍ତିରୁ ମନେ ହୁଏ, ଉପମାନ ଗୁଡ଼ିକ ସ୍ଥୂଳତଃ ଏକମାତ୍ର ଧର୍ମର ପ୍ରତିପାଦକ ହେଲେ ଦୋଷ ଦୁଷ୍ଟ ହୁଏ । କିନ୍ତୁ ଗୋଟିଏ ଧର୍ମର ବିଭିନ୍ନ ପକ୍ଷକୁ ଉଦ୍-ଭାସିତ କରୁଥିଲେ ତାହା ପୁନରୁକ୍ତ, ଅପୁଷ୍ଟାର୍ଥ ବା ଉପମାଧିକତ୍ୱ ଆଦି ଦୋଷ ହୁଏ ନାହିଁ । ପ୍ରଦତ୍ତ ଉଦାହରଣ [୨-୬୧] ରେ ଗୋଦୁଗ୍ଧ ମାଧୁର୍ଯ୍ୟକୁ, କୁନ୍ଦ ସୌରଭକୁ ଏବଂ ବଳରାମ ଅପରାଜେୟତାକୁ ପ୍ରତିପାଦନ କରନ୍ତି ।
ଅନୁରୂପ ଉଦାହରଣ—

ବନେଽଥ ତସ୍ମିନ୍ ବନତାନୁଯାୟିନଃ
ପ୍ରବୃତ୍ତଦାନାର୍ଦ୍ରକଟା ମତଙ୍ଗଜାଃ ।
ବିଚିତ୍ରବର୍ହାଭରଣାଶ୍ଚ ବର୍ହିଣୋ
ବଭୂବୁରବାମଲବିଗ୍ରହା ଗ୍ରହାଃ ॥ ୭୩ ॥

ଗ୍ରହୈରପି ଗଜାଦୀନାଂ ଯଦି ସାଦୃଶ୍ୟମୁଚ୍ୟତେ ।
ତଥାପି ତେଷାଂ ତୈରସ୍ତି କାନ୍ତ୍ୟାପ୍ୟୁନ୍ନତାପି ବା ॥ ୭୪ ॥

ଇତ୍ୟୁକ୍ତ ଉପମାଭେଦୋ ବକ୍ଷ୍ୟତେ ଗୁଣତଃ ପୁନଃ ।
ଉପମାଦେରଲଂକାରସ୍ୟ ବିଶେଷୋଽନ୍ୟୋଽଭିଧୀୟତେ ॥ ୭୫ ॥

---

ନେତ୍ର କୁରଙ୍ଗ, ତୁରଙ୍ଗ, ନୀଳ ଇନ୍ଦୀବର ।
ମୀନ, ଖଞ୍ଜନ, ନଳିନ ମାର୍ଗଣ ମଧୁର । [ଲ-ବ.୩୫-୩୮]

ଉକ୍ତ ପଦରେ ନେତ୍ରର ବିଭିନ୍ନ ବୈଶିଷ୍ଟ୍ୟ କୁରଙ୍ଗ ଆଦି ଉପମାନରୁ ଅଭିବ୍ୟକ୍ତ । ତେଣୁ ଏହା ଉପମାନାଧିକତା ଦୋଷରେ ଦୂଷିତ ନୁହେ ।

୭୩) ଅସାଦୃଶତା— ସେହି ବନରେ ନିଜ ନିଜ ବନିତା (କରିଣୀ) ଙ୍କ ଅନୁଗମନକାରୀ ଏବଂ ପ୍ରବାହିତ ଦାନ ଜଳରେ ଆର୍ଦ୍ର କପୋଳ ଯୁକ୍ତ ହାତୀପଲ ତଥା ବିଭିନ୍ନ ବର୍ଣ୍ଣର ପୁଚ୍ଛ ଦ୍ୱାରା ସୁଶୋଭିତ ମୟୂର ଆକାଶରେ ସ୍ୱଚ୍ଛ ଗ୍ରହ ପରି ପ୍ରତୀତ ହେଉଥିଲେ ।

୭୪) ଯଦି ଗ୍ରହଙ୍କ ସହିତ ଗଜ ଓ ମୟୂରଙ୍କ ତୁଳନା କରାଯାଇଛି, ତେବେ ସେହି ଗ୍ରହଙ୍କର ହାତୀ ଓ ମୟୂରଙ୍କ ପରି ଉନ୍ନତା ଓ କାନ୍ତି କଥିତ ହୋଇଅଛି କି ?

ପ୍ରଦତ୍ତ ଶ୍ଳୋକ [ ୨-୭୩ ] ରେ ଗଜ ଓ ମୟୂର ସହିତ ଗ୍ରହଙ୍କୁ ତୁଳନା କରାଯାଇଛି । କିନ୍ତୁ ଗ୍ରହ ହସ୍ତୀଙ୍କ ପରି ଭୟଙ୍କର ଓ ମୟୂରଙ୍କ ପରି ସୁନ୍ଦର ନୁହନ୍ତି । ତେବେ ତୁଳନା କପରି ହେବ ? ସମତାର କୌଣସି ଆଧାର ନାହିଁ । ତେଣୁ ଏପରି ବର୍ଣ୍ଣନାରେ ଉପମାରେ ଅସାଦୃଶତା ଦୋଷ ଅନିବାର୍ଯ୍ୟ ।

ଯେପରି କୁହାଯାଇଛି—

ଏ ସୁନ୍ଦର ଦେହ ପୁଣି କି ଉଦାର ମନ ।
ତାରାମୟ ନଭେ ଯଥା ଶୋଭେ ପୂର୍ଣ୍ଣଚନ୍ଦ୍ର । (ପାଷାଣ ଚରଣେ ରକ୍ତ)

ଏଠାରେ ସୁନ୍ଦର ଦେହ ସହିତ ତାରାଯୁକ୍ତ ଆକାଶ ଓ ଉଦାର ମନ ସହିତ ପୂର୍ଣ୍ଣ ଚନ୍ଦ୍ର ତୁଳିତ । ଏ ତୁଳନା ନୂତନ ମନେ ହେଲେ ସୁଦ୍ଧା ସମତା ଅଭାବରୁ ଅବାସ୍ତବ ଓ ଅସଙ୍ଗତ ଅଟେ । ଅତଏବ ଅସଦୃଶତା ଉପମା ଦୋଷରେ ଦୂଷିତ ।

ଆକ୍ଷେପୋଽର୍ଥାନ୍ତରନ୍ୟାସୋ ବ୍ୟତିରେକୋ ବିଭାବନା ।
ସମାସୋକ୍ତିରତିଶୟୋକ୍ତୀ ଚ ଷଡ଼ଲଂକୃତୟୋଽପରାଃ ॥ ୬୬ ॥

ବକ୍ଷ୍ୟମାଣୋକ୍ତବିଷୟଃ ସ ଆକ୍ଷେପୋ ଦ୍ୱିଧା ମତଃ ।
ଏକରୂପତୟା ଶେଷା ନିର୍ଦ୍ଦେକ୍ଷ୍ୟନ୍ତେ ଯଥାକ୍ରମମ୍ ॥ ୬୭ ॥

ପ୍ରତିଷେଧ ଇବେଷ୍ଟସ୍ୟ ଯୋ ବିଶେଷାଭିଧିତ୍ସୟା ।
ଆକ୍ଷେପ ଇତି ତଂ ସନ୍ତଃ ଶଂସନ୍ତି ଦ୍ୱିବିଧଂ ଯଥା ॥ ୬୮ ॥

ଅହଂ ତ୍ୱାଂ ଯଦି ନେକ୍ଷେୟ କ୍ଷଣମପ୍ୟୁତ୍ସୁକା ତତଃ ।
ଇୟଦେବାସ୍ତ୍ୱତୋଽନ୍ୟେନ କିମୁକ୍ତେନାପ୍ରିୟେଣ ତୁ ॥ ୬୯ ॥

---

୬୫) ଏହିଂସ୍ଥଳରେ ଉପମାଭେଦ ପ୍ରଦର୍ଶନ କରାଗଲା । ବର୍ତ୍ତମାନ ଉପମା ଆଦି ଅଲଂକାରରୁ ଭିନ୍ନ ଅନ୍ୟ ଅଲଂକାର ବିଷୟରେ କୁହାଯାଉଛି ।

୬୬) ଅନ୍ୟ ଛଅ ଗୋଟି ଅଲଂକାର ଯଥା - ଆକ୍ଷେପ, ଅର୍ଥାନ୍ତରନ୍ୟାସ, ବ୍ୟତିରେକ, ବିଭାବନା, ସମାସୋକ୍ତି ଓ ଅତିଶୟୋକ୍ତି ।

୬୭) **ଆକ୍ଷେପ**— ସେ ମଧ୍ୟରୁ ଆକ୍ଷେପ ଅଲଂକାର ବକ୍ଷ୍ୟମାଣ ଓ ଉକ୍ତ ବିଷୟ ଭେଦରେ ଦ୍ୱିବିଧ ଅଟେ । ଅନ୍ୟ ଅଲଂକାର ଏକ ପ୍ରକାର ଅଟନ୍ତି । ସେ ସମସ୍ତ କ୍ରମରେ ନିର୍ଦ୍ଦେଶ କରାଯିବ ।

୬୮) ବିଶେଷତା କଥନ ଇଚ୍ଛାରେ - ଅଭିଳଷିତ ବିଷୟରେ ପ୍ରତିଷେଧ କରିବା ଆକ୍ଷେପ ଅଲଂକାର ଅଟେ । ପଣ୍ଡିତମାନେ ତାହାର ଦୁଇଟି ଭେଦ ସ୍ୱୀକାର କରନ୍ତି ।

ଅଭିଧିତ୍ସା = ବିବକ୍ଷା = କହିବା ଇଚ୍ଛା । କୌଣସି ଉକ୍ତିର ମହତ୍ତ୍ୱ ପ୍ରତିପାଦନ ଅଭିଳାଷରେ ତାହାର ନିଷେଧ କରିବା ଆକ୍ଷେପ ଅଲଂକାରର ଲକ୍ଷଣ ଅଟେ । ଯଦି କୌଣସି କଥା କହିବା ପୂର୍ବରୁ ତାହା ନିଷେଧ କରି ଦିଆଯାଏ, ତେବେ ବକ୍ଷ୍ୟମାଣ ବିଷୟକ ଆକ୍ଷେପ ଅଟେ । କଥା କହିସାରି ତାହାର ନିଷେଧ କରାଗଲେ, ତାହା ଉକ୍ତ ବିଷୟକ ଆକ୍ଷେପ ଅଟେ । ଯଥା —

୬୯) ବକ୍ଷ୍ୟମାଣ ବିଷୟ ଆକ୍ଷେପର ଉଦାହରଣ— ଯଦି ମୁଁ ତୁମକୁ କ୍ଷଣକପାଇଁ ନ ଦେଖେ ତେବେ ଉତ୍କଣ୍ଠାରେ..... ଛାଡ଼, ତୁମକୁ ଅଧିକ ଅପ୍ରିୟ କଥା କହି ଲାଭ କ'ଣ ?

ପ୍ରବାସ ଯିବା ପାଇଁ ପ୍ରସ୍ତୁତ କୌଣସି ପ୍ରେମିକଙ୍କୁ ବିଚ୍ଛେଦ ଅସହନଶୀଳା ପ୍ରେମିକାର ଉକ୍ତି । "ତୁମେ ଚାଲିଗଲେ ମୁଁ ବଞ୍ଚିବି ନାହିଁ" ଏହା କହିବାକୁ ଚାହେଁ । କିନ୍ତୁ ଏହି

ସ୍ୱବିକ୍ରମାକ୍ରାନ୍ତଭୂବଶ୍ଚିତ୍ରଂ ଯନ୍ନ ତବୋଦ୍ଧତିଃ ।
॥ କୋ ବା ସେତୁଗିରିଲଂ ସିନ୍ଧୋର୍ବିକାରକରଣଂ ପ୍ରତି ॥ ୭୦ ॥
ଉପନ୍ୟସନମନ୍ୟସ୍ୟ ଯଦର୍ଥସ୍ୟୋଦିତାଦୃତେ ।
ଜ୍ଞେୟଃ ସୋଽର୍ଥାନ୍ତରନ୍ୟାସଃ ପୂର୍ବାର୍ଥାନୁଗତୋ ଯଥା ॥ ୭୧ ॥

---

କଥାକୁ ଅପୂର୍ଣ୍ଣ ଛାଡ଼ି ଦେଇଛି । ବଚନର ଏ ଅପୂର୍ଣ୍ଣତା ଦ୍ୱାରା ପ୍ରବାସ ଗମନ ନିଷେଧ ଅଧିକ ତୀବ୍ର ହୋଇଯାଏ । ଯାହା କହିବାର ଥିଲା, ତାହା ନ କହି ଛାଡ଼ି ଦେବାରୁ ଏହା ବକ୍ଷ୍ୟମାଣ ବିଷୟକ ଆକ୍ଷେପ ।

ଅନୁରୂପ ଯଥା - ଏକୋଇର ବଳା ପିଚ ଶ୍ୱାନ ତୁ ଛାଡ଼ିଯାଉ ଦୂରେ
କି କହିବି ମୁହିଁ କହିବା ଲାଭ ।

ଏଥିରୁ ପ୍ରତୀତ ହୁଏ, ଆଶ୍ରୟ ହୀନ ଦୁର୍ବିସହ ଜୀବନ ଅପମୃତ୍ୟୁର ଶିକାର ହେବ । ଏହା ବକ୍ଷ୍ୟମାଣ ବିଷୟକ ଆକ୍ଷେପ ।

୭୦) **ଉକ୍ତବିଷୟ** — ନିଜ ବିକ୍ରମରେ ପୃଥିବୀକୁ ଅଧିକାର କରି ମଧ୍ୟ ତୁମେ ଗର୍ବିତ ନୁହଁ, ଏହା ବିଚିତ୍ର ଅଟେ । ସମୁଦ୍ରରେ ଶଙ୍କର ଉତ୍ପନ୍ନ କରିବାକୁ କେଉଁ କାରଣ ବା ସମର୍ଥ ହୋଇପାରେ ?

କାବ୍ୟାଳଂକାର ଗ୍ରନ୍ଥର ଅନ୍ୟତମ ବିଶିଷ୍ଟ ଭାଷ୍ୟକାର ଦେବେନ୍ଦ୍ର ନାଥ ଶର୍ମା ଏହି ଉଦାହରଣକୁ ଦେଖି କହନ୍ତି - "ବସ୍ତୁତଃ ଏହା ଉକ୍ତ ବିଷୟକ ଆକ୍ଷେପର ଉଦାହରଣ ନ ହୋଇ ଦୃଷ୍ଟାନ୍ତର ଉଦାହରଣ ହୋଇଯାଇଛି ।" କିନ୍ତୁ ଭାମହଙ୍କ ଉକ୍ତିକୁ ଗଭୀର ଭାବେ ଅନୁଧ୍ୟାନ କଲେ ମନେ ହୁଏ, ସେ କହିବାକୁ ଚାହାନ୍ତି - ହେ ରାଜନ୍ ! ବିଚଳନର କାରଣ "ସ୍ୱବିକ୍ରମାକ୍ରାନ୍ତଭୂବଃ" ଥିଲେ ମଧ୍ୟ ତୁମେ ଗମ୍ଭୀର । ଏହି କଥା କହି ଶେଷରେ ତାହାର ନିଷେଧ ଦ୍ୱିତୀୟାର୍ଦ୍ଧରେ କରାଯାଇଛି । କୌଣସି ପ୍ରତିବନ୍ଧକ ସମୁଦ୍ରର ସ୍ୱାଭାବିକ ସ୍ଥିତିକୁ ବଦଳାଇ ପାରେ ନାହିଁ । ତେଣୁ ଏହା ଉକ୍ତ ବିଷୟକ ଆକ୍ଷେପ ଅଳଂକାର ଅଟେ ।

ଉଦାହରଣ ସ୍ୱରୂପ --
ହେ ଦାରୁଣ ତୁମ ବିରହେ ତରୁଣୀ କାଟିବ କିପରି ଦିନ ।
କି ଲାଭ ଏକଥା ତୁମକୁ କହିଲେ ତୁମେ ତ କୃପଣ ଦୀନ । [ସ୍ୱକୃତ]

ଦୂତୀ ଦ୍ୱାରା ପ୍ରେମିକାର କ୍ଳେଶାଧିକ୍ୟ ପ୍ରକାଶ କରାଯିବା ପରେ "କହିଲେ କି ଲାଭ" ଦ୍ୱାରା ନିଷେଧ କରାଯାଇ ଥିବାରୁ ଏହା ଉକ୍ତ ବିଷୟକ ଆକ୍ଷେପ ଅଳଂକାର ।

ପରମାକ ନ ଖିମାନି ବ୍ୟବସ୍ଥୋର୍ଣ୍ଣ ତବ ବ୍ୟଥା ।
।। ସାଧୁ ବାସଧୁ ବାଽଽଗାମି ପୁଂସାମାନ୍ତୈବ ଶଂସତ ।। ୭୨ ।।

ହି ଶବ୍ଦେନାପି ହେତ୍ୱର୍ଥପ୍ରଥନାଦୁକ୍ତସିଦ୍ଧୟେ ।
ଅପ୍ୟମର୍ଥାନ୍ତର ନ୍ୟାସଃ ସୁତରାଂ ବ୍ୟଜ୍ୟତେ ଯଥା ।। ୭୩ ।।

---

୭୧] **ଅର୍ଥାନ୍ତରନ୍ୟାସ**— ଉକ୍ତ ଅର୍ଥରୁ ଅତିରିକ୍ତ କିନ୍ତୁ ତାହାର ଅନୁଗତ (ସମ୍ବନ୍ଧିତ) ଅର୍ଥାନ୍ତରର ଉପନ୍ୟସନ (ବର୍ଣ୍ଣନ) କୁ ଅର୍ଥାନ୍ତର ନ୍ୟାସ ଅଳଂକାର କୁହାଯାଏ ।

ସଂକ୍ଷେପରେ କହିଲେ - ଗୋଟିଏ କଥା କହି ତାହାର ସମର୍ଥନ ପାଇଁ ଅନ୍ୟ କଥା କହିଲେ ଅର୍ଥାନ୍ତରନ୍ୟାସ ଅଳଂକାର ହୁଏ । ଭାମହ ଅର୍ଥାନ୍ତର ନ୍ୟାସରେ ସାମାନ୍ୟ ବିଶେଷ ଭାବର ନିର୍ଦ୍ଦେଶ ଦେଇ ନାହାନ୍ତି । ପରବର୍ତ୍ତୀ ଆଳଂକାରିକମାନେ ସାମାନ୍ୟର ବିଶେଷ ଦ୍ୱାରା ଅଥବା ବିଶେଷରେ ସାମାନ୍ୟ ଦ୍ୱାରା ସମର୍ଥନରେ ଅର୍ଥାନ୍ତର ନ୍ୟାସ ହେବା ସ୍ପଷ୍ଟ ଶବ୍ଦରେ ବ୍ୟକ୍ତ କରିଛନ୍ତି ।

ଅନ୍ୟତ୍ର - ଉଦିତାତ୍ (କଥିତାତ୍) ଋତେ ଅନ୍ୟସ୍ୟ ଅର୍ଥସ୍ୟ ଯତ୍ ଉପନ୍ୟସନଂ ସ ପୂର୍ବାର୍ଥାନୁଗତଃ ଅର୍ଥାନ୍ତର ନ୍ୟାସଃ ଜ୍ଞେୟଃ । ଯଥା —

୭୨] **ଉଦାହରଣ**— ଭୟଂକର ଶତ୍ରୁସେନା ମଧ୍ୟରେ ପ୍ରବେଶ କରିବା ପାଇଁ ଇଚ୍ଛୁକ, ତୁମେ ଭୀତ ବା ସଂକୁଚିତ ନୁହ । ଆଗାମୀ ମଙ୍ଗଳ ବା ଅମଙ୍ଗଳକୁ ଶ୍ରେଷ୍ଠ ପୁରୁଷଙ୍କ ଅନ୍ତଃକରଣ ହିଁ ପ୍ରକାଶ କରିଦିଏ ।

ଏହି ଶ୍ଳୋକରେ କୌଣସି ରାଜାଙ୍କୁ ସ୍ତୁତି କରାଯାଇଛି । ତୁମେ ବିନା ସଂକୋଚରେ ଶତ୍ରୁସେନା ମଧ୍ୟରେ ପ୍ରବେଶ କରି ଯାଉଛ । କାରଣ ନିଜର ବିଜୟ ବିଷୟରେ ତୁମର ପୂର୍ଣ୍ଣ ଆସ୍ଥା ରହିଛି । ଶ୍ଳୋକର ଉତ୍ତରାର୍ଦ୍ଧ ପୂର୍ବାର୍ଦ୍ଧର ସମର୍ଥକ ହେତୁ ଆର୍ଥାନ୍ତର ନ୍ୟାସ ଅଟେ ।

ଯଥା - ମହତ ଜନର ଦୟା ସବୁଠାରେ ସମେ ହୁଏ ବିତରିତ ।
କଣ୍ଟିକମସ୍ତକୁ ନ କରଇ ତରୁ ସ୍ୱଚ୍ଛାୟା ଅପସାରିତ ।

ଦ୍ୱିତୀୟ ବାକ୍ୟକୁ ପ୍ରଥମବାକ୍ୟ ସମର୍ଥନ କରୁଥିବାରୁ ଅର୍ଥାନ୍ତର ନ୍ୟାସ ଅଳଂକାର ଅଟେ ।

୭୩) 'ହି' ଶବ୍ଦର ପ୍ରୟୋଗ ଦ୍ୱାରା ଏହି ଅର୍ଥାନ୍ତର ନ୍ୟାସ ସର୍ବଥା ସ୍ପଷ୍ଟ ହୋଇଯାଏ । ଯେହେତୁ କାରଣ ଭୂତ ଅର୍ଥର ନିର୍ଦ୍ଦେଶ କଥିତ ଅର୍ଥକୁ ସିଦ୍ଧ କରିଦିଏ ।

ହି [ହିଁ] କାରଣ ନିର୍ଦ୍ଦେଶ ସୂଚକ ଅବ୍ୟୟ । ସେହି ହି ପ୍ରୟୋଗରୁ ସ୍ପଷ୍ଟ ହୋଇଯାଏ, ଯେ ପରେ କୌଣସି କାରଣ କୁହାଯିବ । ଅର୍ଥାନ୍ତରନ୍ୟାସରେ ଗୋଟିଏ ବାକ୍ୟ ଅନ୍ୟ ବାକ୍ୟକୁ ସମର୍ଥନ କରେ । ପୂର୍ବ ବାକ୍ୟର ସିଦ୍ଧି ପାଇଁ 'ହି' କାରଣ ରୂପରେ

ବହନ୍ତି ଗିରୟୋ ମେଘାନଭ୍ୟୁପେତାନ୍ ଗୁରୂନପି ।
ଗରୀୟାନେବ ହି ଗୁରୂନ୍ ବିଭର୍ତ୍ତି ପ୍ରଣୟାଗତାନ୍ ॥ ୭୪ ॥

ଉପମାନବତୋଽର୍ଥସ୍ୟ ଯଦ୍ ବିଶେଷନିଦର୍ଶନମ୍ ।
ବ୍ୟତିରେକଂ ତମିଚ୍ଛନ୍ତି ବିଶେଷାପାଦନାଦ୍ ଯଥା ॥ ୭୫ ॥

ସିତାସିତେ ପକ୍ଷ୍ମବତୀ ନେତ୍ରେ ତେ ତାମ୍ରରାଜିନୀ ।
ଏକାନ୍ତଶୁଭ୍ରଶ୍ୟାମେ ତୁ ପୁଣ୍ଡରୀକାସିତୋତ୍ପଲେ ॥ ୭୬ ॥

---

ଉପସ୍ଥିତ ହୁଏ । କିନ୍ତୁ 'ହି' ରହିବା ଅନିବାର୍ଯ୍ୟ ନୁହେଁ । ରହିପାରେ ନ ରହିପାରେ । 'ହି' ନଥିବା ଉଦାହରଣ (୧-୭୧) । ହି ଥିବା ଉଦାହରଣ ପରବର୍ତ୍ତୀ କାରିକା । (୧-୭୪)

୭୪] ନିକଟକୁ ଆସିଥିବା ଓଜନିଆ ମେଘକୁ ମଧ୍ୟ ପର୍ବତ ବହନ କରେ । ସ୍ନେହ ବଶରେ ଆସିଥିବା ମହାନ୍ ଙ୍କୁ ମହାନ୍ ହିଁ ଧାରଣ କରନ୍ତି ।

ଦ୍ୱିତୀୟ ବାକ୍ୟ ପ୍ରଥମ ବାକ-ର ସମର୍ଥକ । ହି ପ୍ରୟୋଗରୁ ଅର୍ଥାନ୍ତର ନ୍ୟାସ । ଅନୁରୂପ ଯଥା—

ତରଙ୍ଗ ରଙ୍ଗରେ ଖେଳି ଖେଳି ମିଶେ ପାରାବାରେ ସ୍ରୋତସ୍ୱତୀ ।
ପ୍ରେମିକା ହିଁ ବୁଝେ ଆତ୍ମ ବିସର୍ଜନେ ପ୍ରେମର ସୁପରିଣତି । [ସ୍ୱକୃତ]

ଦ୍ୱିତୀୟ ବାକ୍ୟକୁ ପ୍ରଥମ ବାକ୍ୟର ସମର୍ଥନ ହିଁ ପ୍ରୟୋଗରୁ ସ୍ପଷ୍ଟ ହୁଏ । ତେଣୁ ଅର୍ଥାନ୍ତର ନ୍ୟାସ ।

୭୫] **ବ୍ୟତିରେକ**— ଉପମାନ ଯୁକ୍ତ ଅର୍ଥ (ଉପମେୟ) ର (ଉପମାନର ତୁଳନାରେ ଉପମେୟର) ବୈଶିଷ୍ଟ୍ୟ ପ୍ରଦର୍ଶନକୁ ବ୍ୟତିରେକ କହନ୍ତି । କାରଣ ସେଥିରେ ବିଶେଷତା ପ୍ରଦର୍ଶିତ ହୋଇଥାଏ ।

ବ୍ୟତିରେକ = ଆଧିକ୍ୟ । ସଂକ୍ଷେପରେ — ଉପମାନ ଅପେକ୍ଷା ଉପମେୟ ବୈଶିଷ୍ଟ୍ୟ ପ୍ରଦର୍ଶନ ବ୍ୟତିରେକ । କାରିକାର ପୂର୍ବାର୍ଦ୍ଧରେ ବ୍ୟତିରେକର ଲକ୍ଷଣ ଓ ଉତ୍ତରାର୍ଦ୍ଧ ରେ ନାମକରଣର କାରଣ ନିର୍ଦ୍ଦେଶ ।

୭୬) **ଉଦାହରଣ**— ଘଞ୍ଚ ପକ୍ଷ୍ମ ଯୁକ୍ତ ତୁମର ଅରୁଣ ବର୍ଣ୍ଣ ନେତ୍ର ଉଜ୍ଜ୍ୱଳ ଓ ଶ୍ୟାମ ମଧ୍ୟ । କିନ୍ତୁ ଶ୍ୱେତ କମଳ କେବଳ ଶ୍ୱେତ ଓ ନୀଳକମଳ କେବଳ ଶ୍ୟାମ ।

ଉକ୍ତ ପଦରେ ଉପମାନ ଭୂତ ଶ୍ୱେତ କମଳ ଓ ନୀଳ କମଳ ଠାରୁ ଉପମେୟ ରୂପ ନେତ୍ରର ରକ୍ତ, ଶ୍ୟାମ ଓ ଶ୍ୱେତ ରୂପ ବୈଶିଷ୍ଟ୍ୟ କଥନ ହେତୁ ବ୍ୟତିରେକ ଅଳଂକାର ଅଛି ।

କ୍ରିୟାୟାଃ ପ୍ରତିଷେଧେ ଯା ତତ୍‌ଫଳସ୍ୟ ବିଭାବନା ।
ଜ୍ଞେୟା ବିଭାବନୈବାସୌ ସମାଧୌ ସୁଲଭେ ସତି ॥ ୭୭ ॥
ଅପୀତମତ୍ତାଃ ଶିଖିନୋ ଦିଶୋଽନୁତ୍କଣ୍ଠିତାକୁଳାଃ ।
ନୀପୋଽବିଲିପ୍ତସୁରଭିରଭ୍ରସ୍ନାତକଲୁଷଂ ଜଲମ୍ ॥ ୭୮ ॥

---

ଅନୁରୂପ - ବିଶ୍ୱମୋହନ ରୂପ ଦୁଇ ବିଧୁ ମଦନ ନ ଶୋଭଇ ।
ବିହେ କଳଙ୍କ ଏକ ଅଂଗେ ବିଦେହ ଏକ ଶୋଭା ଶଙ୍କେ । (ବୈ-ବି,୧୧-୧୪,୧୫)

ଅଗସ୍ତିଙ୍କ ଅନୁଜ ସୁଦର୍ଶିଣ ନିଜ ଶିଷ୍ୟଙ୍କୁ ରାମଲକ୍ଷ୍ମଣଙ୍କ ପରିଚୟ ଦେଉଛନ୍ତି । ଏ ଦୁହେଁ ବିଶ୍ୱକୁ ମୋହି ପାରନ୍ତି । ଚନ୍ଦ୍ର ବା କନ୍ଦର୍ପ ଏହାଙ୍କ ସମାନ ନୁହନ୍ତି । କାରଣ ଚନ୍ଦ୍ରରେ ଅଛି କଳଙ୍କ ଓ ଶୋଭା ତୁଳନାରେ ଭୀତ ହୋଇ କନ୍ଦର୍ପ ଅନଙ୍ଗ ହୋଇଅଛି । ଉପମାନ ଭୂତ ଚନ୍ଦ୍ର ଓ କନ୍ଦର୍ପ ଠାରୁ ଉପମେୟ ରାମ-ଲକ୍ଷ୍ମଣଙ୍କ ଶୋଭାଧିକ୍ୟ ବର୍ଣ୍ଣିତ ହେବରୁ ବ୍ୟତିରେକ ।

୭୭] **ବିଭାବନା**— କାରଣ ରୂପ କ୍ରିୟାର ପ୍ରତିଷେଧ ହେବାପରେ ମଧ୍ୟ ତାହାର କାର୍ଯ୍ୟ-ରୂପ ଫଳରେ ଯେଉଁ ବିଭାବନା (କଳ୍ପନା) ଅଟେ, ତାହାକୁ ବିଭାବନା ଅଳଂକାର କହନ୍ତି । ଯଦି ତାହାର ସମାଧାନ ସୁଲଭ ଅଟେ ।

ଭାବନା = କଳ୍ପନା, ବିଭାବନା = ବିଶେଷ ପ୍ରକାର କଳ୍ପନା, ସାଧାରଣତଃ କାରଣ ଥିଲେ କାର୍ଯ୍ୟର ଉତ୍ପତ୍ତି ଘଟେ । କାରଣ ନଥାଇ କାର୍ଯ୍ୟର ଉତ୍ପତ୍ତିର ଅର୍ଥ ପ୍ରସିଦ୍ଧ ବା ସ୍ପଷ୍ଟ କାରଣର ଅଭାବ । କିନ୍ତୁ ସମାଧାନର ମାର୍ଗ ସୁଲଭ ହେବା ଦରକାର । ତେବେ ଯାଇ ଚମତ୍କାରିତା ସୃଷ୍ଟି ହେବ । ଚମତ୍କାର ସୃଷ୍ଟି ଅଳଂକାରର ପ୍ରାଣ ।

୭୮) **ଉଦାହରଣ**— ମଦ୍ୟ ପାନ ନକରି ମୟୂର ଉନ୍ମତ୍ତ, ଦିଗ ଗୁଡ଼ିକ ଅନୁତ୍କଣ୍ଠିତ ହୋଇ ମଧ୍ୟ ଆକୁଳ, କଦମ୍ବ (ଚନ୍ଦନରେ) ଅଲିପ୍ତ ହୋଇ ମଧ୍ୟ ସୁରଭିତ, ଜଳ ବିନା ପାତରେ ମଧ୍ୟ ମଳିନ ଅଟେ ।

ଉକ୍ତ ପଦରେ ମତ୍ତତା, ଆକୁଳତା, ସୁରଭିତତା ଓ ମଳିନତାର କାରଣ ନିଷେଧ କରାଯାଇଛି । ବର୍ଷା ଏକମାତ୍ର ଗୌଣ କାରଣ । ଏହା ସମାଧାନର ମାର୍ଗକୁ ସୁଗମ କରେ । ତେଣୁ ବିଭାବନା ।

ଅନୁରୂପ ଯଥା - ସେହି ଦିନୁ ବାଳା ଚନ୍ଦ୍ରା ନିଗମନ, ରୋଗ ବିନା ତନୁ ହୁଏ ଅବସନ୍ନ ।
ନିଦ୍ରା ବିନା ନେତ୍ର କରେ ନିମୀଳିତ । ଜଗତ ମଣ୍ଡଳେ ସତତ ଅଦ୍ଭୁତ
[ସଚ୍ଚିଦାନନ୍ଦ-ଉଦ୍ଧୃତ ଅଳଂକାର ଚନ୍ଦ୍ରିକା]

॥ ଯତ୍ରୋକ୍ତେ ଗମ୍ୟତେଽନ୍ୟୋଽର୍ଥସ୍ତତ୍‌ସମାନବିଶେଷଣଃ ।
ସା ସମାସୋକ୍ତିରୁଦ୍ଦିଷ୍ଟା ସଂକ୍ଷିପ୍ତାର୍ଥତୟା ଯଥା ॥ ୭୯ ॥

ସ୍କନ୍ଧବାନୃଜୁରବ୍ୟାଳଃ ସ୍ଥିରୋଽନେକମହାଫଳଃ ।
ଜାତସ୍ତରୁରଯଂ ଚୋଚ୍ଚୈଃ ପାତିତଶ୍ଚ ନଭସ୍ୱତା ॥ ୮୦ ॥

---

ଏଠାରେ ରୋଗ, ନିଦ୍ରାର କାରଣ ନିଷେଧ କରାଯାଇ ଶରୀରର ଅବସାଦ ଓ ନେତ୍ରର ନିମୀଳନ ରୂପ କାର୍ଯ୍ୟ ବର୍ଣ୍ଣିତ । ପ୍ରିୟ ବିଚ୍ଛେଦ ଗୌଣ, ସୁଲଭ କାରଣ ଅଟେ । ତେଣୁ ବିଭାବନା ଅଳଂକାର ।

୭୯) **ସମାସୋକ୍ତି** — ଯେଉଁଠି ଗୋଟିଏ ବସ୍ତୁର କଥନରୁ ତତ୍ ସମାନ ବିଶେଷଣ ଯୁକ୍ତ ଅନ୍ୟ ପଦାର୍ଥର ପ୍ରତୀତି ଘଟେ, ସଂକ୍ଷିପ୍ତାର୍ଥକ ହେତୁ ତାହାକୁ ସମାସୋକ୍ତି କୁହାଯାଏ ।

ଏହି କାରିକାରେ ଏକା ଧାଡିରେ ଲକ୍ଷଣ, ହେତୁ, ନାମ ଓ ବ୍ୟୁତ୍ପତ୍ତି ପ୍ରଦର୍ଶିତ ।

୮୦) **ଉଦାହରଣ** — ସ୍କନ୍ଧ ଯୁକ୍ତ, ସରଳ, ସର୍ପଶୂନ୍ୟ, ଦୃଢ଼, ଅନେକ ମହାନ୍ ଫଳ ଯୁକ୍ତ ଏହି ବୃକ୍ଷ ଉନ୍ନତ ହୋଇଥିଲା । କିନ୍ତୁ ବାୟୁ ଦ୍ୱାରା ପତିତ ହେଲା ।

ପ୍ରସ୍ତୁତ ବୃକ୍ଷର ବର୍ଣ୍ଣନାରୁ ଦୁର୍ଭାଗ୍ୟ ପୀଡ଼ିତ ମହାପୁରୁଷର ପ୍ରତୀତି ହୁଏ । ବିଶେଷଣ ଗୁଡ଼ିକ ଉଭୟଙ୍କ ପାଇଁ ପ୍ରଯୋଜ୍ୟ । ଯଥା - ସ୍କନ୍ଧବାନ୍ = ଉନ୍ନତ ସ୍କନ୍ଧ ଯୁକ୍ତ, ଋଜୁ = ସଳଖ, ସରଳ, ଅବ୍ୟାଳ = ସର୍ପରହିତ, ଦୁର୍ଜନ ରହିତ, ସ୍ଥିର = ଦୃଢ଼, ଅଚଞ୍ଚଳ, ଅନେକ ମହାଫଳଯୁକ୍ତ = ବହୁ ବିରାଟ ଫଳଯୁକ୍ତ, ଅନେକ ମହାନ୍ ଅଭିଳାଷ ପୂରକ, ଉଚ୍ଚ = ଲମ୍ବା, ବିଶାଳ ହୃଦୟ, ବାୟୁ ଦ୍ୱାରା = ପବନ ଦ୍ୱାରା, ଅସହିଷ୍ଣୁ ଦୁଷ୍ଟ ଦ୍ୱାରା, ଅତଏବ ସମାସୋକ୍ତି । ଭାମହ କେବଳ ବିଶେଷଣ ସାମ୍ୟରେ ସମାସୋକ୍ତି ସ୍ୱୀକାର କରିଛନ୍ତି । କିନ୍ତୁ ପରବର୍ତ୍ତୀ କାଳରେ ବିଶେଷଣ, କାର୍ଯ୍ୟ ଓ ଲିଙ୍ଗ ସାମ୍ୟ ମଧ୍ୟ ସମାସୋକ୍ତିରେ ସ୍ୱୀକୃତି ଲାଭ କରିଛି ।

ଯଥା - ସମାସୋକ୍ତିଃ ସମୈର୍ଯତ୍ର କାର୍ଯ୍ୟଲିଂଗବିଶେଷଣୈଃ
ବ୍ୟବହାରସମାରୋପଃ ପ୍ରସ୍ତୁତେଽନ୍ୟସ୍ୟ ବସ୍ତୁନଃ (ସାହିତ୍ୟ ଦର୍ପଣ)

ଅନୁରୂପ ଉଦାହରଣ - ଦେଖ ପ୍ରିୟେ ରକ୍ତ ଉଦ୍ଭୂତ କିରଣ
ପୌରନ୍ଦରୀ ମୁଖ କରୁଛି ଚୁମ୍ବନ ।

ଚନ୍ଦ୍ରୋଦୟ ବର୍ଣ୍ଣନାରୁ ଧୂର୍ତ୍ତର ବ୍ୟବହାର ପ୍ରତୀତ ହୁଏ । ଏଥିରେ ଥିବା ରକ୍ତ ବିଶେଷଣଟି ଅନୁରାଗକୁ ବ୍ୟକ୍ତ କରେ । ପୁଲିଂଗ ଚନ୍ଦ୍ର-ଧୂର୍ତ୍ତ ପୌରନ୍ଦରୀ [ପୂର୍ବଦିଗନାରୀ] (ପରନାରୀ, ମୁଖ = ଦିଗର ଅଂଶ, ମୁହଁ, ଚୁମ୍ବନ, ଆଦି ଧୂର୍ତ୍ତ ବ୍ୟବହାର ପ୍ରତୀତିରେ ସହାୟତା କରେ ।

ନିମିତ୍ତତୋ ବଚୋ ଯତ୍ତୁ ଲୋକାତିକ୍ରାନ୍ତ ଗୋଚରମ୍ ।
ମନ୍ୟନ୍ତେଽତିଶୟୋକ୍ତିଂ ତାମଲଂକାରତୟା ଯଥା ॥ ୮୧ ॥
ସ୍ୱପୁଷ୍ପଚ୍ଛବିହାରିଣ୍ୟା ଚନ୍ଦ୍ରଭାସା ତିରୋହିତାଃ ।
ଅନ୍ୱମୀୟନ୍ତ ଭୃଙ୍ଗାଳିବାଚା ସପ୍ତଚ୍ଛଦଦ୍ରୁମାଃ ॥ ୮୨ ॥
ଅପାଂ ଯଦି ତ୍ୱକ୍ ଶିଥିଳା ଚ୍ୟୁତା ସ୍ୟାତ୍ଫଣିନାମିବ ।
ତଦା ଶୁକ୍ଳାଂଶୁକାନି ସ୍ୟୁରଙ୍ଗେଷ୍ୱପ୍ସି ଯୋଷିତାମ୍ ॥ ୮୩ ॥

---

୮୧) **ଅତିଶୟୋକ୍ତି** — କୌଣସି କାରଣରୁ ( କୌଣସି ବିଶିଷ୍ଟ ଅର୍ଥ ପ୍ରକାଶନ ଇଚ୍ଛାରେ ) ଯାହା ଦ୍ୱାରା ବାଣୀର ଲୋକୋତ୍ତର [ଅଲୌକିକ] ଅର୍ଥ ପ୍ରକାଶିତ ହୁଏ; ତାହାକୁ ଅତିଶୟୋକ୍ତି କୁହାଯାଏ ।

୮୨) **ଉଦାହରଣ** — ନିଜ ପୁଷ୍ପର କାନ୍ତି ହରଣକାରୀ ଚନ୍ଦ୍ରମାର ପ୍ରଭାବରେ ତିରୋହିତ ସପ୍ତଚ୍ଛଦ ବୃକ୍ଷ ଭ୍ରମରର ଗୁଂଜନରୁ ଅନୁମିତ ହୁଏ ।

ସପ୍ତଚ୍ଛଦ ବୃକ୍ଷ ଓ ଚନ୍ଦ୍ରିକା ଏକାକାର ଅଛି । ଭ୍ରମର ଗୁଂଜନରୁ ବୃକ୍ଷର ସତ୍ତା ବୋଧହୁଏ । ବାସ୍ତବରେ ସପ୍ତଚ୍ଛଦ ବୃକ୍ଷ ଲୁଚି ଯାଇନାହିଁ । ତାହାର ଅସାଧାରଣ ଉଜ୍ଜ୍ୱଳତା ବର୍ଣ୍ଣନ ଅଭିପ୍ରାୟ । ଅତଏବ ଅତିଶୟୋକ୍ତି ।

୮୩) **ଦ୍ୱିତୀୟ ଉଦାହରଣ** — ଯଦି ଜଳର ତ୍ୱକ୍ ଥାଆନ୍ତା ଓ ସର୍ପର ନିର୍ମୋକ ପରି ଶିଥିଳ ହୋଇ ଯାଉଥାନ୍ତା, ତେବେ ଜଳରେ କ୍ରୀଡ଼ାରତା ନାରୀଙ୍କ ସୂକ୍ଷ୍ମ ବସ୍ତ୍ର ହୋଇ ପାରନ୍ତା ।

ଜଳକେଳିରତା ରମଣୀଙ୍କ ବର୍ଣ୍ଣନା । ଯଦି କଳ୍ପନା କରିଯାଏ, ଜଳର ଛାଲି ଥାଆନ୍ତା, ଓ ସାପଛାଲି ପରି ଅଲଗା ହେଉଥାନ୍ତା, ତେବେ ଅତ୍ୟନ୍ତ ସୂକ୍ଷ୍ମ ଓ ଉଜ୍ଜ୍ୱଳ ଦିଶନ୍ତା । ସେହି ଛାଲି ଜଳରେ କ୍ରୀଡ଼ା କରୁଥିବା ରମଣୀଙ୍କ ସୂକ୍ଷ୍ମବସ୍ତ୍ର ସହିତ ସମାନ ହୁଅନ୍ତା । ଜଳର ତ୍ୱକ୍ ହେବା ଓ ସାପ ଛାଲି ପରି ଖସିଯିବା ଅସମ୍ଭବ । ଏହି ଲୋକୋତ୍ତରତା ଅତିଶୟୋକ୍ତି ଅଛି ।

ଅନୁରୂପ - ଦିଶୁଥିଲା ଶିଶୁ ହରିଣାକ୍ଷୀ ରତ୍ନ ଭୂଷଣେ କିବା ମଂଜୁଳା ।
ଭୁଲ ତାର ସିନା ହୁଅନ୍ତା ଚଳିତ ଲତାରେ ଫୁଟିଲେ ଫୁଲ । [ମଯାଥ]

ଯଦି ବଜୁଲୀ ଲତାରେ ଫୁଲ ଫୁଟନ୍ତା, ତେବେ ସେହି ଲତା ରତ୍ନ ଭୂଷଣ ଧାରିଣୀ ଲଳିତାର ସମାନ ହୁଅନ୍ତା, ଏହି ଲୋକୋତ୍ତରତା ହେତୁ ଅତିଶୟୋକ୍ତି ।

ଇତ୍ୟେବମାଦରୁଦିତା ଗୁଣାତିଶୟଯୋଗତଃ ।
ସର୍ବୈବାତିଶୟୋକ୍ତିସ୍ତୁ ତର୍କୟେତ୍ତାଂ ଯଥାଗମମ୍ ॥ ୮୪ ॥
ସୈଷା ସର୍ବୈବ ବକ୍ରୋକ୍ତିରନୟାର୍ଥୋ ବିଭାବ୍ୟତେ ।
ଯତ୍ନୋଽସ୍ୟାଂ କବିନା କାର୍ଯ୍ୟଃ କୋଽଲଂକାରୋଽନୟା ବିନା ॥ ୮୫ ॥

---

୮୪) ପୂର୍ବୋକ୍ତ ସ୍ଥଳରେ ସମସ୍ତ ଅତିଶୟୋକ୍ତି ଗୁଣାତିଶୟ ଯୋଗରେ ସମ୍ପନ୍ନ ହୁଏ । ଶାସ୍ତ୍ର ଅନୁସାରେ ସେ ସମସ୍ତର କଳ୍ପନା କରିବା ବିଧେୟ ।

ପୂର୍ବୋକ୍ତ ଦୁଇଗୋଟି ଉଦାହରଣରୁ ସ୍ପଷ୍ଟ ହୁଏ ଯେ, କୌଣସି ନା କୌଣସି ଗୁଣର ଅତିଶୟ ବର୍ଣ୍ଣନା ଦ୍ୱାରା ଅତିଶୟୋକ୍ତି ଅଳଂକାର ହୁଏ । ଏହି ଗୁଣାତିଶୟ ବର୍ଣ୍ଣନା ଆଧାରରେ ଅତିଶୟୋକ୍ତିର ଅନ୍ୟରୂପ ମଧ୍ୟ କଳ୍ପନା କରାଯାଇପାରେ । ଭାମହ ଏକ ପ୍ରକାର ଅତିଶୟୋକ୍ତି ପ୍ରଦର୍ଶନ କରିଥିଲେ ମଧ୍ୟ ଅନ୍ୟ ରୂପର କଳ୍ପନା ପାଇଁ ସୂଚନା ଦେଇଛନ୍ତି । ପରବର୍ତ୍ତୀ କାଳରେ ଅଭେଦରେ ଭେଦ, ସମ୍ବନ୍ଧରେ ଅସମ୍ବନ୍ଧ, ଅସମ୍ବନ୍ଧରେ ସମ୍ବନ୍ଧ, କାର୍ଯ୍ୟ କାରଣର ବିପର୍ଯ୍ୟୟ ଆଦିରେ ଅତିଶୟୋକ୍ତିର ସ୍ୱରୂପ ପ୍ରଦର୍ଶିତ ।

୮୫) ବକ୍ରୋକ୍ତି— ଏହି ଅତିଶୟୋକ୍ତି ହିଁ ସମସ୍ତ ବକ୍ରୋକ୍ତି (ଅଳଂକାର ପ୍ରପଞ୍ଚ) ଅଟେ । ଏହା ଦ୍ୱାରା ଅର୍ଥ ରମଣୀୟ ହୁଏ । କବି ଏଥିପାଇଁ ପ୍ରୟାସ କରିବା ଉଚିତ । କାରଣ ଏହା ବ୍ୟତୀତ କୌଣସି ଅଳଂକାର ସମ୍ଭବ କି ?

ଏଠାରେ ବକ୍ରୋକ୍ତି ଅଳଂକାର ମାତ୍ରର ଉପଲକ୍ଷଣ । ସମସ୍ତ ଅଳଂକାରର ଅନ୍ତ-ସ୍ତଳରେ ଅତିଶୟୋକ୍ତି ବର୍ତ୍ତମାନ ଥାଏ । ତାହା ଦ୍ୱାରା ହିଁ ଚମତ୍କାରିତା ସୃଷ୍ଟି ହୁଏ ଓ ଅଳଂକାର ନିଷ୍ପନ୍ନ ହୁଏ । ପରେ ଅତିଶୟୋକ୍ତିର ମହତ୍ତ୍ୱ ଆନନ୍ଦ ବର୍ଦ୍ଧନ ଓ ମମ୍ମଟ ମଧ୍ୟ ସ୍ୱୀକାର କରିଛନ୍ତି । "ପ୍ରଥମଂ ତାବଦତିଶୟୋକ୍ତିଗର୍ଭତା ସର୍ବାଲଂକାରେଷୁ ଶକ୍ୟ କ୍ରିୟା [ଧ୍ୱନ୍ୟାଲୋକ] "ସର୍ବତ୍ର ଏବଂ ବିଧବିଷୟେଽତିଶୟୋକ୍ତିରେବ ପ୍ରାଣତ୍ୱେନାବତିଷ୍ଠତେ ତାଂ ବିନା ପ୍ରାୟେଣାଲଂକାରତ୍ୱାଯୋଗାତ୍ (କାବ୍ୟ ପ୍ରକାଶ) ଏହି କାରିକାକୁ କେତେକ ଆଲୋଚକ ଅନ୍ୟ ସ୍ଥଳରେ ବ୍ୟାଖ୍ୟା କରିଛନ୍ତି । "ଏ ସମସ୍ତ ଅଳଂକାର ବକ୍ରୋକ୍ତି ଦ୍ୱାରା ହିଁ ଅର୍ଥର ବିଭାବନ ଘଟାନ୍ତି । ଏ ଦିଗରେ କବିଙ୍କ ପ୍ରୟାସ ରହିବା ଉଚିତ । ଏହି ବକ୍ରୋକ୍ତି ବ୍ୟତୀତ କୌଣସି ଅଳଂକାର ସମ୍ଭବ ନୁହେ ।" ପୁଣି କହନ୍ତି — "ଭାମହଙ୍କ ଦୃଷ୍ଟିରେ ଅତିଶୟୋକ୍ତି ଏକ ଅଳଂକାର ମାତ୍ର । ଅଳଂକାରର ମୂଳ ନୁହେ । ବକ୍ରୋକ୍ତି ହିଁ ସମସ୍ତ ଅଳଂକାରର ମୂଳ ଭୂତ ତତ୍ତ୍ୱ, ଏହା ସ୍ପଷ୍ଟ ଶବ୍ଦରେ ସ୍ୱୀକୃତ ।" କିନ୍ତୁ ଏ ମତ ଗ୍ରାହ୍ୟ ମନେ ହୁଏ ନାହିଁ । କାରଣ– ଯଦି ବକ୍ରୋକ୍ତି ସମସ୍ତ ଅଳଂକାରର ମୂଳ ତେବେ ଅଳଂକାର ଆଲୋଚନାର ପ୍ରାରମ୍ଭରେ ବା ଶେଷରେ ଏହି କାରିକାଟି ଉଲ୍ଲିଖିତ ହୋଇ-ଥାନ୍ତା । କିନ୍ତୁ ଅତିଶୟୋକ୍ତି ଅଳଂକାର ନିରୂପଣ ପରେ ଉକ୍ତ ହୋଇଥିବାରୁ ଅତିଶୟୋକ୍ତି

ହେତୁଶ୍ଚ ସୂକ୍ଷ୍ମୋ ଲେଶୋଽଥ ନାଲଂକାରତୟା ମତଃ ।
ସମୁଦାୟାଭିଧାନସ୍ୟ ବକ୍ରୋକ୍ତ୍ୟନଭିଧାନତଃ ॥ ୮୬ ॥
ଗତୋଽସ୍ତମର୍କୋ ଭାତୀନ୍ଦୁର୍ଯାନ୍ତି ବାସାୟ ପକ୍ଷିଣଃ ।
ଇତ୍ୟେବମାଦି କିଂ କାବ୍ୟଂ ବାର୍ତ୍ତାମେନାଂ ପ୍ରଚକ୍ଷତେ ॥ ୮୭ ॥
ଯଥାସଂଖ୍ୟମଥୋତ୍ପ୍ରେକ୍ଷାମଲଂକାରଦ୍ୱୟଂ ବିଦୁଃ ।
ସଂଖ୍ୟାନମିତି ମେଧାବୀ ନୋତ୍ପ୍ରେକ୍ଷାଭିହିତା କ୍ୱଚିତ୍ ॥ ୮୮ ॥

---

ହିଁ ସମସ୍ତ ଅଲଙ୍କାରର ମୂଳ ଓ ଏହା ହିଁ ବକ୍ରୋକ୍ତି । ପୁଣି ବକ୍ରୋକ୍ତିର ସ୍ୱରୂପ ସ୍ପଷ୍ଟ ଶବ୍ଦରେ ଭାମହ ବ୍ୟକ୍ତ କରିନାହାନ୍ତି ।

୮୬) ହେତୁ ସୂକ୍ଷ୍ମ ଲେଶର ଖଣ୍ଡନ:— ହେତୁ ସୂକ୍ଷ୍ମ ଓ ଲେଶ ଅଳଙ୍କାର ରୂପରେ ଗ୍ରହଣୀୟ ନୁହେଁ । କାରଣ ଏ ସମସ୍ତ ବକ୍ରୋକ୍ତି ମୂଳକ ନୁହନ୍ତି । କେବଳ ସମୁହ ମାତ୍ରର ଅଭିଧାୟକ ଅଟନ୍ତି ।

ଭାମହଙ୍କ ପୂର୍ବରୁ ଏବଂ ପରେ ମଧ୍ୟ ହେତୁ, ସୂକ୍ଷ୍ମ ଓ ଲେଶ ଅଳଙ୍କାର ରୂପେ ସ୍ୱୀକୃତ ହୋଇଛି । କିନ୍ତୁ ବକ୍ରୋକ୍ତି ପ୍ରିୟ ଭାମହ ଏ ଗୁଡ଼ିକୁ ଅଳଙ୍କାରର ମର୍ଯ୍ୟାଦା ଦେଇ ନାହାନ୍ତି ।

୮୭] ବକ୍ରୋକ୍ତିହୀନ ଉକ୍ତି ବାର୍ତ୍ତା— ସୂର୍ଯ୍ୟ ଅସ୍ତହୋଇଗଲେ । ଚନ୍ଦ୍ର ଶୋଭା ପାଏ । ପକ୍ଷୀମାନେ ବସାକୁ ଫେରୁଛନ୍ତି । ଏ ଧରଣର ଉକ୍ତି କ'ଣ କାବ୍ୟ ? ଏହାକୁ ବାର୍ତ୍ତା କୁହାଯାଏ ।

ଏଠାରେ ବାର୍ତ୍ତା [ବୃତ୍ତାନ୍ତ] ଶବ୍ଦ ଚମତ୍କାର ଶୂନ୍ୟ ବଚନ ଅର୍ଥରେ ପ୍ରଯୁକ୍ତ । କାବ୍ୟତ୍ୱ ପାଇଁ ବକ୍ରୋକ୍ତି ଅନିବାର୍ଯ୍ୟ ।

୮୮] କେତେକ ବିଦ୍ୱାନ ଯଥାସଂଖ୍ୟ ଓ ଉତ୍ପ୍ରେକ୍ଷା ନାମକ ଅନ୍ୟ ଦୁଇଗୋଟି ଅଳଙ୍କାର ସ୍ୱୀକାର କରନ୍ତି । ମେଧାବୀ ଯଥାସଂଖ୍ୟାକୁ ହିଁ ସଂଖ୍ୟାନ କହନ୍ତି । ଉତ୍ପ୍ରେକ୍ଷା ବିଷୟରେ ସେ କୁତ୍ରାପି ଉଲ୍ଲେଖ କରି ନାହାନ୍ତି ।

ମେଧାବୀଙ୍କ ନାମ ଭାମହ ଏକାଧିକ ବାର ଉଲ୍ଲେଖ କରିଛନ୍ତି । ବୋଧହୁଏ ସେ ଥିଲେ ମାନ୍ୟ କାବ୍ୟ ଶାସ୍ତ୍ର ପ୍ରଣେତା । କିନ୍ତୁ ତାଙ୍କର ଗ୍ରନ୍ଥ ଆଜି ଦୁର୍ଲଭ । ଯଥାସଂଖ୍ୟକୁ ବୋଧହୁଏ ମେଧାବୀ ସଂଖ୍ୟାନ କହୁଥିବେ । ଯଥାସଂଖ୍ୟର କ୍ରମଶଃ ଗଣନା, ସଂଖ୍ୟାନର ଅର୍ଥ କେବଳ ଗଣନା ।

ଭୂୟସାମୁ ପଦଷ୍ଟାନାମର୍ଥାନାମସଧର୍ମଣାମ୍ ।
କ୍ରମଶୋ ଯୋଽନୁନିର୍ଦ୍ଦେଶୋ ଯଥାସଂଖ୍ୟଂ ତଦୁଚ୍ୟତେ ॥ ୮୯ ॥
ଧ୍ରଚେନ୍ଦ୍ର ଭୃଂଗମାତଙ୍ଗ ପୁଂସ୍କୋକିଳକଳାପିନଃ ।
ବକ୍ତ୍ରକାନ୍ତୀକ୍ଷଣଗଷ୍ଟବାଣୀ ବାଲୈସ୍ତ୍ୱୟା ଜିତାଃ ॥ ୯୦ ॥
ଅବିବକ୍ଷିତସାମାନ୍ୟା କିଂଚିଚ୍ଚୋପମୟା ସହ ।
ଅତଦ୍ଗୁଣକ୍ରିୟା ଯୋଗାଦୁତ୍ପ୍ରେକ୍ଷାତିଶୟାନ୍ୱିତା ॥ ୯୧ ॥

---

ପରେ ଦଣ୍ଡୀ ଯଥାସଂଖ୍ୟାର ଅନ୍ୟ ଦୁଇଟି ନାମ ଦେଇଛନ୍ତି - ସଂଖ୍ୟାନ ଓ କ୍ରମ ।-ଉଦ୍ଦିଷ୍ଟାନାଂ ପଦାର୍ଥାନାମନୁଦ୍ଦେଶୋ ଯଥାକ୍ରମମ୍ ।

ଯଥାସଂଖ୍ୟାମିତି ପ୍ରୋକ୍ତଂ ସଂଖ୍ୟାନଂ କ୍ରମ ଇତ୍ୟପି । (କାବ୍ୟାଦର୍ଶ)

ତେବେ ସଂଖ୍ୟାନ ଅପେକ୍ଷା ଯଥାସଂଖ୍ୟ ନାମର ଯାଥାର୍ଥ୍ୟ ଥିବାରୁ ଏ ନାମଟି ପ୍ରସିଦ୍ଧ ହୋଇ ଯାଇଛି ।

୮୯) ଯଥାସଂଖ୍ୟ — ଭିନ୍ନ ଧର୍ମ ବିଶିଷ୍ଟ ଅନେକ ନିର୍ଦ୍ଦିଷ୍ଟ ଅର୍ଥର କ୍ରମଶଃ ଅନୁନିର୍ଦ୍ଦେଶକୁ ଯଥାସଂଖ୍ୟ ଅଳଙ୍କାର କୁହାଯାଏ ।

ଏଥିରେ ଗୋଟିଏ କ୍ରମରେ କେତେ ପଦାର୍ଥ ପ୍ରଥମେ କୁହାଯାଇଥାଏ । ପରେ ସେହି କ୍ରମରେ କଥିତ ଅନ୍ୟ ପଦାର୍ଥ ସହିତ ତାହାର ଅନ୍ୱୟ କରାଯାଏ ।

୯୦) ଉଦାହରଣ— ହେ ବାଳକେ ; ତୁମେ କମଳ, ଚନ୍ଦ୍ର, ଭ୍ରମର, ଗଜ, କୋକିଳ ଓ ମୟୂରକୁ ମୁଖ, କାନ୍ତି, ନେତ୍ର ଗତି, ବାଣୀ ତଥା କେଶପାଶ ଦ୍ୱାରା ଜୟ କରିଅଛ ।

ଏଥିରେ କ୍ରମଶଃ କମଳ ସହିତ ମୁଖ, ଚନ୍ଦ୍ର ସହିତ କାନ୍ତି ଇତ୍ୟାଦିର ଅନ୍ୱୟ ହୁଏ । କ୍ରମ ଅନୁସାରେ ଗଣନା ହୋଇଥିବାରୁ ଯଥାସଂଖ୍ୟ ଅଳଙ୍କାର ଅଟେ ।

ଅନୁରୂପ ଯଥା - ଦଶରଥ ଶେଷ ଏହି କାଳେ —

ବିରଞ୍ଚି ନାରଦ ତୁମ୍ବୁରୁ ଲଙ୍କାରେ ସେବା ବିରଚିବାକୁ ଅସିଲେ ସେ ବେଗରେ
ବେଦ ବୀଣା ମୃଦଙ୍ଗ ଆରମ୍ଭଣେ, ବୋଲେ ଦ୍ୱାସ୍ଥ କେଉଁ ବଡ଼ପଣେ ।
ବିଷଣ୍ଣ ନକ୍ସୀ-ହୃଅ କଳକଳ ରବ ସକଳେ ମଉନେ ହେ ବିବୁଧେ ।

(ବୈ-ବି ୩୫ ୨୨ ୬୩)

ଏଠାରେ ବ୍ରହ୍ମା ବେଦପାଠରେ, ନାରଦ ବୀଣାବାଦନରେ ଓ ତୁମ୍ବୁରୁ ସ୍ତୁତି ପାଠଦ୍ୱାରା ରାବଣର ସେବା କରିବା ବିଷୟଟି କ୍ରମଶଃ ଉକ୍ତହେବାରୁ ଯଥାସଂଖ୍ୟ ଅଳଙ୍କାର ।

୯୧ ଉତ୍ପ୍ରେକ୍ଷା — ସାଦୃଶ୍ୟ ଅବିବକ୍ଷିତ, କିଂଚିତ ଉପମା ଯୁକ୍ତ, ଅସିଦ୍ଧ(କଳ୍ପିତ) ଗୁଣ ଓ କ୍ରିୟାଯୁକ୍ତ ତଥା ଅତିଶୟରେ ଅନ୍ୱିତ ହେଲେ ଉତ୍ପ୍ରେକ୍ଷା ଅଳଙ୍କାର ହୁଏ ।

କିଂଶୁକବ୍ୟପଦେଶେନ ତରୁମାରୁହ୍ୟ ସର୍ବତଃ ।
ଦଗ୍ଧାଦଗ୍ଧମରଣ୍ୟାନ୍ୟାଃ ପଶ୍ୟତୀବ ବିଭାବସୁଃ ॥ ୯୨ ॥
ସ୍ୱଭାବୋକ୍ତିରଲଂକାର ଇତି କେଚିତପ୍ରଚକ୍ଷତେ ।
ଅର୍ଥସ୍ୟ ତଦବସ୍ଥତ୍ୱଂ ସ୍ୱଭାବୋଽଭିହିତୋ ଯଥା ॥ ୯୩ ॥

---

ଭାମହଙ୍କ ଅନୁସାରେ ଉତପ୍ରେକ୍ଷାରେ ଏତେଗୋଟି କଥା ଅପେକ୍ଷିତ ।

(କ) ସାଦୃଶ୍ୟର ବିବକ୍ଷା ହୋଇ ନ ଥିବ । ଅର୍ଥାତ ଉତର ଧ୍ୟାନ ସମ୍ଭାବନା ଉପରେ ଥିବ

(ଖ) ତଥାପି ଉପମାର ସ୍ପର୍ଶ ଥିବ । ଉପମା ପରି ଉତ୍ପ୍ରେକ୍ଷାରେ ଇବାଦି ଶବ୍ଦର ପ୍ରୟୋଗ ହୋଇଥିବ ।

(ଗ) ଉପମେୟରେ ଗୁଣ ବା କ୍ରିୟାର ସମ୍ଭାବନା ଥିବ ।

(ଘ) ଅତିଶୟୋକ୍ତି ଯୁକ୍ତ ହୋଇଥିବ ।

ଭାମହଙ୍କ ଉତ୍ପ୍ରେକ୍ଷାର ଏ ସମସ୍ତ ଲକ୍ଷଣ ପରବର୍ତ୍ତୀ କାବ୍ୟତତ୍ତ୍ୱଜ୍ଞ ସମ୍ଭାବନା ଧାରା ବ୍ୟକ୍ତ କରିଛନ୍ତି ।

୯୨) **ଉଦାହରଣ**—ପଳାଶ କୁସୁମ ଛଳରେ ବୃକ୍ଷ ଆରୋହଣ କରି ଅଗ୍ନି ବିଶାଳ ବନର ଦଗ୍ଧ ଓ ଅଦଗ୍ଧ ସମସ୍ତ ପ୍ରଦେଶକୁ ବୋଧହୁଏ ଦେଖୁଅଛି ।

ବସନ୍ତ ଋତୁ ବର୍ଣ୍ଣନା । ବିକଶିତ ରକ୍ତବର୍ଣ୍ଣ ପଳାଶ ପୁଷ୍ପରେ ଅଗ୍ନିର ଆରୋହଣରୂପ କ୍ରିୟା କଳ୍ପିତ । ଦଗ୍ଧ ଓ ଅଦଗ୍ଧବନ ପ୍ରଦେଶ ଦର୍ଶନ ଅତିଶୟୋକ୍ତି ଯୁକ୍ତ । ଦେଖୁଅଛି କି ? ଶବ୍ଦରେ ସମ୍ଭାବନା ରହିଛି । ଉପମେୟ ପଳାଶ ଓ ଉପମାନ ଅଗ୍ନିର ସାମାନ୍ୟଧର୍ମ ରକ୍ତିମା ଅବିବକ୍ଷିତ । ଅତଏବ ଉତପ୍ରେକ୍ଷାଅଳଙ୍କାର ବ୍ୟପଦେଶ ପ୍ରଯୁକ୍ତ ହେଉ ଏହାକୁ ଶୁଦ୍ଧ ଉତ୍ପ୍ରେକ୍ଷା ଅପେକ୍ଷା ସାପହ୍ନବ ଉତ୍ପ୍ରେକ୍ଷା କହିବା ସଙ୍ଗତ ।

ଅନୁରୂପ-ବସିଲେ ତହିରେ ଅତି ମନୋହର ସ୍ୱର୍ଣ୍ଣମୟ ସିଂହାସନେ ।

ଆଚମ୍ବିତେ ଅବା କମଳ ସକଳ ଫୁଟିଗଲେ ପଦ୍ମବନେ (ଇନ୍ଦୁମତୀ)

ସିଂହାସନକୁ ପଦ୍ମବନ, ରାଜାମାନଙ୍କୁ କମଳ କହିବାରେ ଉପମାର ସ୍ପର୍ଶ ଅଛି । ରାଜାଙ୍କୁ ବିକଶିତ କମଳ କହିବା କଳ୍ପିତ ଓ ଅତିଶୟୋକ୍ତି ପୂର୍ଣ୍ଣ । ଅବା ସମ୍ଭାବନା ବ୍ୟକ୍ତ କରେ କେଣ୍ଟୁ ଉତ୍ପ୍ରେକ୍ଷା ।

ପରବର୍ତ୍ତୀ ପର୍ଯ୍ୟାୟରେ ଉପମେୟରେ ଉପମାନର ସମ୍ଭାବନା ଅର୍ଥାତ ଅତଦ୍ରୂପକୁ ତଦ୍ ରୂପ ଭାବିବାକୁ ଉତ୍ପ୍ରେକ୍ଷା କୁହାଗଲା ଓ ଏହା ବାଚ୍ୟ ଓ ଗମ୍ୟଭେଦରେ ଦ୍ୱିବିଧ ରୂପେ ସ୍ୱୀକୃତ ।

୯୩) **ସ୍ୱଭାବୋକ୍ତି**—କେତେକ ଆଚାର୍ଯ୍ୟ ସ୍ୱଭାବୋକ୍ତିକୁ ଅଳଙ୍କାର ରୂପରେ ଗ୍ରହଣ କରନ୍ତି । କୌଣସି ବସ୍ତୁ ସେହି ଅବସ୍ଥାରେ ରହିବା ସ୍ୱଭାବ ବୋଲି କୁହାଯାଉଛି । ସ୍ୱଭାବ ବର୍ଣ୍ଣନର ନାମ ସ୍ୱଭାବୋକ୍ତି ।

ଆକ୍ଷୋଣନ୍ଧାଡ୍‌ୱୃଷ୍ଣନ୍ୟାନାଧାବନ୍‌ମଣ୍ଡଲେ ରୁଦନ୍‌ ।
ଗା ବାରୟୃତ ଦଣ୍ଡେନ ଡ଼ମ୍ଭଃ ସସ୍ୟାବଚାରଣୀଃ ॥ ୯୪ ॥
ସମାସେନୋଦ୍ଧତମିଦଂ ଧୀଖେଦାପ୍ୟୈବ ବସ୍ତରଃ ।
ଅସଂଗୃହୀତମପ୍ୟନ୍ୟଦଭ୍ୟୂହ୍ୟମନୟା ଦଶା ॥ ୯୫ ॥
ସ୍ୱୟଂ କୃତୈରେବ ନଦର୍ଶନୈରୟଂ,
ମୟା ପ୍ରକ୍ଳୃପ୍ତା ଖଳୁ ବାଗଲଂକୃତଃ ।
ଅତଃ ପରଂ ଶ୍ଚୁରନେକଧାପରେ
ଗିରାମଲଂକାରବଧିର୍ବିଧାସ୍ୟତେ ॥ ୯୬ ॥
ଇତି ଶ୍ରୀ ଭାମହାଲଂକାରେ ଦ୍ୱିତୀୟଃ ପରିଚ୍ଛେଦଃ ।

---

ଅନ୍ୟ ଆଲୋଚକ କହନ୍ତି - 'କେଚିତ୍‌ ପ୍ରଚକ୍ଷତେ ' ର ଅଭିପ୍ରାୟ, ଭାମହ ସ୍ୱଭାବୋକ୍ତିକୁ ଅଳଂକାର ମନେ କରନ୍ତି ନାହିଁ । କିନ୍ତୁ ଉଦାହରଣ ପ୍ରଦାନ ହେତୁ ଏ ଯୁକ୍ତି ନିରାଧାର ।

୯୪] **ଉଦାହରଣ—** ଉଚ୍ଚ ସ୍ୱରରେ ଅନ୍ୟକୁ ଆହ୍ୱାନ କରି, ଚକ୍ରାକାର ବୁଲି, ଧାଇଁ ଧାଇଁ ଶସ୍ୟ କ୍ଷେତ୍ରରେ ପ୍ରବେଶ କରୁଥିବା ଗାଈଟିକୁ ବାଳକଟି ଲଗୁଡ଼ରେ ବାରଣ କରୁଅଛି ।

ଏଥିରେ କ୍ଷେତରେ ପଶୁଥିବା ଗାଈକୁ ବାରଣ କରିବା ପାଇଁ ବାଳକର ସୁନ୍ଦର ଭାବରେ ବର୍ଣ୍ଣନ ହେତୁ ସ୍ୱଭାବୋକ୍ତି ଅଳଂକାର ।

ଅନୁରୂପ ନିଦର୍ଶନ - ପୁଚ୍ଛ ଲପଟାଇ ଛୀଡ ଙ୍କଖୁବ ଆଶୁଗ ପତନ ଭୟେ ।
ଗ୍ରୀବା ଭଙ୍ଗି ଥରେ ଥରେ ରଥେ ଚାହିଁ ପଳାଏ ପୁଣି ଅଥୟେ ।
ଶରମବଭୃତ ମୁଖଚ୍ୟୁତ ଦର ଚବଳିତ ତୃଣମାନ ।
ଗମନ ପଥରେ ଇତସ୍ତତଃ ପଡି ଯାଉଥାଏ ସ୍ଥାନ ସ୍ଥାନ[ପ୍ରବନ୍ଧ-ବଲ୍ଲଭ]

ଏଥିରେ ଭୀତ ମୃଗର ସ୍ୱାଭାବିକ ବର୍ଣ୍ଣନା ହେତୁ ସ୍ୱଭାବୋକ୍ତି ଅଳଂକାର । ଭାମହଙ୍କ ଅନୁଯାୟୀ କୁନ୍ତକ ସ୍ୱଭାବୋକ୍ତିକୁ ଅଳଂକାର୍ଯ୍ୟ ମନେ କରିଛନ୍ତି ।

୯୫] **ଉପସଂହାର —** ଏ ସମସ୍ତ ଅଳଂକାର ସଂକ୍ଷେପରେ ଉଦ୍ଧାରିତ । ବିସ୍ତୃତ କଥନ କେବଳ ବୁଦ୍ଧି କ୍ଳାନ୍ତିକାରକ । ଏହି ଭାବରେ ଅସଂଗୃହୀତ ଅନ୍ୟ ଅଳଂକାରର କଳ୍ପନା କରାଯାଇପାରେ ।

୧୭] ଭାମହ କହନ୍ତି - ବାଣୀର ଅଳଂକାରକୁ ନିଜ ଦୃଷ୍ଟ ଉଦାହରଣ ମାଧ୍ୟମରେ ନିରୂପଣ କରାଯାଇଛି । ଏତଦ୍ ବ୍ୟତୀତ ପର ପରିଚ୍ଛେଦରେ ବାଣୀର ଅନ୍ୟ କେତେକ ଅଳଂକାର ନିରୂପଣ କରାଯିବ ।

ଭାମହ କୃତ କାବ୍ୟାଳଂକାରର ଦ୍ୱିତୀୟ ପରିଚ୍ଛେଦ ସମାପ୍ତ ।



## ତୃତୀୟ ପରିଚ୍ଛେଦ

ପ୍ରେୟୋ ରସବଦୂର୍ଜସ୍ୱି ପର୍ଯ୍ୟାୟୋକ୍ତଂ ସମାହିତମ୍ ।
ଦ୍ୱିପ୍ରକାରମୁଦାତ୍ତଂ ଚ ଭେଦୈଃ ଶ୍ଳିଷ୍ଟମପି ତ୍ରିଭିଃ ॥ ୧ ॥
ଅପହ୍ନୁତିଂ ବିଶେଷୋକ୍ତିଂ ବିରୋଧଂ ତୁଲ୍ୟଯୋଗିତାମ୍ ।
ଅପ୍ରସ୍ତୁତପ୍ରଶଂସାଂ ଚ ବ୍ୟାଜସ୍ତୁତିନିଦର୍ଶନେ ॥ ୨ ॥
ଉପମାରୂପକଂ ଚାନ୍ୟଦୁପମେୟୋପମାମପି ।
ସହୋକ୍ତିପରିବୃତ୍ତୀ ଚ ସସନ୍ଦେହମନନ୍ୱୟମ୍ ॥ ୩ ॥
ଉତ୍ପ୍ରେକ୍ଷାବୟବଂ ଚାନ୍ୟେ ସଂସୃଷ୍ଟିମପି ଚାପରେ ।
ଭାବିକତ୍ୱଂ ଚ ନିଜଗୁରଲଂକାରଂ ସୁମେଧସଃ ॥ ୪ ॥

---

୧-୪] ଭାମହଙ୍କ ଦ୍ୱାରା ପ୍ରଦର୍ଶିତ ଅନ୍ୟ ୨୩ ଗୋଟି ଅଳଂକାର । ପ୍ରେୟସ୍, ରସବତ୍, ଊର୍ଜସ୍ୱି, ପର୍ଯ୍ୟାୟୋକ୍ତ, ସମାହିତ, ଦୁଇ ପ୍ରକାର ଉଦାତ୍ତ, ତିନି ପ୍ରକାର ଭେଦ ଶ୍ଳିଷ୍ଟ, ଅପହ୍ନୁତି ବିଶେଷୋକ୍ତି, ବିରୋଧ, ତୁଲ୍ୟ ଯୋଗିତା, ଅପ୍ରସ୍ତୁତ ପ୍ରଶଂସା, ବ୍ୟାଜସ୍ତୁତି, ନିଦର୍ଶନା, ଉପମାରୂପକ, ଉପମେୟୋପମା, ସହୋକ୍ତି, ପରିବୃତ୍ତି, ସସନ୍ଦେହ, ଅନନ୍ୱୟ, ବ୍ୟତୀତ କେତେକ ଆଚାର୍ଯ୍ୟ ଉତ୍ପ୍ରେକ୍ଷାବୟବକୁ, ଅନ୍ୟ କେତେକ ସଂସୃଷ୍ଟି ଓ ଭାବିକତ୍ୱକୁ ଅଳଂକାର ମନେ କରନ୍ତି ।

ପ୍ରେୟୋ ଗୃହାଗତଂ କୃଷ୍ଣମବାଦୀଦ୍ଵିଦୁରୋ ଯଥା ।
ଅଦ୍ୟ ଯା ମମ ଗୋବିନ୍ଦ ଜାତା ତ୍ଵୟି ଗୃହାଗତେ ।
କାଳେନୈଷା ଭବେତ୍ପ୍ରୀତିସ୍ତବୈବାଗମନାତ୍ପୁନଃ ॥ * ॥
ରସବଦ୍ଦର୍ଶିତସ୍ପଷ୍ଟଶୃଙ୍ଗାରାଦିରସଂ ଯଥା ।
ଦେବୀ ସମାଗମଦ୍ଧର୍ମମସ୍କରିଣ୍ୟନ୍ତରୋହିତା ॥ ୭ ॥

---

* । ପ୍ରେୟସ୍ — ଗୃହରେ ପଦାର୍ପଣ କରିଥିବା କୃଷ୍ଣଙ୍କୁ ବିଦୁର ଯାହା କହିଥିଲେ, ତାହା ପ୍ରେୟସ୍ ଅଟେ । ଯଥା - ହେ ଗୋବିନ୍ଦ ! ଆଜ ମୋ ଘରକୁ ତୁମେ ଆସିବା ଦ୍ଵାରା ମୋତେ ଯେଉଁ ଆନନ୍ଦ ମିଳିଛି । ସେହିପରି ଆନନ୍ଦ ପୁଣି ତୁମର ଆଗମନରେ ସମ୍ଭବ ହେବ ।

ଶ୍ରୀମଦ୍ଧ ଚନ୍ଦ୍ର ଅଳଂକାରର ଲକ୍ଷଣ ନ ଲେଖି କେବଳ ଉଦାହରଣ ପ୍ରସ୍ତୁତ କରିଛନ୍ତି । ସେହିପରି ପ୍ରେୟସ୍, ଊର୍ଜସ୍ଵି ଓ ସମାହିତର ମଧ୍ୟ ଲକ୍ଷଣ ଲେଖି ନାହାନ୍ତି । ଦଣ୍ଡୀଙ୍କ ଅନୁସାରେ ଏ ସମସ୍ତଙ୍କ ଲକ୍ଷଣ ଯଥା —

ପ୍ରେୟଃ ପ୍ରିୟତରାଖ୍ୟାନଂ ରସବଦ୍ରସପେଶଲମ୍ ।
ଊର୍ଜସ୍ଵି ରୂଢାହଂକାରଂ ଯୁକ୍ତୋତ୍କର୍ଷଂ ଚ ତତ୍ତ୍ରୟମ [କାବ୍ୟାଦର୍ଶ]

ପ୍ରିୟତର ବାକ୍ୟ କଥନକୁ ପ୍ରେୟସ୍, ରସ ଦ୍ଵାରା ରମଣୀୟ କଥନକୁ ରସବତ୍ ଓ ଗର୍ବୋଦ୍ଧତ କଥନକୁ ଊର୍ଜସ୍ଵି କହନ୍ତି । ଏହି ତିନିଗୋଟି ଅଳଂକାର ଉତ୍କର୍ଷ [ଚମତ୍କାର] ଯୁକ୍ତ ଅଟେ । ପ୍ରେୟସ୍ ଶବ୍ଦର ଅର୍ଥ ଅତିଶୟ ପ୍ରିୟ । ଉପଯୁକ୍ତ ଉଦାହରଣରେ ବିଦୁରଙ୍କ ବଚନ ଅତିଶୟ ପ୍ରିୟ ହେଉ ପ୍ରେୟସ୍ ଅଳଂକାର । ଦର୍ପଣକାର କହନ୍ତି- ଯଦି ରସ ବା ଭାବର ଅଙ୍ଗ ହେଲେ ପ୍ରେୟ ଅଳଂକାର ହୁଏ । ଗୁରୁ, ଦେବତା, ନୃପତି ଓ ପୁତ୍ର ସମ୍ବନ୍ଧୀୟ ପ୍ରୀତି ବର୍ଣ୍ଣିତ ହେଲେ ପ୍ରେୟ ଅଳଂକାର । ପ୍ରେୟାନ୍ ଅଳଂକାରେ ଯଥା ।

ଅନୁରୂପ ଉଦାହରଣ—

ବିଜୟେ ରାମ କରିବେ, ବିଭୁଙ୍କେ ମୋତେ ତାରିବେ ।
ବିଚ୍ଛେଦ ସନ୍ତାପ ତ୍ୟଜି ବଢାଇ ଚୂତ ଯେ ।
ବିଶ୍ଵବ୍ୟାପୀ ଯେ ଭବରେ ଶବରୀ ହେଲେ ଜବରେ ।
ବନ୍ଦ୍ୟ ଭବଗାହ ପଦ, ବେଗେ ଆସିଦ ଯେ, (ବୈ-ବି-୧୭-୩)

ଏଠାରେ ଭଗବାନ ରାମଙ୍କ ଆଗମନ ଓ ଚୂତ ଭକ୍ଷଣ ଦ୍ଵାରା ଶବରୀର ପ୍ରୀତି ବର୍ଣ୍ଣିତ ।

ଉର୍ଜସ୍ୱି କର୍ଣ୍ଣେନ ଯଥା ପାର୍ଥାୟ ପୁନରାଗତଃ ।
ଦ୍ୱିଃ ସନ୍ଧାତ କଂ କର୍ଣ୍ଣଃ ଶଲ୍ୟେତ୍ୟାହିରପାକୃତଃ ॥ ୨୭ ॥

୭] ଉପବତ୍ ଯେଉଁଠି ଶୃଙ୍ଗାରାଦ ରସ ସ୍ପଷ୍ଟ ରୂପରେ ଉଦ୍ଦୀପ୍ତ ହୁଏ, ସେଠାରେ ରସବଦ୍ ଅଳଂକାର ହୁଏ । ଯଥା - ଧର୍ମବେଶ ଧାରଣୀ ଦେବୀ (ପାର୍ବତୀ) ନିଜ ରୂପରେ ପ୍ରକଟ ହେଲେ ।

ଭାମହ ରସକୁ ମଧ୍ୟ ଅଳଂକାର ମନେ କରନ୍ତି । ଅଳଂକାର ବାଦୀଙ୍କ ମତରେ କାବ୍ୟର ଶୋଭା ବର୍ଧାନ୍ୱକ ସମସ୍ତ ତତ୍ତ୍ୱ ଅଳଂକାର । ଅଳଂକାର ହିଁ ସୌନ୍ଦର୍ଯ୍ୟ । ସୌନ୍ଦର୍ଯ୍ୟ ଅଳଙ୍କାରଃ [ବାମନ] ଉଦାହରଣଟି ଅସ୍ପଷ୍ଟ । କେତେକ ଆଲୋଚକଙ୍କ ମତରେ - କାଳିଦାସଙ୍କ କୁମାର ସମ୍ଭବର ପଞ୍ଚମ ସର୍ଗରେ ମହାଦେବଙ୍କୁ ପତିରୂପେ ପାଇବା ପାଇଁ ତପସ୍ୟାରତା ପାର୍ବତୀଙ୍କ ନିକଟରେ ବଟୁ ବେଶ ଧାରଣ କରି ମହାଦେବ ପ୍ରବେଶ କରନ୍ତି ଓ ପାର୍ବତୀଙ୍କ ନିକଟରେ ଶିବଙ୍କ ନିନ୍ଦାଗାନ କରନ୍ତି । ଏଥିରେ ବିରକ୍ତା ହୋଇ ପାର୍ବତୀ ସେ ସ୍ଥାନ ତ୍ୟାଗ କରି ଚାଲିଯିବା ପାଇଁ ନିଜ ରୂପରେ ଠିଆ ହୋଇଛନ୍ତି ଓ ମହାଦେବ ମଧ୍ୟ ଛଦ୍ମବେଶ ତ୍ୟାଗ କରି ନିଜରୂପ ପ୍ରକଟନ କରିଛନ୍ତି । ଶିବ - ପାର୍ବତୀଙ୍କ ସାକ୍ଷାତ୍କାର ରସ ସମନ୍ୱିତ ଅଟେ ।

ଅନୁରୂପ ନିଦର୍ଶନ - ଆର୍ଯ୍ୟ - ଯବନର ସେନା ଗର୍ଜି ହୁଁ ହୁଁ ନାଦରେ
ପ୍ରଳୟ ଜୀମୂତ ଯେସନେ ପୂର୍ଣ୍ଣ ଉରମ୍ମଦେ ।
ପ୍ରଭଞ୍ଜନ ପୃଷ୍ଠେ ନଭେ ବେଗେ ଛୁଟିଆସି ।
ବେଳାଭୂମି ବେଳାପରେ ପଡନ୍ତି ବେନି ଏ ।
ଆରମ୍ଭିଲେ କର୍ମି ଲୀ ଦ୍ୱନ୍ଦ୍ୱ ସେ ଘୋର ନିର୍ଘୋଷେ । [ମହାଯାତ୍ରା]

ଯୁଦ୍ଧ ବର୍ଣ୍ଣନାରେ ଉତ୍ସାହ ସ୍ଥାୟୀ ଭାବକ ବୀର ରସ ସ୍ପଷ୍ଟ ଅଭିବ୍ୟକ୍ତ ହେଉ ରସବଦ୍ ଅଳଙ୍କାର ।

୭) ଊର୍ଜସ୍ୱି - ଯଥା - କର୍ଣ୍ଣଙ୍କ ଦ୍ୱାରା ଅର୍ଜୁନଙ୍କ ଉଦ୍ଦେଶ୍ୟରେ ପ୍ରେରିତ ବାଣ ଫେରି ଆସିଲା । ସେତେବେଳେ କର୍ଣ୍ଣ ଶଲ୍ୟ (ସାରଥି) ଙ୍କୁ ସମ୍ବୋଧନ କରି କହିଲେ - ହେ ଶଲ୍ୟ ! କର୍ଣ୍ଣ କ'ଣ ଗୋଟିଏ ଶରକୁ ଦୁଇଥର ସନ୍ଧାନ କରେ ?

ଭାମହ ଊର୍ଜସ୍ୱିର ଲକ୍ଷଣ ନ ଦେଇ ଉଦାହରଣ ମାତ୍ର ପ୍ରସ୍ତୁତ କରିଛନ୍ତି । ଦଣ୍ଡୀଙ୍କ ମତରେ ଦର୍ପ ଅଭିବ୍ୟଂଜକ [ ରୂଢାହଂକାର ] ଉକ୍ତି ଊର୍ଜସ୍ୱି । ଉକ୍ତ ଉଦାହରଣରେ କର୍ଣ୍ଣଙ୍କ ଗର୍ବୋକ୍ତି ପ୍ରକଟିତ ହେଉ ଊର୍ଜସ୍ୱି ଅଳଙ୍କାର । ମହାଭାରତରେ କଥାଟି ଏପରି ବର୍ଣ୍ଣିତ । ଖାଣ୍ଡବ ବନ ଦହନ ବେଳେ ଗୋଟିଏ ସର୍ପର ମାତା ଅର୍ଜୁନ ଦ୍ୱାରା ହତ ହେବାରୁ ସେ ସର୍ପ ପ୍ରତିଶୋଧ ନେବାପାଇଁ କର୍ଣ୍ଣଙ୍କ ଶର ରୂପରେ ତୂଣୀରରେ ଥିଲା ।

ପର୍ଯ୍ୟାୟୋକ୍ତଂ ଯଦନ୍ୟେନ ପ୍ରକାରେଣାଭିଧୀୟତେ ।
ଉବାଚ ରତ୍ନାହରଣେ ଚୈଦ୍ୟଂ ଶାର୍ଙ୍ଗଧନୁର୍ଯଥା ॥ ୮ ॥
ଗୃହେଷ୍ୱଧ୍ୱସୁ ବା ନାନ୍ନଂ ଭୁଂଜ୍ମହେ ଯଦଧୀତିନଃ ।
ନ ଭୁଞ୍ଜତେ ଦ୍ୱିଜାସ୍ତଚ୍ଚ ରସାଦନନିବୃତ୍ତୟେ ॥ ୯ ॥

---

କର୍ଣ୍ଣାର୍ଜୁନ ଯୁଦ୍ଧବେଳେ କର୍ଣ୍ଣ ସେହି ଶରକୁ ସନ୍ଧାନ କଲେ । କୃଷ୍ଣଙ୍କ ଚକ୍ରାନ୍ତରେ ସେ ଶରଟି ଅର୍ଜୁନଙ୍କୁ ମାରି ନ ପାରି ଫେରି ଓ କର୍ଣ୍ଣଙ୍କୁ କହିଲା - ମୋତେ ଦ୍ୱିତୀୟବାର ପ୍ରେରଣ କର ମୁଁ ଅବଶ୍ୟ ଅର୍ଜୁନଙ୍କୁ ହତ୍ୟା କରିବି । ବୀର କର୍ଣ୍ଣଙ୍କ ଅହଂକାର ପୂର୍ଣ୍ଣ ଉକ୍ତି - " ମୁଁ କୌଣସି ଶରକୁ ଦ୍ୱିତୀୟବାର ସନ୍ଧାନ କରେ ନାହିଁ ।

ଅନୁରୂପ ଯଥା – ଆହେ ନାଗଲୋକ ହେ ଅନନ୍ତ ଧରାଧର ।
ଧାରଣୀ ଧାରଣ ତୁମ୍ଭେ କର ମସ୍ତକର ।
ସପ୍ତଲୋକ ଶ୍ରେଷ୍ଠ ଅଟ ତୁମ୍ଭେ ନାଗେଶ୍ୱର ।
ପାତାଳେ ରଖ ହେ ଆସି କୌରବ ପାମର । (ବେଣୀସଂହାର)

ଦୁଃଶାସନର ରକ୍ତରେ ଦ୍ରୌପଦୀଙ୍କ ବେଣୀ ବନ୍ଧନକାଙ୍କ୍ଷୀ ଭୀମଙ୍କ ଏ ଦର୍ପୋକ୍ତି ଊର୍ଜସ୍ୱି ଅଳଂକାର । କାରଣ ଦର୍ପଣକାର କହନ୍ତି - ରସାଭାସ ବା ଭାବାଭାସ ଯଦି ଅନ୍ୟ ରସ ଓ ଭାବର ଅଙ୍ଗ ହୁଏ, ତେବେ ଊର୍ଜସ୍ୱି ଅଳଂକାର ହୁଏ ।

୮-୯] ପର୍ଯ୍ୟାୟୋକ୍ତ— ଯେଉଁ ବକ୍ତବ୍ୟ ଅନ୍ୟ ଭାବରେ କଥିତ ହୁଏ, ତାହାକୁ ପର୍ଯ୍ୟାୟୋକ୍ତ ଅଳଙ୍କାର କହନ୍ତି । ଯଥା ' ରତ୍ନାହରଣ ' ରେ ଶିଶୁପାଳକୁ କୃଷ୍ଣ କହିଥିଲେ - ଘରେ ଅବା ମାର୍ଗରେ ଆମେ ସେହି ଅନ୍ନ ଭକ୍ଷଣ କରୁନାହୁଁ ଯାହାକୁ ବେଦପାଠୀ ବ୍ରାହ୍ମଣ ଖାଇ ନଥାନ୍ତି । [ଏହା ବିଷଦାନର ନିବୃତ୍ତି ପାଇଁକଥିତ]

ବକ୍ତବ୍ୟକୁ ସରଳ ଭାବେ ପ୍ରକାଶ ନ କରି ପ୍ରକାରାନ୍ତରେ କହିବା ପର୍ଯ୍ୟାୟୋକ୍ତ ଅଟେ । 'ରତ୍ନାହରଣ' କାବ୍ୟ ଆଜି ଦୁର୍ଲଭ । ବୋଧହୁଏ, ଶିଶୁପାଳ ଦେବା ଅନ୍ନ ବିଷ ମିଶ୍ରିତ ହୋଇ ଥାଇପାରେ ଏଣୁ କୃଷ୍ଣ ସାଧାରଣ ଭାବେ ନିଷେଧ କରି ବ୍ରାହ୍ମଣମାନେ ଯେଉଁ ଖାଦ୍ୟ ଖାଇ ନ ଥିବେ ସେହି ଅନ୍ନ ଆମେ ଖାଉନାହୁଁ, କହିଥିଲେ ।

ଅନୁରୂପ - ବୃତ୍ତଅଳ୍ପ ପଙ୍କେ ମୁଁ ମାଣିକ୍ୟ ଉଦ୍ଧରିତ ।
କରଙ୍କ ମୃଗ ପଞ୍ଚଙ୍କ ପଞ୍ଚକୁ ଲୁବ୍ଧ, ବସୁଧା ପଡ଼ ନେଇ
ତା ମସ୍ତକେ ଲଗାଇ [ବୈ-ବି-୩୭-୧୪]

ରାବଣ ସୀତା ଲୋଭେ ଭାବକୁ ଲୁବ୍ଧ ରାଜାର ମହତ୍ତ୍ୱ ବର୍ଣ୍ଣନା କରଛି ।

ସମାହିତଂ ରାଜମିତ୍ରେ ଯଥା କ୍ଷତ୍ରିୟଯୋଷିତାମ୍ ।
ରାମପ୍ରସକ୍ତ୍ୟୈ ଯାନ୍ତୀନାଂ ପୁରୋ ଦୃଶ୍ୟତ ନାରଦଃ ॥ ୧୦ ॥

ଉଦାତ୍ତଂ ଶକ୍ତିମାନ୍ ରାମୋ ଗୁରୁବାକ୍ୟାନୁରୋଧକଃ ।
ବିହାୟୋପବନଂ ରାଜ୍ୟଂ ଯଥା ବନମୁପାଗମତ୍ ॥ ୧୧ ॥

---

୧୦) ସମାହିତ ଯଥା- 'ରାଜମିତ୍ର' ଗ୍ରନ୍ଥରେ ପରଶୁରାମଙ୍କୁ ପ୍ରସନ୍ନ କରିବାକୁ ଯାଉଥିବା କ୍ଷତ୍ରିୟ ରମଣୀଙ୍କ ସମ୍ମୁଖରେ ନାରଦ ପ୍ରକଟ ହେଲେ ।

କବିସମ୍ରାଟ ସମାହିତର ଲକ୍ଷଣ ନଦେଇ ଉଦାହରଣ ପ୍ରସ୍ତୁତ କରିଛନ୍ତି । ତାହା ମଧ୍ୟ ଦୁର୍ଲଭ 'ରାଜ' ମିତ୍ର କାବ୍ୟ ପଠନ ବ୍ୟତିରେକେ ଅସ୍ପଷ୍ଟ । ଦଣ୍ଡୀଙ୍କର ପ୍ରଦତ୍ତ ସମାହିତର ଲକ୍ଷଣ—

କିଂଚିଦାରଭମାଣସ୍ୟ କାର୍ଯ୍ୟଂ ଦୈବବଶାତ୍ ପୁନଃ ।
ତତ୍ ସାଧନସମାପତ୍ତିର୍ୟା ତଦାହୁଃ ସମାହିତମ୍ (କାବ୍ୟାଦର୍ଶ)

ବ୍ୟକ୍ତି ବିଶେଷ କୌଣସି କାର୍ଯ୍ୟ କରିବାକୁ ଗଲାବେଳେ ଯଦି ଭାଗ୍ୟବଶତଃ କୌଣସି ସାଧକ ମିଳିଥାଏ, ତେବେ ତାହାକୁ ସମାହିତ କହନ୍ତି । କ୍ଷତ୍ରିୟ କୁଳରେ ବିନାଶ ସାଧନ ପାଇଁ ବଦ୍ଧପରିକର ପରଶୁରାମଙ୍କୁ ଶାନ୍ତ କରିବା ପାଇଁ ବାହାରି ଥିବା-କ୍ଷତ୍ରିୟ ରମଣୀ ଏକ ଚିନ୍ତାରେ ଥିଲେ, କପରି ପରଶୁରାମଙ୍କୁ ଶାନ୍ତ କରିବା । ନାରଦଙ୍କ ଅପ୍ରତ୍ୟାଶିତ ଆଗମନ ସେମାନଙ୍କୁ ଚିନ୍ତାମୁକ୍ତ କରିଥିଲା । ତେଣୁ ସମାହିତ ଅଳଙ୍କାର ।

ଅନୁରୂପ—ବ୍ୟବହାରୁ ମନେହେଜ, ବୈଦେହୀ ପାଇଲେ ଖୋଜ ।
ବେଶ ହେଲା ଏହା ଭଲ, ବପୁରେ। ଚନ୍ଦନ ଗୋଲ । (ବୈ-ବି-୩୭-୮)

ସୁରକ୍ଷିତ ମଧୁବନ ହନୁମାନ ପ୍ରଭୃତିଙ୍କ ଦ୍ୱାରା ଲୁଟ୍‌ପାଟ ହେବା ଖବର ପାଇ ସୁଗ୍ରୀବ ଆଶ୍ୱସ୍ତ ହେଲା । ଏଥିପାଇଁ ଯେ, ସେମାନେ ନିଶ୍ଚୟ ସୀତାଙ୍କୁ ଠାବ କରିଛନ୍ତି । ଏଣୁ ଆନନ୍ଦରେ ସୁବେଶ ହୋଇଛୁ । ଦର୍ପଣକାର କହନ୍ତି ସମାହିତଂ =ପରିହାରଃ, ପ୍ରଶମଃ ଅର୍ଥାତ୍ ଯେଉଁଠି ଭାବ ପ୍ରଶମ ପ୍ରଧାନ ବାକ୍ୟାର୍ଥ ରସ ବା ଭାବାଦିର ଅଙ୍ଗ ହୁଏ,ସେଠାରେ ସମାହିତ ଅଳଙ୍କାର ହୁଏ ।

ଧ୍ୱନିକାର କହନ୍ତି—ପ୍ରଧାନେଽନ୍ୟତ୍ର ବାକ୍ୟାର୍ଥେ ଯତ୍ରାଙ୍ଗନ୍ତୁ ରସାଦୟଃ ।
କାବ୍ୟେ ତସ୍ମିନ୍ନଲଂକାରେ ରସାଦିରିତି ମେ ମତିଃ । (ଧ୍ୱନ୍ୟାଲୋକ)

୧୧) ଉଦାତ୍ତ—ଯଥା—ଗୁରୁଙ୍କ ବଚନ ପାଳକ ଶକ୍ତିମାନ ରାମ ପ୍ରାପ୍ତରାଜ୍ୟକୁ ତ୍ୟାଗକରି ବନକୁ ଗମନ କଲେ । କବିସମ୍ରାଟ ଉଦାତ୍ତ ଅଳଙ୍କାରର ଲକ୍ଷଣ ମଧ୍ୟ ଦେଇନାହାନ୍ତି । ଦଣ୍ଡୀଙ୍କ ଲକ୍ଷଣ ଯଥା —

ଏକଦେଶାପରେଽନ୍ୟେନ ବ୍ୟାଖ୍ୟାନେନାନ୍ୟଥା ବଦୁଃ
ନାନାରତ୍ନାଦ୍ୟଯୁକ୍ତଂ ଯତ୍ତତ୍କିଲୋଦାତ୍ତମୁଚ୍ୟତେ ॥ ୧୨ ॥
ସ୍ବର୍ଣକେତ୍ୟା ନଲସ୍ୟୋପଯ୍ୟାନନ୍ଦକ୍ରୀଡ଼ାଗୃହଂ ଯଥା ।
ଶଶିକାନ୍ତୋପଲଚ୍ଛନଂ ବବେଦ ପୟସାଂ କଣୈଃ ॥ ୧୩ ॥

---

ଆଶୟସ୍ୟ ବିଭୂତେର୍ବା ଯନ୍ମହତ୍ତ୍ୱମନୁତ୍ତମମ୍ ।
ଉଦାତ୍ତଂ ନାମ ତଂ ପ୍ରାହୁରଲଂକାରଂ ମନୀଷିଣଃ [କାବ୍ୟାଦର୍ଶ]

ଆଶୟ ଅଥବା ବୈଭବର ଅନୁପମ ମହତ୍ତ୍ୱ ବର୍ଣ୍ଣିତ ହେଲେ ପଣ୍ଡିତମାନେ ତାହାକୁ ଉଦାତ୍ତ ଅଲଙ୍କାର କହନ୍ତି । ଅତଏବ ଉଦାତ୍ତ ଦ୍ବିବିଧ — ଆଶୟ (ଭାବନା) ମହତ୍ତ୍ୱ ଓ ବିଭୂତି ମହତ୍ତ୍ୱ । ରାମଚନ୍ଦ୍ରଙ୍କ ଏହି ଉଦାହରଣ ଆଶୟ ମହତ୍ତ୍ୱ ରୂପ ଉଦାତ୍ତ ଅଲଙ୍କାର । ରାମ ଶକ୍ତିଶାଳୀ ଥିଲେ । ଜ୍ୟେଷ୍ଠ ପୁତ୍ରହିସାବରେ ରାଜ୍ୟ ଉପରେ ତାଙ୍କର ସମ୍ପୂର୍ଣ୍ଣ ଅଧିକାର ମଧ୍ୟ ଥିଲା । ତଥାପି ପିତାଙ୍କ ଆଦେଶରେ ସେହି ଅଧିକାରକୁ ତୁଚ୍ଛ କରି ବନକୁ ଗଲେ । ଏହା ଆଶୟ ଉଦାରତା ।

ଅନୁରୂପ—ସଙ୍ଗ୍ରହରକାଳ ମହାବଳୀ ଠାରୁ ବଳି ।
ସେ ଆସି ଖୋଜିବା ଆଗୁ ଏ ଉଦର ମାସ୍ତା
ତେଜ ହେ ବୀରେନ୍ଦ୍ର ସ୍ଥଳ ଖୋଜିବା କାଳକୁ (ମହାଯାତ୍ରା)

ଯୁଧିଷ୍ଠିରଙ୍କ ସ୍ୱଇଚ୍ଛାରେ ରାଜ୍ୟ ଓ ଧନତ୍ୟାଗ ଉଦାତ୍ତ ଭାବନା ବ୍ୟକ୍ତ କରେ ।

୧୨) ଅନ୍ୟ କେତେକ ଆଚାର୍ଯ୍ୟ ଏହି ଉଦାତ୍ତ ଅଲଙ୍କାରକୁ ଅନ୍ୟପ୍ରକାରରେ ବ୍ୟାଖ୍ୟା କରନ୍ତି । ସେମାନଙ୍କ ମତରେ ନାନାବିଧ ରତ୍ନାଦିର ବୈଭବ ବର୍ଣ୍ଣିତ ହେଲେ ଉଦାତ୍ତ (ବୈଭବ) ଅଲଙ୍କାର ହୁଏ ।

୧୩) ଉଦାହରଣ —ଯଥା ରାତ୍ରିରେ ସ୍ବର୍ଣକେତୀ ନଳ ରାଜାଙ୍କ କ୍ରୀଡ଼ାଗୃହ (ଖେଳମନ୍ଦିର) ରେ ପ୍ରବେଶ କଲେ । ଜଳକଣା ସମୂହରୁ ସେ ଜାଣି ପାରିଲେ ଯେ, ମନ୍ଦିରଟି ଚନ୍ଦ୍ରକାନ୍ତ ମଣିରେ ନିର୍ମିତ । କୁହାଯାଏ, ଚନ୍ଦ୍ରକାନ୍ତ ମଣିରେ ଚନ୍ଦ୍ରିକା ପାତ ହେଲେ ସେଥିରୁ ଜଳକଣା ନିର୍ଗତ ହୁଏ । ନଳଙ୍କ ସମ୍ପତ୍ତିଶାଳୀତା ବର୍ଣ୍ଣିତ ହେବାରୁ ଏହା ଉଦାତ୍ତ ଅଲଙ୍କାର ।

ଅନୁରୂପ ଯଥା—ବିରାଟ ରାଜାଙ୍କ ନଗର ବର୍ଣ୍ଣନା ।
ଅନ୍ତଃପୁର ଭିତ୍ତିଅତି ରମ୍ୟ ତିମିରସ୍ଥ, ରତ୍ନଭବା ପ୍ରଭାବଳେ କରେ ତମକ୍ଷୟ ।
ଭିତ୍ତିରେ ଜଡ଼ିତ ସ୍ୱର୍ଣ୍ଣପାଦପ ପତର, ମାଣିକ୍ୟ କୁସୁମ ଇନ୍ଦ୍ରନୀଳର ଭ୍ରମର ।
ଭବରତ୍ନ ପୃଷ୍ଠେ କେଉଁ ସ୍ୱର୍ଣ୍ଣବଲ୍ଲୀପରେ, ହୀରକ କୋରକ କାହିଁ ଜକଜକ କରେ ।(ବିଚକବଧ

ବିରାଟ ରାଜାଙ୍କର ନଗର ଶସ୍ୟ ସମ୍ପତ୍ତି ବର୍ଣ୍ଣିତ ହେବାରୁ ଉଦାତ୍ତ ଅଲଙ୍କାର ଅଟେ ।

ଉପମାନେନ ଯତ୍ତତ୍ତ୍ୱମୁପମେୟସ୍ୟ ସାଧ୍ୟତେ ।
ଗୁଣକ୍ରିୟାଭ୍ୟାଂ ନାମ୍ନା ଚ ଶ୍ଲିଷ୍ଟଂ ତଦଭିଧୀୟତେ ॥ ୧୪ ॥
ଲକ୍ଷଣଂ ରୂପକେଽପୀଦଂ ଲକ୍ଷ୍ୟତେ କାମମତ୍ର ତୁ ।
ଇଷ୍ଟଃ ପ୍ରୟୋଗୋ ଯୁଗପଦୁପମାନୋପମେୟୟୋଃ ॥ ୧୫ ॥
ଶୀକରାମ୍ଭୋମଦସୃଜସ୍ତୁଙ୍ଗା ଜଲଦଦନ୍ତିନଃ ।
ଇତ୍ୟତ୍ର ମେଘ କରିଣାଂ ନିର୍ଦ୍ଦେଶଃ କ୍ରିୟତେ ସମମ୍ ॥ ୧୬ ॥

---

୧୪) ଶ୍ଲିଷ୍ଟ — ଗୁଣ, କ୍ରିୟା ଓ ନାମ [ସଂଜ୍ଞା] ଦ୍ୱାରା ଉପମାନ ସହିତ ଉପମେୟର ଅଭେଦ ଉପସ୍ଥାପନ କରାଗଲେ ଶ୍ଲିଷ୍ଟ ଅଳଂକାର ହୁଏ ।

ଅନ୍ୟ ଆଳଂକାର ଯାହାକୁ ଶ୍ଲେଷ କହନ୍ତି, ଦଣ୍ଡୀ ତାହାକୁ ଶ୍ଲିଷ୍ଟ କହିଛନ୍ତି । ଏହି ଅଳଙ୍କାରରେ ଉପମେୟ ସମ୍ବନ୍ଧୀ ଗୁଣ, କ୍ରିୟା ଓ ନାମର ଉପମାନ ସମ୍ବନ୍ଧୀ ଗୁଣ କ୍ରିୟା ଓ ନାମ ସହିତ ଅଭେଦ ପ୍ରତିପାଦନ କରାଯାଏ ।

୧୫) ଶ୍ଲିଷ୍ଟ ଅଳଙ୍କାରରେ ଶଙ୍କା ଓ ସମାଧାନ— ଯଦ୍ୟପି ଏହି ଲକ୍ଷଣ ରୂପକ ଅଳଙ୍କାରରେ ମଧ୍ୟ ପରିଲକ୍ଷିତ ତଥାପି ଏହି ଶ୍ଲିଷ୍ଟାଳଂକାରରେ ଉପମାନ ଓ ଉପମେୟର ଏକତ୍ର ପ୍ରୟୋଗ ଅଭିମତ ଅଟେ ।

ଏଠାରେ ପ୍ରଶ୍ନ ଉଠିପାରେ ଶ୍ଲିଷ୍ଟ ଅଳଂକାରର ଲକ୍ଷଣ ରୂପକ ସହିତ ସମାନ ମନେ ହୁଏ ଯେହେତୁ ଉପମାନ ଉପମେୟର ଅଭେଦ ପ୍ରତିପାଦନ ରୂପକ ଅଟେ । ତେବେ ଶ୍ଲିଷ୍ଟ ଠାରୁ ରୂପକର ଭିନ୍ନତା କେଉଁଠି ? ତାର ଉତ୍ତରରେ କୁହାଯାଇଛି ରୂପକରେ ଉପମାନ ଓ ଉପମେୟର ଧର୍ମ ଭିନ୍ନ ଶବ୍ଦରେ କୁହାଯାଏ । କିନ୍ତୁ ଶ୍ଲିଷ୍ଟରେ ଏକ ଶବ୍ଦରେ । ଅର୍ଥାତ୍ ରୂପକରେ ଶବ୍ଦର ଅନେକାର୍ଥତା ବିବକ୍ଷିତ ନୁହେ । କିନ୍ତୁ ଶ୍ଲିଷ୍ଟରେ ତାହା ଅନିବାର୍ଯ୍ୟ ।

୧୬) ରୂପକ ଅଳଂକାରର ଉଦାହରଣକୁ ପୁନର୍ବାର ଉଦ୍ଧାର କରି ଦଣ୍ଡୀ ଶ୍ଲିଷ୍ଟଠାରୁ ରୂପକର ଭିନ୍ନତା ପ୍ରତିପାଦନ କରିଛନ୍ତି ।

'ଶୀକର ରୂପୀ ମଦଜଳ ବାହୀ ମେଘ ରୂପୀ ବିଶାଳ ଗଜ' ଏଠାରେ ମେଘ ଓ ଗଜର ନିର୍ଦ୍ଦେଶ ସମାନ ଭାବରେ କିନ୍ତୁ ଭିନ୍ନଭିନ୍ନ ଶବ୍ଦରେ ନିର୍ଦ୍ଦେଶିତ ।

ଏହି ଉଦାହରଣରେ ମେଘ ଉପମେୟ ଓ ଗଜ ଉପମାନ । ମେଘର ଧର୍ମ ଶୀକର ବର୍ଷଣ ଓ ଗଜର ଧର୍ମମଦଜଳ ବର୍ଷଣ,ଉପମାନ ଓ ଉପମେୟ ପରି ଧର୍ମ ମଧ୍ୟ ଭିନ୍ନ ଶବ୍ଦରେ ନିର୍ଦ୍ଦେଶିତ । ତେଣୁ ରୂପକ । କିନ୍ତୁ ଶ୍ଲିଷ୍ଟରେ ଧର୍ମର ନିର୍ଦ୍ଦେଶ ଦୁଇଟି ଶବ୍ଦରେ ନହୋଇ ଏକ ଶବ୍ଦରେ ହୋଇଥାଏ । ତେଣୁ ରୂପକଠାରୁ ଶ୍ଲିଷ୍ଟ ଭିନ୍ନ ଅଟେ ।

ଶ୍ଳେଷାଦେବାର୍ଥବଚସୋରସ୍ୟ ଚ ବିଧୃତେ ଭିଦା ।
ତତ୍ସହୋକ୍ତ୍ୟୁପମାହେତୁନିର୍ଦେଶାତ୍ତ୍ରିବିଧଂ ଯଥା ॥ ୧୭ ॥

ସ୍ପୃଷ୍ଟାବଲ୍ଲୋ ଗତବ୍ୟାଲାଃ ସ୍ୱାସେବ୍ୟାଃ ଫଳଦାୟିନଃ ।
ମାର୍ଗଦ୍ରୁମା ମହାନ୍ତଶ୍ଚ ପରେଷାମେବ ଭୂତୟେ ॥ ୧୮ ॥

---

୧୭) **ଶ୍ଳିଷ୍ଟରଭେଦ**—ଶବ୍ଦ ଓ ଅର୍ଥରେ ଶ୍ଳେଷ ରହିବା ହେତୁ ଶ୍ଳିଷ୍ଟ ରୂପକଠାରୁ ଭିନ୍ନ ଅଟେ । ଏହି ଶ୍ଳିଷ୍ଟ ସହୋକ୍ତି, ଉପମା ଓ ହେତୁ ନିର୍ଦେଶରେ ତ୍ରିବିଧ ଅଟେ ।

ପୂର୍ବକାରିକାରେ ରୂପକର ସ୍ୱରୂପ ଦେଖାଇ ଏହି କାରିକାରେ ରୂପକ ଠାରୁ ଶ୍ଳିଷ୍ଟର ଭିନ୍ନତା ପ୍ରଦର୍ଶନ ଓ ବିଭାଗ ନିରୂପଣ କରାଯାଇଛି । ଏହି ଶ୍ଳିଷ୍ଟ ତ୍ରିବିଧ ଯଥା ସହୋକ୍ତି ମୂଳକ ଉପମାମୂଳକ ଓ ହେତୁମୂଳକ । ଶ୍ଳେଷ ବସ୍ତୁତଃ ଶବ୍ଦରେ ଥାଏ । ଅର୍ଥରେ ଶ୍ଳେଷର ସତ୍ତାସ୍ୱୀକାର କରିବା ଦୁରାରୋହ ଅଟେ । ତଥାପି ଭାମହ ଶବ୍ଦ ଅର୍ଥରେ ଶ୍ଳେଷ ରହିବାର୍ୟାଙ୍କ କରିଛନ୍ତି । ବୋଧ ହୁଏ ଭାମହଙ୍କ ମନସ୍ତରେ ଶ୍ଳେଷର ଶବ୍ଦନିଷ୍ଠତା ନିଶ୍ଚିତ ହୋଇନଥିଲା । ଭାମହଙ୍କ ପରେ ମଧ୍ୟ ବହୁ ଶତାବ୍ଦୀ ଧରି ଏହି ବିବାଦ ଚାଲିଥିଲା ଯେ, ଶ୍ଳେଷକୁ ଶବ୍ଦାଳଂକାର ରୂପେ ଗ୍ରହଣକରିବା ଉଚିତ ନା ଅର୍ଥାଳଂକାର ରୂପେ ଗ୍ରହଣ କରିବା ଉଚିତ୍ ।

୧୮) **ସହୋକ୍ତି ମୂଳକ ଶ୍ଳିଷ୍ଟ**-ଛାୟାଯୁକ୍ତ (ଛାୟା ସମ୍ପନ୍ନ-ଦ୍ୟୁତିମାନ) ବ୍ୟାଳ ରହିତ (ସର୍ପଶୂନ୍ୟ-ଦୁଷ୍ଟସମ୍ପର୍କ ଶୂନ୍ୟ) ସ୍ୱାସେବ୍ୟ (ସହଜ ଆସେବ୍ୟ ଯୋଗ୍ୟ-ସରଳତାରେ ପ୍ରାପ୍ତ) ତଥା ଫଳଦାୟୀ (ଫଳଦାତା-ଉପକାରୀ ) ମାର୍ଗ ସ୍ଥିତ ବୃକ୍ଷ ଓ ମହାନ ବ୍ୟକ୍ତି ଅନ୍ୟର ମଙ୍ଗଳପାଇଁ କେବଳ ହୋଇଥାନ୍ତି ।

ଏଠାରେ ମାର୍ଗଦ୍ରୁମ ଉପମାନ ଓ ମହାନ୍ ବ୍ୟକ୍ତି ଉପମେୟ । ଚାରିଗୋଟି ବିଶେଷଣରେ ଉଭୟେ ଅନ୍ୱିତ । ଶବ୍ଦ ଏକ କିନ୍ତୁ ଉଭୟ ପକ୍ଷରେ ଅର୍ଥଭିନ୍ନ । ତେଣୁ ଏହା ସହୋକ୍ତିମୂଳକ ଶ୍ଳିଷ୍ଟ ଅଳଂକାର ।

ଅନୁରୂପ ଯଥା—ବୃକ୍ଷତତି ତପିପନ୍ତି ତହିଁ ଏକାକୃତି ।
ବଲ୍କଳ ପିଧାନ କରି ଜଟି ଧରିଛନ୍ତି ।
ବେଦସାର ମୂଳ ସଦାସୁମନ ଫଳଦ ।
ବାସବୃତ ପର୍ଣ୍ଣଚୟ ଅତଥିର ହୃଦ୍ୟ (ବୈ-ବି-୭-୨,୩)

ବୃକ୍ଷରାଜି ଓ ତପସ୍ୱୀସମୂହ ଏକ ରୂପ । ଉଭୟେ ବଲ୍କଳ ଓ ଜଟା ଧରିଛନ୍ତି । ବେଦସାରମୂଳକ (ବେଦଶ୍ରେଷ୍ଠ ମୂଳରେ ଯାହାର, ବେଦଙ୍କ,ଯଜ୍ଞ ଯାହାଙ୍କର ମୂଳ) ସୁମନାଫଳଦ (ପୁଷ୍ପଫଳଦାତା—ଉତ୍ତମ ମନଯୁକ୍ତ ଓ ବାଞ୍ଛିତ ଫଳଦାତା) ବାସ ବୃତପର୍ଣ୍ଣ (ସୁରଭିତ ପତ୍ର ସମୂହଯୁକ୍ତ ପତ୍ରନିର୍ମିତ ଗୃହବାସୀ) ଅତଥିର ହୃଦ୍ୟ ।

ଉନ୍ନତା ଲୋକ ଦୟିତା ମହାନ୍ତଃ ପ୍ରାଜ୍ୟବର୍ଷିଣଃ ।
ଶମୟନ୍ତି କ୍ଷିତେସ୍ତାପଂ ସୁରାଜାନୋ ଘନା ଇବ ॥ ୧୯ ॥
ରତ୍ନବତ୍ତ୍ୱାଦଗାଧତ୍ୱାତ୍ସ୍ୱମର୍ଯ୍ୟାଦାଽବିଲଂଘନାତ୍ ।
ବହୁସତ୍ତ୍ୱାଶ୍ରୟତ୍ୱାଚ୍ଚ ସଦୃଶସ୍ତ୍ୱମୁଦନ୍ୱତା ॥ ୨୦ ॥

---

(ଅତିଥିର ହୃଦ୍ୟ — ନବାଗତ ବ୍ୟକ୍ତିର ପ୍ରିୟ) ଅଟନ୍ତି । ଶବ୍ଦ ଏକ ହେଲେ ମଧ୍ୟ ଅର୍ଥ ଭିନ୍ନ । ଉପମାନ ତପିପନ୍ତି ଓ ଉପମେୟ ବୃଷଭଙ୍କ ସହିତ ଅନ୍ୱିତ ହେତୁ ଏହା ସହୋକ୍ତିମୂଳକ ଶ୍ଳେଷ ।

୧୯) **ଉପମାଯୁକ୍ତ ଶ୍ଳିଷ୍ଟ**—ଉନ୍ନତ (ଉଦାତ-ଉଚ୍ଚ) ଲୋକପ୍ରିୟ (ଜନରଞ୍ଜନ-ଜଳ-ଦାନକାରୀ ମହାନ୍ (ବଡ଼ବିଶାଳ) ପ୍ରଚୁର ବର୍ଷୀ [ଧନ-ଜଳ] ଶ୍ରେଷ୍ଠ ରାଜା ମେଘପରି ପୃଥିବୀର ତାପ (କଷ୍ଟ-ତାପ) ଦୂରକରନ୍ତି ।

ଏଠାରେ ଉତ୍ତମ ରାଜାବୃନ୍ଦ ଓ ମେଘ ସମୂହ ଯଥାକ୍ରମେ ଉପମେୟ ଓ ଉପମାନ । ବିଶେଷଣଗୁଡ଼ିକ ବିଶେଷରେ ଉଭୟେ ଅନ୍ୱିତ । ଘନ ଇବ ଦ୍ୱାରା ଉପମା ପ୍ରତିପାଦିତ ହେତୁ ଏହା ଉପମାମୂଳକ ଶ୍ଳିଷ୍ଟ ଅଳଂକାର ।

ଅନୁରୂପ ଯଥା—ଦାରାବତୀ ଛବି ଅଯୋଧ୍ୟାପୁରୀ, ବ୍ରହ୍ମ ଆକାର ବନ୍ତ ଯେଣୁ ଧରି ।
ବରଣେ ଶୋଭି ଦିବ୍ୟ କନ୍ୟାପରି, ବର ଖୋଜୁ ଅଛୁ ସମାନ କରି । (ବୈ ବି ୭-୩,୪)

ବିଶ୍ୱାମିତ୍ର ଦେଖିଲେ, ଅଯୋଧ୍ୟା ଦ୍ୱାରାବତୀପୁରୀ (ବୈକୁଣ୍ଠ ପରି ଦେଖାଯାଉଛି । ଯେହେତୁ ବ୍ରହ୍ମ ଆକାରବନ୍ତ (ବ୍ରହ୍ମାସ୍ୱରୂପ-ବିଦ୍ୟମାନ-ରାମ ମୂର୍ତ୍ତିମନ୍ତ) ପୁଣି ଅଯୋଧ୍ୟାପୁରୀ ଦିବ୍ୟକନ୍ୟାପରି । ସେ ଦିବ୍ୟକନ୍ୟା ବିଭବାରେ ଶୋଭା ପାଏ । ଏ ଅଯୋଧ୍ୟା ବରଣେ (ପ୍ରାକାରରେ) ଶୋଭାପାଏ । ସେ କନ୍ୟା ଅନୁରୂପ ବରଖୋଜେ । ଅଯୋଧ୍ୟା ନଗରୀ ନିଜ ତୁଲ୍ୟ ଶ୍ରେଷ୍ଠ ନଗରୀ ଖୋଜୁଅଛୁ । ଅର୍ଥାତ୍ ତାର ତୁଲ୍ୟ ନାହିଁ । ଏଠାରେ ଅଯୋଧ୍ୟା ଉପମେୟ ଓ ଦ୍ୱାରାବତୀ ପୁରୀ ତଥା ଦିବାକନ୍ୟା ଉପମାନ । ପରି ଦ୍ୱାରା ଉପମା ପ୍ରତିପାଦିତ ହେତୁ ଉପମାମୂଳକ ଶ୍ଳିଷ୍ଟ ଅଳଂକାର ।

୨୦) **ହେତୁଯୁକ୍ତ ଶ୍ଳିଷ୍ଟ**—ରତ୍ନଯୁକ୍ତ ହେତୁ, ଅଗାଧ ହେତୁ ନିଜ ମର୍ଯ୍ୟାଦା ଲଙ୍ଘନ ନକରିବା ହେତୁ ଏବଂ ବହୁପ୍ରାଣୀଙ୍କ ଆଶ୍ରୟଦାତା ହେତୁ ତୁମେ ସମୁଦ୍ରତୁଲ୍ୟ ଅଟ ।

ଏଠାରେ ତୁମେ ପଦରେ କୌଣସି ରାଜା ଉପମେୟ ଓ ସମୁଦ୍ର ଉପମାନ । ବିଶେଷଣ ଗୁଡ଼ିକ ଅନେକାର୍ଥକ ହୋଇ ଉଭୟ ସହିତ ଅନ୍ୱିତ ଯଥା—ରତ୍ନଯୁକ୍ତ [ରାଜାଙ୍କ ପୁହରତ୍ନ ପୂର୍ଣ୍ଣ ଓ ସମୁଦ୍ର ରତ୍ନାକର ) ଅଗାଧତ୍ୱ (ଗମ୍ଭୀର ହେତୁ ରାଜାଙ୍କ ଅଭିପ୍ରାୟ ଅଜ୍ଞାତ

ଅପହ୍ନୁତିରଖ୍ୟାସ୍ତା ଚ କଂଚଦନ୍ତର୍ଗତୋପମା ।
ଭୂତାର୍ଥାପହ୍ନବାଦସ୍ୟାଃ ଝିପ୍ଫତେ ତ୍ରିଧା ଯଥା ॥ ୨୧ ॥
ନେଦଂ ଝରୌତି ଭୃଂଗାଳୀ ମଦନେ ମୁଖେ ମୁହୁଃ ।
ଅୟମାକୃଷ୍ୟମାଣସ୍ୟ କନ୍ଦର୍ପଧନୁଷୋ ଧ୍ୱନିଃ ॥ ୨୨ ॥

---

ଜଳର ଅଧିକତାରୁ ସମୁଦ୍ର ଅମାପ] ମର୍ଯ୍ୟାଦା ଅନୁଲଙ୍ଘନ ( ରାଜାଙ୍କ ଆଚରଣ ମର୍ଯ୍ୟାଦାବନ୍ତ, ସମୁଦ୍ର ନିଜ ସୀମାଲଙ୍ଘନ କରେ ନାହିଁ; ବହୁ ସତ୍ତ୍ୱାଶ୍ରୟଭୂ (ରାଜା ବହୁ ଗୁଣଶାଳୀ, ସମୁଦ୍ର ବହୁ ପ୍ରାଣୀଙ୍କ ଆଶ୍ରୟ ସ୍ଥଳୀ ) ବିଶେଷଣ ଗୁଡ଼ିକ ଅନେକାର୍ଥକ ହେତୁ ଶ୍ଳିଷ୍ଟ ପ୍ରତ୍ୟେକର କାରଣ ନିର୍ଦ୍ଦେଶ ରହିବାରୁ ହେତୁ ମୂଳକ ଅଟେ ।

ଅନୁରୂପ ଯଥା —ବୈଦେହୀ ପ୍ରମାଣ ଫଳେ କଠ୍ କଣ୍ଠ ଜାତ ।
ବିଦାଣିତ ହୃଦକ୍ଷେତ୍ର ସୀତା ନାମ ସତ (ବୈ ବି ୧୫-୭)

ମାୟାମୃଗମାଣ ଫେଣିବା ବାଟରେ ରାମ ଲକ୍ଷ୍ମଣଙ୍କୁ ଦେଖି ବିସ୍ମିତ ହୋଇ ପଗ୍ଭରିଲେ ସୀତାଙ୍କୁ ଏକୁଟିଆ କପଣ ଛାଡ଼ି ଆସିଲୁ । ସେତେବେଳେ ଲକ୍ଷ୍ମଣ ସୀତାଙ୍କ ଉକ୍ତିଟିକୁ ଉଦ୍ଧୃତ କରୁଛନ୍ତି । ଜାନକୀ ପ୍ରକୃତରେ ବୈଦେହୀ (ବିଦେହରାଜକନ୍ୟା, ପିପ୍ପଳୀ ବୃକ୍ଷ) କାରଣ ସେ ଫଳରେ [ ଶେଷରେ ଫଳ ମାଧ୍ୟମରେ [ କଠ୍ (କଠୋର ରାଗ ଜାତକରେ ସେବାସ୍ତବରେ ସୀତା (ଜାନକୀ, ଲଙ୍ଗଳପଦ୍ଧତି) ସେ ମୋର ହୃଦୟରୂପକ କ୍ଷେତ୍ରକୁ ବିଦାରିଲେ [ ଖଣ୍ଡିତ କଲେ, ଚାଡ଼ିଲେ] ଉକ୍ତ ପଦରେ ହେତୁ ବ୍ୟକ୍ତ ହୋଇ ନଥିଲେ ମଧ୍ୟ ହେତୁମୂଳକ ଶ୍ଳେଷ ।

୨୧) **ଅପହ୍ନୁତି**—ଅପହ୍ନୁତିରେ ସମାନ୍ୟ ଉପମା ଅନ୍ତର୍ହିତ ଥାଏ । ବାସ୍ତବିକ ଅର୍ଥକୁ [ବସ୍ତୁକୁ] ଗୋପନ ରଖିବା ହେତୁ ଏହାର ଏପରି ନାମକରଣ ହୋଇଛି ।

ଅପହ୍ନୁତିର ଅର୍ଥ ଗୋପନ । ଏହା ତଥ୍ୟାତ୍ମକ ନହୋଇ ନିଷେଧାତ୍ମକଅଟେ । ଯଥା ଏହା ମୁଖ ନୁହେ ଚନ୍ଦ୍ର । ସବୁଠି ନିଷେଧରେ ଅପହ୍ନୁତି ହୁଏ ନାହିଁ । ସେଥିରେ ଉପମାର ସ୍ପର୍ଶ ଥିବାଉଚିତ ।ସାମ୍ୟ ଉଲ୍ଲିଖିତ ନହେଲେ ମଧ୍ୟଦୁଇଟି ବସ୍ତୁରେ ସାମ୍ୟବୋଧ ଥିବ ।

୨୨) **ଉଦାହରଣ**—ଏହି ମଦମୂଖରିତ ଭ୍ରମର ପନ୍ତି ବାରମ୍ବାର ଗୁଞ୍ଜନ କରୁନାହିଁ । ଏହା ଟଣା ଯାଉଥିବା କାମଦେବର ଧନୁ ନିର୍ଗତ ଧ୍ୱନି ଅଟେ ।

ଏଠାରେ ପ୍ରସ୍ତୁତ ଭ୍ରମର ଗୁଞ୍ଜନକୁ ନିଷେଧ କରି ଅପ୍ରସ୍ତୁତ କାମଦେବର ଧନୁର୍ଧ୍ୱନି ଆରୋପିତ । ଉଦ୍ଦୀପନ ଭାବକୁ ନେଇ ଭ୍ରମର ଗୁଞ୍ଜନ ଓ କନ୍ଦର୍ପର ଧନୁର୍ଧ୍ୱନିରେ ସାଦୃଶ୍ୟ ରହିଛି ।

ଯଥା ବା—ଅର୍ଦ୍ଧେନ୍ଦୁ ଲଲାଟେ ସିନ୍ଦୂର ବିନ୍ଦୁ ରମଇ ଆଖି ।
ଦୁହିଭ ସିନ୍ଦୂର ରହିଛି ସ୍ୱରହୃଦୟ ଲଖି । [ଚନ୍ଦ୍ରଭାଗା]

ଏକଦେଶସ୍ୟ ବିଗମେ ଯା ଗୁଣାନ୍ତରସଂସ୍ଥିତିଃ ।
ବିଶେଷପ୍ରଥନାୟାସୌ ବିଶେଷୋକ୍ତିର୍ମତା ଯଥା ॥ ୧୩ ॥

ସ ଏକସ୍ତ୍ରୀଣି ଜୟତି ଜଗନ୍ତି କୁସୁମାୟୁଧଃ ।
ହରତାପି ତନୁଂ ଯସ୍ୟ ଶମ୍ଭୁନା ନ ହୃତଂ ବଲମ୍ ॥ ୧୪ ॥

ଗୁଣସ୍ୟ ବା କ୍ରିୟାୟା ବା ବିରୁଦ୍ଧାନ୍ୟକ୍ରିୟାଭିଧା ।
ଯା ବିଶେଷାଭିଧାନାୟ ବିରୋଧଂ ତଂ ବିଦୁର୍ବୁଧାଃ ॥ ୧୫ ॥

---

ଏଠାରେ ସିନ୍ଦୁର ବିନ୍ଦୁକୁ ନିଷେଧ କରି କନ୍ଦର୍ପର ହୃଦୟ ବୋଲି କୁହାଯାଇଛି । ଉଭୟରେ ଔପମିକ ସୌନ୍ଦର୍ଯ୍ୟ ନିହିତ ।

୧୩] ବିଶେଷୋକ୍ତି—ଗୋଟିଏ ଗୁଣର ଅଭାବରେ ମଧ୍ୟ ବୈଶିଷ୍ଟ୍ୟ ବୃଦ୍ଧି ପାଇଁ ଅନ୍ୟ ଗୁଣର ଉତ୍କୃଷ୍ଟ ସ୍ଥିତି ବର୍ଣ୍ଣିତ ହେଲେ ବିଶେଷୋକ୍ତି ଅଳଂକାର ହୁଏ ।

କୌଣସି କାର୍ଯ୍ୟର ସିଦ୍ଧି ପାଇଁ ଯେତେ ସାଧନ ଅପେକ୍ଷିତ ସେ ମଧ୍ୟରୁ ଗୋଟିକୁ ଛାଡ଼ି ଅନ୍ୟ ଦ୍ୱାରା କାର୍ଯ୍ୟ ନିଷ୍ପତ୍ତି କଲେ ବିଶେଷୋକ୍ତି ହୁଏ ।

୧୪] ଉଦାହରଣ — ମହାଦେବ ଯାହାର ଶରୀରକୁ ନାଶ କରି ପୁଣି ବଳକୁ ହରଣ କରିପାରି ନାହାନ୍ତି ସେହି କନ୍ଦର୍ପ ଏକୁଟିଆ ତିନିଲୋକକୁ ଜୟ କରୁଅଛି ।

ଏଠାରେ ଗୋଟିଏ ଗୁଣ ଶରୀରର ହାନି ଓ ଗୁଣାନ୍ତର ବଳର ବର୍ଣ୍ଣନ ତଥା କାମଦେବର ଶକ୍ତି ବୈଶିଷ୍ଟ୍ୟ ପ୍ରଦର୍ଶନ ଅଭିବ୍ୟକ୍ତ । ଅତଏବ ବିଶେଷୋକ୍ତି ।

ଅନୁରୂପ ଯଥା— ରୋଗଶୋକଜରା ଗ୍ରାସ କଲେ ପୁଣି ସତତ ଚିର ଅମ୍ଳାନ ।
ସ୍ନେହ ପ୍ରେମପାଶେ ବାନ୍ଧି ରଖିଛୁ ମା ଜଗତ ହୃଦୟ ମନ [ସ୍ୱକୃତ]

ପରବର୍ତ୍ତୀ କାଳରେ ବିଶେଷୋକ୍ତିର ଲକ୍ଷଣରେ ପରିବର୍ତ୍ତନ ଘଟିଛି । କାରଣ ଥାଇ ମଧ୍ୟ କାର୍ଯ୍ୟର ଅନୁତ୍ପତ୍ତିକୁ ବିଶେଷୋକ୍ତି କୁହାଯାଏ ।

ଯଥା—କ୍ରୋଧଟି ଦୁର୍ଦ୍ଦମ୍ୟ ଶତ୍ରୁ ନିଜେ ମୃତ୍ୟୁଂଜୟ,
କାମେ ଜିଣିବାକୁ ଯାଇ ହାରିଲେ ଯା ପାଶେ ।
ନିରଂକୁଶ ପ୍ରଭୁପଣ ସତ୍ତ୍ୱେ ସେ ଭ୍ରମର,
ଆଣି ନ ପାରିଲେ ଗୁରୁ ନେତ୍ରେ ଅରୁଣିମା (ମହାଯାତ୍ରା)

ପ୍ରଭୁପଣ କ୍ରୋଧରେ କାରଣ ହେଲେ ପୁଣି ରାମଚନ୍ଦ୍ର ଭଂଜଙ୍କ ନେତ୍ରରେ ଅରୁଣିମା ସୃଷ୍ଟି କରିପାରି ନାହିଁ ।

୧୫) ବିରୋଧ—ବୈଶିଷ୍ଟ୍ୟ [ଚମତ୍କାର] ସୃଷ୍ଟି ପାଇଁ କୌଣସି ଗୁଣ କ୍ରିୟାର ବିରୋଧରେ ଅନ୍ୟ କ୍ରିୟାର ବର୍ଣ୍ଣନା କରାଗଲେ ତାହାକୁ ପଣ୍ଡିତ ମାନେ ବିରୋଧ ଅଳଂକାର ବୋଲି କହନ୍ତି ।

ଉପାନ୍ତରୂଢୋପବନଚ୍ଛାୟାଶୀତାପି ଧୂରପୌ ।
ବଦୂରଦେଶାନପି ବଃ ସନ୍ତାପୟତି ବଦ୍ଧିଷଃ ॥ ୧୬ ॥
ନ୍ୟୂନସ୍ୟାପି ବଶିଷ୍ଟେନ ଗୁଣସାମ୍ୟବବକ୍ଷୟା ।
ତୁଲ୍ୟକାର୍ଯ୍ୟକ୍ରିୟାଯୋଗାଦିତ୍ୟୁକ୍ତା ତୁଲ୍ୟଯୋଗିତା ॥ ୧୭ ॥
ଶେଷୋହିମଗିରିସ୍ତ୍ୱଂ ଚ ମହାନ୍ତୋ ଗୁରବଃ ସ୍ଥିରାଃ ।
ଯଦଲଂଘିତମର୍ଯ୍ୟାଦାଶ୍ଚଲନ୍ତୀଂ ବଭୃଥ କ୍ଷିତିମ୍ ॥ ୧୮ ॥

---

୧୬] ଉଦାହରଣ—ଉପାନ୍ତ ଅଞ୍ଚଳରେ ଥିବା ଉପବନର ଛାୟାରେ ଶୀତଳ ଏବଂ ଭୂମି ଦୂରରେ ଥିବା ତୁମର ଶତ୍ରୁଙ୍କୁ ମଧ୍ୟ ସନ୍ତପ୍ତ କରୁଅଛ ।

ଏଥିରେ କୌଣସି ରାଜାର ଗୌରବ ବର୍ଣ୍ଣିତ । ଶୀତବସ୍ତୁ ସନ୍ତପ୍ତ କରିବା ସ୍ପଷ୍ଟତଃ ବିରୋଧ ସୂଚକ ହେତୁ ବିରୋଧ ଅଳଂକାର ଅଟେ ।

ଅନୁରୂପ ଯଥା—ତପୋବନେ ଦେଖିଥିଲି ଯେଉଁ ଫୁଲ ଯେଉଁ ତରୁଲତାମାନ ।
ସଦା ସ୍ପର୍ଶଚ୍ୟୁତ ପଣ ହୋଇଥିଲେ ନେତ୍ରକୁ ପ୍ରଶାନ୍ତି ମାନ ।
ଆଜ ଉଦ୍ଧତଳ ଲୋକପ୍ରଦର୍ଶିତ ଫୁଲ ଫୁଲଲତା ବୃକ୍ଷ ।
ନୟନକୁ ମୋର ପ୍ରତୀତ ହେଉଛୁ କର୍କଶ ମଳିନ ରୁକ୍ଷ । [ପ୍ରଣୟବଲ୍ଲରୀ]

ପ୍ରିୟ ବିଚ୍ଛେଦରେ ବୈଶିଷ୍ଟ୍ୟ ପ୍ରକାଶ ପାଇଁ ସୁନ୍ଦର ଫୁଲଲତା ବିରହୀକୁ କପଟ ବୃକ୍ଷ, ମଳିନ ଓ କର୍କଶ ମନେହୁଏ ତାହା ଉପସ୍ଥାପିତ । ଗୁଣ କ୍ରିୟାର ବିରୋଧରେ ଅନ୍ୟ କ୍ରିୟା ବର୍ଣ୍ଣିତ ହେତୁ ବିରୋଧ ଅଳଂକାର ।

୧୭] ତୁଲ୍ୟଯୋଗିତା—ଗୁଣସାମ୍ୟ ପ୍ରଦର୍ଶନ ପାଇଁ ବଶିଷ୍ଟ ସହିତ ନ୍ୟୂନର ସମାନ କାର୍ଯ୍ୟ କାରିତ୍ୱ ପ୍ରତିପାଦନ ତୁଲ୍ୟଯୋଗିତା ଆଟେ ।

ବଶିଷ୍ଟ ଓ ସାମାନ୍ୟ ମଧ୍ୟରେ ଗୁଣଭେଦ ରହିବା ସ୍ୱାଭାବିକ । ତଥାପି ଉଭୟଙ୍କ ମଧ୍ୟରେ ଗୁଣସାମ୍ୟ ପ୍ରଦର୍ଶନ ହେଲେ ତୁଲ୍ୟଯୋଗିତା ଅଳଂକାର ହୁଏ ।

୧୮] [ହେରାଜନ୍] ଶେଷନାଗ, ହିମାଳୟ ଓ ତୁମେ ତିନିହେଁ ମହାନ୍ ଗୌରବଶାଳୀ ଓ ସ୍ଥିର ଅଟ । ମର୍ଯ୍ୟାଦା ଉଲ୍ଲଂଘନ ନ କରି ମଧ୍ୟ ତୁମେ ସମସ୍ତେ ଗତଶୀଳା ଜଗତକୁ ଧାରଣ କରିଅଛ ।

ଏଠାରେ ବଶିଷ୍ଟ ଗୁଣ ସମ୍ପନ୍ନ ଶେଷନାଗ ଓ ହିମାଳୟ ସହିତ ନ୍ୟୂନଗୁଣ ସମ୍ପନ୍ନ ରଜାଙ୍କ ସାମ୍ୟ ପ୍ରଦର୍ଶନ ଅଭିପ୍ରେତ ଅଟେ । ତେଣୁ ତିନିଗୋଟିକୁ ପୃଥ୍ୱୀ ଧାରଣ ରୂପ ଏକ କ୍ରିୟାରେ ସଯୁକ୍ତ କରିଥିବା ହେତୁ ତୁଲ୍ୟଯୋଗିତା ଅଳଂକାର ଅଟେ ।

ଅଧିକାରାଦପେତସ୍ୟ ବସ୍ତୁନୋଽନ୍ୟସ୍ୟ ଯା ସ୍ତୁତିଃ ।
॥ ୨ଅପ୍ରସ୍ତୁତପ୍ରଶଂସେୟଂ ସା ଚୈବଂ କଥ୍ୟତେ ଯଥା ॥ ୨୯ ॥
ପ୍ରୀଣିତପ୍ରଣୟି ସ୍ୱାଦୁ କାଲେ ପରିଣତଂ ଫଳମ୍ ।
॥ ୧୦ ବନା ଗୁଣ୍ଡୁକାଦେଶୁ ଫଳଂ ଧନ୍ୟାସ୍ତ ଶାଖିନାମ୍ ॥ ୩୦ ॥

ଅନୁରୂପ ଯଥା — ଉକ୍ତ, ଶଶୀ ଭୁମେ ଉତ୍ସବ ଉତ୍କଳ ।
କରଧାରେ ଦକ୍ଷ ଭ୍ରମ ଭୂମଣ୍ଡଳ । ବୈଦେହୀଶ

ଏଠାରେ ବଣିଷ୍ଟ ଗୁଣ ଯୁକ୍ତ ସୂର୍ଯ୍ୟ ଓ ଚନ୍ଦ୍ର ଏହି ସାଧାରଣ ଧର୍ମ [ରାଜା] କୁ ଉତ୍କଳ, ଉନ୍ନତ,କରଣ (କର) ଦାନ [ଦେବା, କୋରକ ଲେବା] ଓ ଭୂମଣ୍ଡଳ ଭ୍ରମଣ ରୂପ ଗୁଣ-ବିସ୍ତାରେ ସମାନ କର ଦଆ ଯାଇଛି । ଏଣୁ ତୁଲ୍ୟଯୋଗିତା ଅଳଙ୍କାର ।

ପରବର୍ତ୍ତୀ ପର୍ଯ୍ୟାୟରେ ତୁଲ୍ୟଯୋଗିତା ଅଳଙ୍କାରର ଲକ୍ଷଣକୁ ଅଧିକ ସ୍ପଷ୍ଟ କରିଯାଇଛି । ଉପମା ଭଳି ଏହି ଗଣିତ ହୋଇ ପ୍ରକୃତ ବା ଅପ୍ରକୃତ ବସ୍ତୁଙ୍କର ସମାନ ଧର୍ମଯୋଗକୁ ତୁଲ୍ୟ ଯୋଗିତା କୁହାଯାଇଛି ।

୨୯) ଅପ୍ରସ୍ତୁତ ପ୍ରଶଂସା — ପ୍ରକରଣରୁ ଅଲଗଙ୍କ ଅନ୍ୟବସ୍ତୁର ମହତ୍ତ୍ୱ କଥନ ଅପ୍ରସ୍ତୁତ ପ୍ରଶଂସା ଅଟେ । ତାହା ଏହିପରି କୁହାଯାଇଛି ।

ଅଧିକାରର ଅର୍ଥ ପ୍ରକରଣ । ପ୍ରକରଣରୁ ଭିନ୍ନ ଅର୍ଥାତ୍ ଅପ୍ରାକରଣିକ ବା ଅପ୍ରସ୍ତୁତ ପ୍ରଶଂସାର ଅର୍ଥ ସ୍ତୁତି ନହୋଇ କୀର୍ତ୍ତନମାତ୍ର ଅଭିପ୍ରେତ ଅଟେ ।

ସାରାଂଶ — ଅପ୍ରସ୍ତୁତର ବର୍ଣ୍ଣନାରୁ ପ୍ରସ୍ତୁତର ପ୍ରତୀତ ହେଲେ ଅପ୍ରସ୍ତୁତ ପ୍ରଶଂସା ଅଳଙ୍କାର ହୁଏ ।

୩୦) ଉଦାହରଣ — ପ୍ରଣୟୀ ଜନଙ୍କର ପ୍ରୀତପ୍ରଦ, ସ୍ୱାଦୁଯୁକ୍ତ, କାଳାନୁରୂପକାର [ପରିଶ୍ରମ] ରେ ଯଥା ସମୟରେ ଫଳ ଏହି ବୃକ୍ଷମାନଙ୍କର ଫଳଗୁଡ଼ିକୁ ଦେଖ ।

ଏଠାରେ ଅପ୍ରସ୍ତୁତ ବୃକ୍ଷକୁ ଫଳ ବର୍ଣ୍ଣନା ଦ୍ୱାରା ପ୍ରସ୍ତୁତ କୌଣସି ଉଦାର ହୃଦୟ ଦାନଶୀଳ ପୁରୁଷର ପ୍ରତୀତ ହେତୁ ଅପ୍ରସ୍ତୁତ ପ୍ରଶଂସା ଅଳଙ୍କାର ଅଟେ । ବିଶେଷଣରୁ ବୃକ୍ଷ ପ୍ରଭୃତି ପୁରୁଷ ବିଶେଷଣର ଅର୍ଥ ପ୍ରତୀତ ଘଟେ ।

ଅନୁରୂପ ଯଥା - ଦାରୁଭେଦକ୍ଷମ ଭ୍ରମର ପଶି କମଳକୋଳେ ।
ପାଶୋରେ ଆପଣା ଜୀବନ ପ୍ରେମ ମୋହନ ଖେଳେ । (ଚନ୍ଦ୍ରଭାଗା)

ଏଥିରେ ବର୍ଣ୍ଣିତ ଭ୍ରମର ବୃତ୍ତାନ୍ତ ଅପ୍ରସ୍ତୁତ ବା ଅପ୍ରାକରଣିକ । କିନ୍ତୁ ଏଥିରୁ ପ୍ରେମିକ ବୃତ୍ତାନ୍ତ ପ୍ରତୀତ ହୁଏ ନାହିଁ କି ?

ଦୁରାଧିକଗୁଣସ୍ତୋତ୍ରବ୍ୟପଦେଶେନ ତୁଲ୍ୟତାମ୍ ।
କିଂଚିଦ୍ବିଧିତ୍ସୋର୍ଯା ନିନ୍ଦା ବ୍ୟାଜସ୍ତୁତିରସୌ ଯଥା ॥ ୩୧ ॥
ରାମସପ୍ତାଭିନତ୍ସାଲାନ୍ ଗିରିଂ କ୍ରୌଞ୍ଚଂ ଭୃଗୂତ୍ତମଃ ।
ଶତାଂଶେନାପି ଭବତା କିଂ ତୟୋଃ ସଦୃଶଂ କୃତମ୍ ॥ ୩୨ ॥
ନିବୃତ୍ତୈବ ବଣିଷ୍ଟସ୍ୟ ତଦର୍ଥସ୍ୟୋପଦର୍ଶନାତ୍ ।
ଜ୍ଞେୟା ନିଦର୍ଶନା ନାମ ଯଥେବବତିଭିର୍ବିନା ॥ ୩୩ ॥

---

୩୧) ବ୍ୟାଜସ୍ତୁତି—ଅତ୍ୟନ୍ତ ଗୁଣୀ ବ୍ୟକ୍ତିର ପ୍ରଶଂସା ଛଳରେ ତାହା ସହିତ ସମାନତା ବ୍ୟକ୍ତ କରିବା ବ୍ୟକ୍ତିର ନିନ୍ଦା ବ୍ୟାଜସ୍ତୁତି ଅଟେ ।

ଅତ୍ୟନ୍ତ ଗୁଣଶାଳୀ ଅପ୍ରସ୍ତୁତର ପ୍ରଶଂସା କରାଯିବ । ତାର ତୁଳନାରେ ପ୍ରସ୍ତୁତର ନିନ୍ଦା କରାଗଲେ ବ୍ୟାଜସ୍ତୁତି ଅଳଙ୍କାର ହୁଏ । ପ୍ରସ୍ତୁତର ନିନ୍ଦାରେ ମଧ୍ୟ ପ୍ରଂଶସା ଲୁକ୍‌କାୟିତ ଥାଏ । ପରବର୍ତ୍ତୀ ଆଚାର୍ଯ୍ୟବୃନ୍ଦ ଦୁଇ ପ୍ରକାରରେ ବ୍ୟାଜସ୍ତୁତି ବ୍ୟକ୍ତ କରିଛନ୍ତି । ଯଥା-ନିନ୍ଦାରୁ ପ୍ରଶଂସା ଓ ପ୍ରଶଂସରୁ ନିନ୍ଦା ବ୍ୟକ୍ତ ହେଲେ ବ୍ୟାଜସ୍ତୁତି ହୁଏ ।

୩୨) ଉଦାହରଣ — ରାମଚନ୍ଦ୍ର ସାତ ଗୋଟି ଶାଳବୃକ୍ଷକୁ ଏକ ସଙ୍ଗରେ ଭେଦକଲେ । ପରଶୁରାମ କ୍ରୌଞ୍ଚନାମକ ପର୍ବତକୁ ଭେଦ କଲେ । ସେ ଦୁହିଁଙ୍କର କାର୍ଯ୍ୟର ଶତାଂଶରୁ ଅଂଶେ ମଧ୍ୟ ଆପଣଂକ ଦ୍ୱାରା କରାଯାଇପାରିଛି କି ?

ତୁମେ ରାମ ଓ ପରଶୁରାମଙ୍କ ତୁଲ୍ୟ ନହେଲେ ମଧ୍ୟ ତାଙ୍କଠାରୁ କିଛି କମ୍ ଅଟ । ଅତଏବ ବ୍ୟାଜସ୍ତୁତି ଅଟେ ।

ଅନୁରୂପ ଯଥା - ଏ ଭୂମିର ସୁତ, ତୁମେ ଟିକି ଆର୍ଯ୍ୟନାମ ଦାୟାଦ ଜଗତେ ।
ରଣ ଯୁଦ୍ଧେ ନ ଦେବାର ସୂଚ୍ୟଗ୍ର ମେଦିନୀ, ପଣ ଯେଉଁ ଆର୍ଯ୍ୟଙ୍କର,
ବଢ଼େ ଟିକି ଆହେ ଯୋଧେ ତୁମ ଧମନୀରେ [ମହାଯାତ୍ରା] ।

ଆର୍ଯ୍ୟଙ୍କ ଗୁଣ ପ୍ରଶଂସା କରାଯାଇଛି ସତ, କିନ୍ତୁ ଆର୍ଯ୍ୟ ବଂଶଧର ତାଙ୍କଠାରୁ କିଛି କମ୍ ଅଟନ୍ତି । ତେଣୁ ବ୍ୟାଜସ୍ତୁତି ।

୩୩] ନିଦର୍ଶନା—ଯଥା,ଇବ,ବତ୍ ବ୍ୟତୀତ କେବଳ ନିବୃତ୍ତି ଦ୍ୱାରା ବଣିଷ୍ଟ ଅର୍ଥର ପ୍ରଦର୍ଶନ ନିଦର୍ଶନା ଅଟେ ।

ନିଦର୍ଶନ=ଉଦାହରଣ । ଯେଉଁଠି କୌଣସି ଉଦାହରଣ ବଚନ ଦ୍ୱାରା ନହୋଇ କାର୍ଯ୍ୟ ଦ୍ୱାରା ସୂଚିତ ଦିଆଯାଏ, ସେଠାରେ ନିଦର୍ଶନା ଅଳଙ୍କାର ହୁଏ । ସାଦୃଶ୍ୟ ହେଠାରେ ବ୍ୟଙ୍ଗ ରହେ ।

ଅସ୍ତଂ ମନ୍ଦଦ୍ୟୁତର୍ଭାସ୍ୱାନସ୍ତଂ ପ୍ରତି ପିପାସତି ।
ଉଦୟଃ ପତନାୟେତି ଶ୍ରୀମତୋ ବୋଧୟନ୍ନରାନ୍ ॥ ୩୪ ।
ଉପମାନେନ ତଦ୍ଭାବମୁପମେୟସ୍ୟ ସାଧୟନ୍ ।
ଯାଂ ବଦତ୍ୟୁପମାମେତଦୁପମାରୂପକଂ ଯଥା ॥ ୩୫ ॥
ସମଗ୍ରଗଗନାୟାମମାନଦଣ୍ଡୋ ରଥାଙ୍ଗିନଃ ।
ପାଦୋ ଜୟତି ସିଦ୍ଧସ୍ତ୍ରୀ ମୁଖେନ୍ଦୁନବଦର୍ପଣଃ ॥ ୩୬ ॥

---

୩୪] **ଉଦାହରଣ**—ଅସ୍ତାଚଳ ଅଭିମୁଖେ ଗଢଶୀଳ ଏବଂ ମ୍ଳାନ ତେଜ ସମ୍ପନ୍ନ ସୂର୍ଯ୍ୟ ସମୃଦ୍ଧିଶାଳୀ ଲୋକଙ୍କୁ ଏତିକ ବୁଝାଇ ଦେଉଅଛନ୍ତି, ଯେ ଉଦୟ [ଉନ୍ନତି] ପତନର କାରଣ ଅଟେ ।

ଉଦୀୟମାନ ସୂର୍ଯ୍ୟର ସମୟରେ ପତନ ଘଟେ, ସେହିପରି ଶ୍ରୀସମ୍ପନ୍ନ ବ୍ୟକ୍ତିର ପତନଂମଧ୍ୟ ଅନିବାର୍ଯ୍ୟ । ଏହି ଅର୍ଥଟି ଯଥା,ଇବ ଆଦି ଉପମାବଚକ ଶବ୍ଦ ବ୍ୟତୀତ ଅସ୍ତ ହେବା କ୍ରିୟା ଦ୍ୱାରା ପ୍ରତୀତ ହୁଏ । ତେଣୁ ନିଦର୍ଶନା ।

ଅନୁରୂପ ଯଥା - ଶଇଳ ଶିଖର ଗଢଜଳବନ୍ଦୁକଣ,ବାତାଘାତେ ତଳେପଡ଼ି କରଇ ସୂଚନ
ସମୁନ୍ନତ ପଦସଦଲଭେ ଲଘୁଜନ, ଅବଶ୍ୟ ସମ୍ଭବେ ତାର ଅଚରେ ପତନ ।
[ଅଲଙ୍କାର ଚନ୍ଦ୍ରିକା]

ଯେପରି ଜଳବନ୍ଦୁ ଉନ୍ନତ ପଦ ଲଭ କରି ତଳେ ପଡେ, ସେହିପରି କ୍ଷୁଦ୍ରବ୍ୟକ୍ତି ଉନ୍ନତ ପଦ ଲଭ କଲେ ଅବଶ୍ୟପତିତ ହୁଏ । ଏହି ଅର୍ଥ ଉପମାବାଚକ ବ୍ୟତୀତ କ୍ରିୟା ଦ୍ୱାରା ପ୍ରତୀତ ହୁଏ । ତେଣୁ ନିଦଶନା ଅଲଙ୍କାର ।

୩୫] **ଉପମାରୂପକ**—ଉପମାନ ସହିତ ଉପମେୟର ଅଭିନ୍ନତା ପ୍ରତିପାଦନ କରି ପୁଣି ତାହାକୁ ଉପମା ରୂପରେ ଉପସ୍ଥାପନ କଲେ ଉପମାରୂପକ ଅଲଂକାର ହୁଏ ।
ତଦ୍ଭାବ -ଉପମାନ ଭାବ, ଅଭିନ୍ନତା

୩୬] **ଉଦାହରଣ**--ସମଗ୍ର ବିସ୍ତୃତ ଆକାଶର ମାନଦଣ୍ଡ ରୂପ ବିଷ୍ଣୁଙ୍କ ଚରଣ ସର୍ବୋତ୍କୃଷ୍ଟ ଅଟେ । ସେହିପାଦ ସିଦ୍ଧ-ସ୍ତ୍ରୀଙ୍କର ମୁଖରୂପକ ଚନ୍ଦ୍ର ପାଇଁ ଦର୍ପଣ ସ୍ୱରୂପ ଅଟେ ।

ଏଠାରେ ବିଷ୍ଣୁଙ୍କ ପାଦ ଗଗନର ମାନଦଣ୍ଡ ସହିତ ଅଭେଦ ହେତୁ ରୂପକ ଏବଂ ସିଦ୍ଧ ସ୍ତ୍ରୀଂକ ମୁଖ ଚନ୍ଦ୍ର ପାଇଁ ଦର୍ପଣ ପରି ବର୍ଣ୍ଣିତ ହେତୁ ଉପମା ସୂଚକ ହୋଇଅଛି । ଅତଏବ ଉପମାରୂପକ ଅଲଂକାର । ପାଦ ମାନଦଣ୍ଡ ଓ ଦର୍ପଣ ପରି କହିବା ଦ୍ୱାରା

ଉପମାନୋପମେୟୟୋଃ ଯତ୍ର ପର୍ଯ୍ୟାୟେଣ ଭବେତ୍ ।
ଉପମେୟୋପମାଂ ନାମ ବ୍ରୁବତେ ତାଂ ଯଥୋଦିତାମ୍ ॥ ୩୭ ॥
ସୁଗନ୍ଧି ନୟନାନନ୍ଦ ମଦିରାମଦପାଟଳମ୍ ।
ଅମ୍ଭୋଜମିବ ବକ୍ତ୍ରଂ ତେ ତ୍ୱଦାସ୍ୟମିବ ପଙ୍କଜମ୍ ॥ ୩୮ ॥
ତୁଲ୍ୟକାଳେ କ୍ରିୟେ ଯତ୍ର ବସ୍ତୁଦ୍ୱୟସମାଶ୍ରୟେ ।
ପଦେନୈକେନ କଥ୍ୟେତେ ସହୋକ୍ତିଃ ସା ମତା ଯଥା ॥ ୩୯ ॥

---

ଉପମାରୂପକ । ଏହା ଉପମା ଓ ରୂପକର ମିଶ୍ରଣ ପରି ବୋଧ ହେବାରୁ ପରବର୍ତ୍ତୀ ଆଳଂକାରିକ ଉପମା ରୂପକଙ୍କୁ ସ୍ୱୀକାର କରି ନାହାନ୍ତି ।

ଅନୁରୂପ ଯଥା-ହେ ରାମ ଶ୍ୟାମ କାମ ସମ ସୁଷମ କାମଯମଧାମ ବନ୍ଦନ
ଦାନବ ଦାନବାରି ଦାନବତ୍ସଳ ଜାନକୀ ହୃଦୟ ଚନ୍ଦନ ନୃପ କେଶରୀ
ରାବଣ ବାରଣ କେଶରୀ ପ୍ରଖର ଖରଦୂଷଣଙ୍କୁ ଭୀଷଣ ଘଟକର୍ଣ୍ଣ ଘଟ କବାରି ।
[ ରା ହା ୧୫-୧୮ ]

ଏଠାରେ ରାମଙ୍କୁ କାମ ସମ କହିବାରେ ଉପମା ଓ ରାବଣ ବାରଣ କେଶରୀରେ ରୂପକ ହେତୁ ଉପମାରୂପକ ଅଳଂକାର ।

୩୭] **ଉପମେୟୋପମା** ଯହିଁ ପର୍ଯ୍ୟାୟ କ୍ରମରେ ଉପମାନକୁ ଉପମେୟ ଓ ଉପମେୟକୁ ଉପମାନ ରୂପରେ ଉପସ୍ଥାପନ କରାଯାଏ । ତେବେ ତାହାକୁ ଉପମେୟୋପମା ଅଳଙ୍କାର କହନ୍ତି ।ଯେପରି କୁହାଯାଏ —

୩୮] **ଉଦାହରଣ**—ସୁଗନ୍ଧିତ, ନେତ୍ରାନନ୍ଦ ବର୍ଧକ ତଥା ମଦ୍ୟର ନିଶାରେ ରକ୍ତ ବର୍ଣ୍ଣ ତୁମର ମୁଖ ପଦ୍ମ ସଦୃଶ ଅଟେ ଏବଂ ପଦ୍ମ ତୁମର ମୁଖ ସଦୃଶ ଅଟେ ।

ଏଠାରେ ମୁଖ ଉପମେୟ ଓ କମଳ ଉପମାନ, ପୁଣି କମଳ ଉପମେୟ ଓ ମୁଖ ଉପମାନ ରୂପେ ବର୍ଣ୍ଣିତ । ଅନ୍ୟ କୌଣସି ବସ୍ତୁ ଏହାର ସମାନ ନୁହେ । ଏହା ପ୍ରତୀତ ହେବାରୁ ଉପମେୟୋପମା ।

ଅଥବା ମନ୍ଦ ଚଞ୍ଚଳ କୋମଳ ଶୀତଳ ଲାବଣ୍ୟାକର ସୁଷମ ।
ସୁଧାଂଶୁ ପ୍ରତିମ ତୋ ମୁଖ ମୁଖଟି ଦିଶେ ସୁଧାକର ସମ । [ସ୍ୱକୃତ]

ଏଠାରେ ଚନ୍ଦ୍ର ଉପମାନ ଓ ମୁଖ ଉପମେୟ ପୁଣି ମୁଖ ଉପମାନ ଓ ଚନ୍ଦ୍ର ଉପମେୟ । ତୃତୀୟ ବସ୍ତୁ ଏହାର ସମକକ୍ଷ ନାହିଁ । ଏହା ହିଁ ପ୍ରତିପାଦିତ । ତେଣୁ ଉପମେୟୋପମା ଅଳଙ୍କାର ଅଟେ । ପରବର୍ତ୍ତୀ ସମୟରେ ଏହି ଅଳଙ୍କାର ଯଥାଯଥା ଗୃହୀତ ।

ହିମପାତାବିଲଦିଶୋ ଗାଢାଲିଙ୍ଗନ ହେତବଃ ।
ବୃଦ୍ଧିମାୟାନ୍ତି ଯାମିନ୍ୟଃ କାମିନୀଂ ପ୍ରୀତିଭିଃ ସହ ॥ ୪୦ ॥
ବିଶିଷ୍ଟସ୍ୟ ଯଦାଦାନମନ୍ୟାପୋହେନ ବସ୍ତୁନଃ ।
ଅର୍ଥାନ୍ତରନ୍ୟାସବତୀ ପରିବୃତ୍ତିରସୌ ଯଥା ॥ ୪୧ ॥

---

୩୯] **ସହୋକ୍ତି** - ଯେଉଁଠି ଦୁଇଟି ଭିନ୍ନ କ୍ରିୟା ଦୁଇଟି ବସ୍ତୁ ସହିତ ଏକ ସମୟରେ ସମ୍ବନ୍ଧିତ ହୁଅନ୍ତି । କିନ୍ତୁ ତାହା ଗୋଟିଏ ଶବ୍ଦରେ ପ୍ରତିପାଦିତ ହୁଏ, ତେବେ ତାହାକୁ ସହୋକ୍ତି କହନ୍ତି । ଯଥା -

୪୦] **ଉଦାହରଣ** - ହିମପାତ ହେତୁ ପଙ୍କିଲ ଦିଗଯୁକ୍ତ, ପ୍ରଗାଢ ଆଲିଂଗନର ପ୍ରେରକ ରାତ୍ରି ସମୂହ କାମିନୀଙ୍କ ପ୍ରୀତି ସହିତ ବୃଦ୍ଧିପ୍ରାପ୍ତ ହୁଅନ୍ତି ।

ସହୋକ୍ତିରେ ଭିନ୍ନ ବସ୍ତୁସ୍ୱାଶ୍ରିତ କ୍ରିୟାଗୁଡିକ ଗୋଟିଏ ପଦରେ ଏକ ସମୟରେ କଥିତ ହୁଅନ୍ତି । ସହାର୍ଥ ବାଚକ ଶବ୍ଦର ପ୍ରୟୋଗ ଅନିବାର୍ଯ୍ୟ । ଏଠାରେ ଶୀତରାତ୍ରି ବର୍ଣ୍ଣିତ । ଶୀତରାତ୍ରି ଦୀର୍ଘ ହୋଇ ଥାଏ । ଶୀତ ହେତୁ କାମିନୀଙ୍କ ରମଣେଚ୍ଛା ମଧ୍ୟ ବଢ଼ି ଯାଏ । କାମିନୀଙ୍କ ପ୍ରୀତି ଏବଂ ରାତ୍ରି 'ବୃଦ୍ଧିମାୟାନ୍ତି' ଏକମାତ୍ର କ୍ରିୟା ପଦରେ କଥିତ ହେତୁ ସହୋକ୍ତି ଅଳଙ୍କାର ଅଛି ।

ଯଥା—ଦିଗଙ୍ଗନାଙ୍କର ହୁଳହୁଳି ସଙ୍ଗେ ଘନ ଘଡ଼ଘଡ଼ି ମିଶିଗଲା ରଙ୍ଗେ (ତପସ୍ୱିନୀ)

ଏଠାରେ ହୁଳହୁଳି ସହ ଘନ ଘଡ଼ଘଡ଼ି ମିଶିଗଲା' ଏକମାତ୍ର କ୍ରିୟା ଦ୍ୱାରା ଉକ୍ତ ହେତୁ ସହୋକ୍ତି ।

ସହାର୍ଥସ୍ୟ ବଲାଦେକଂ ଯତ୍ରସ୍ୟାଦ୍ ବାଚକଂ ଦ୍ୱୟୋଃ ।
ସା ସହୋକ୍ତିମୂଳଭୂତାତିଶୟୋକ୍ତିର୍ଯଦା ଭବେତ୍ । (ସାହିତ୍ୟ ଦର୍ପଣ)
ଏଥିରେ ଅତିଶୟୋକ୍ତି ଯୁକ୍ତହେବା ଅଧିକ ଲକ୍ଷିତ ।

୪୧] **ପରିବୃତ୍ତି**-ସାମନ୍ୟ ବସ୍ତୁର ତ୍ୟାଗରେ ବିଶିଷ୍ଟ ବସ୍ତୁର ପ୍ରାପ୍ତି କଥନ ଯଦି ଅର୍ଥାନ୍ତର ନ୍ୟାସ ଯୁକ୍ତ ହୁଏ । ତେବେ ପରିବୃତ୍ତି ଅଳଙ୍କାର ।

ଭାମହଙ୍କ ମତରେ ପରିବୃତ୍ତିରେ ଦୁଇଟିକଥା ଉଲ୍ଲେଖ ଯୋଗ୍ୟ । ୧) ସମାନ୍ୟ ବସ୍ତୁ ତ୍ୟାଗରେ ବିଶିଷ୍ଟ ବସ୍ତୁର ପ୍ରାପ୍ତି । ୨) ଅର୍ଥାନ୍ତର ନ୍ୟାସର ସତ୍ତା । ପରବର୍ତ୍ତୀ ଆଳଙ୍କାରିକ ପରିବୃତ୍ତିରେ ଅର୍ଥାନ୍ତର ନ୍ୟାସର ସତ୍ତାକୁ ଆବଶ୍ୟକ ମନେ କରି ନାହାନ୍ତି । କିନ୍ତୁ ସମ-ବିଷମ ବିନିମୟରେ ପରିବୃତ୍ତି ହେବା ସ୍ୱୀକାର କରିଛନ୍ତି ।

ସମେ ବା ବିଷମେ ସମ ଅବା ବିଷମର ।
ବିନିମୟ ହେଲେ ପରିବୃତ୍ତି ଅଳଙ୍କାର । (ଅଳଙ୍କାର ଚନ୍ଦ୍ରିକା) ତେଣୁ ପରିବୃତ୍ତି ଚତୁର୍ବିଧ ।

ପ୍ରଦାୟ ବିତ୍ତମର୍ଥିଭ୍ୟଃ ସ ଯଶୋଧନମାଦଦେ ।
ସତାଂ ବିଶ୍ୱଜନୀନାନାମିଦମ ସ୍ଖଳିତଂ ବ୍ରତମ୍ ॥ ୪୨ ॥
ଉପମାନେନ ତତ୍ତ୍ୱଂ ଚ ଭେଦଂ ଚ ବଦତଃ ପୁନଃ ।
ସସନ୍ଦେହଂ ବଚଃ ସ୍ତୁତୌ ସସନ୍ଦେହଂ ବିଦୁର୍ଯଥା ॥ ୪୩ ॥
କିମୟଂ ଶଶୀ ନ ସ ଦିବା ବିରାଜତେ ।
କୁସୁମାୟୁଧୋ ନ ଧନୁରସ୍ୟ କୌସୁମମ୍ ॥
ଇତି ବିସ୍ମୟାଦ୍ୱିମୃଶତୋଽପି ମେ ମତି-
ସ୍ତ୍ୱୟି ବୀକ୍ଷିତେ ନ ଲଭତେଽର୍ଥନିଶ୍ଚୟମ୍ ॥ ୪୪ ॥

---

୪୨) ଉଦାହରଣ—ସେ ଯାଚକକୁ ଧନ ଦେଇ ଯଶ ରୂପକ ସମ୍ପତ୍ତି ଲାଭ କଲେ । ବାସ୍ତବରେ ବିଶ୍ୱଜନର ହିତାକାଙ୍କ୍ଷୀ ସଜ୍ଜନଙ୍କ ଏହା ବ୍ରତ ଅଟେ ।

ଏଠାରେ ଚଞ୍ଚଳ ( ନିକୃଷ୍ଟ) ଧନ ଦେଇ ସ୍ଥିର (ଉତ୍କୃଷ୍ଟ) ଯଶ ଲାଭ କରିବା ପରିବୃତ୍ତି ଅଲଂକାର ଅଟେ । ଉତ୍ତରାର୍ଦ୍ଧରେ ଅର୍ଥାନ୍ତର ନ୍ୟାସ ରହିଛି ।

ଯଥା ବା - ଅପରି ବୋଇଲ ମନ୍ଦ ତେଜ ଭଲ ଭାବ ଯେଣି ଥାନ୍ତି ସନ୍ତ ।
ମନ ବଚନରେ କର୍ମର ଏକତା ରଖନ୍ତି ରଣହବନ୍ତ । [ପ୍ରେମ ଚନ୍ଦ୍ରିକା]

ପ୍ରଥମ ବାକ୍ୟରେ ମନ୍ଦ ବଚନମୟରେ ଭଲଭାବ ଘେନିବା ବର୍ଣ୍ଣିତ । ଦ୍ୱିତୀୟ ବାକ୍ୟଟି ଅର୍ଥାନ୍ତର ନ୍ୟାସ ଭାବରେ ଚରଣବନ୍ତଙ୍କ ମହତ୍ତ୍ୱ ପ୍ରକାଶିତ ତେଣୁ ପରିବୃତ୍ତି ।

୪୩) ସସନ୍ଦେହ - ଉପମେୟର ପ୍ରଶଂସା ପାଇଁ ଉପମାନ ସହିତ ଅଭେଦ ଓ ଭେଦ ପ୍ରଦର୍ଶନସନ୍ଦେହ ପୂର୍ଣ୍ଣ ହେଲେ ସସନ୍ଦେହ ଅଲଂକାର ।

୪୪) ଉଦାହରଣ - ଯଥା ଇଏ କ'ଣ ଚନ୍ଦ୍ରମା ? କିନ୍ତୁ ସେ ତ ଦିନରେ ପ୍ରକାଶିତ ହୁଏ ନାହିଁ । ତେବେ କ'ଣ କାମଦେବ ? ଏହାରତ ଫୁଲଧନୁ ନାହିଁ । ଏହି ଭାବରେ ତୁମକୁ ଦେଖିବା ପରେ ବିସ୍ମୟ ପୂର୍ବକ ବିଚାର କରି ମଧ୍ୟ ମୋର ବୁଦ୍ଧି ସତ୍ୟରେ ଉପନୀତ ହୋଇ ପାରୁନାହିଁ ।

ଏଠାରେ ବର୍ଣ୍ଣନୀୟ ରାଜାଙ୍କ ଚନ୍ଦ୍ର ଓ କନ୍ଦର୍ପ ଉପମାନ ସହିତ ଭିନ୍ନ ଓ ଅଭିନ୍ନ ରୂପେ ପ୍ରକାଶ କରାଯାଇ ଥିବାରୁ ସସନ୍ଦେହ ଅଲଂକର ।

ଅନୁରୂପ ଯଥା - ଶଶିନୁହ ନୁହଇମାର, ନାହିଁ ଫୁଲ ଧନୁଶର ।
ସୁଧାକର ନୋହେ ତହିଁ କଳଂକ ଅଛୁ
ଆଉ ଦେବତାମାନଙ୍କ କଥା ଆଣିବାମନକୁ
ମୋହକ ସୁନ୍ଦରୁ ଏ ପୁରୁଷ ହୋଇଛୁ । [ଲ-ବ-୧୧-୧୮]

ଏଠାରେ ମଧ୍ୟ ଅନୁରୂପ ଭାବରେ ଚନ୍ଦ୍ର ଓ କନ୍ଦର୍ପ ସହିତ ପୁରୁଷର ଅଭେଦ କଳ୍ପନା କରାଯାଇ ପରେ ନିଷେଧ କରାଯାଇଛି । ତେଣୁ ସସନ୍ଦେହ ଅଲଙ୍କାର ।

ଯତ୍ର ତେନୈବ ତସ୍ୟ ସ୍ୟାଦୁପମାନୋପମେୟତା ।
ଅସାଦୃଶ୍ୟ-ବିବକ୍ଷାତସ୍ତମିତ୍ୟାହୁର ନନ୍ୱୟମ୍ ॥ ୪୫ ॥

ତାମ୍ବୂଲରାଗବଲୟଂ ସ୍ଫୁରଦ୍ଦଶନଦୀଧିତି ।
ଇନ୍ଦୀବରାଭନୟନଂ ତବେବ ବଦନଂ ତବ ॥ ୪୬ ॥

ଶ୍ଳିଷ୍ଟସ୍ୟାର୍ଥେନ ସଂଯୁକ୍ତଃ କିଂଚିଦୁତ୍ପ୍ରେକ୍ଷୟାନ୍ୱିତଃ ।
ରୂପକାର୍ଥେନ ଚ ପୁନରୁତ୍ପ୍ରେକ୍ଷାବୟବୋ ଯଥା ॥ ୪୭ ॥

ତୁଲ୍ୟୋଦୟାବସାନତ୍ୱାଦ୍ ଗତେଽସ୍ତଂ ପ୍ରତି ଭାସ୍ୱତି ।
ବାସାୟ ବାସରଃ କ୍ଳାନ୍ତୋ ବିଶତୀବ ତମୋଗୃହମ୍ ॥ ୪୮ ॥

---

୪୫) ଅନନ୍ୱୟ—ଅନ୍ୟ ବସ୍ତୁର ଅସାଦୃଶ୍ୟ ଦେଖାଇବା ପାଇଁ ସେହି ବସ୍ତୁ ସହିତ ସେହି ବସ୍ତୁର ଉପମାନତା ଓ ଉପମେୟତା ବର୍ଣ୍ଣିତ ହେଲେ ଅନନ୍ୱୟ ଅଲଙ୍କାର ହୁଏ ।

୪୬) ଉଦାହରଣ—ପାନର 'ବଳୟୀକୃତ ରକ୍ତିମାରେ ଦୀପ୍ତଦନ୍ତପଙ୍କ୍ତି ଓ ନୀଳକମଳ ପରି ନେତ୍ର ବିଶିଷ୍ଟ ତୁମର ମୁଖ କେବଳ ତୁମର ମୁଖ ସଦୃଶ ଅଟେ ।

ଏଠାରେ ମୁଖ ଉପମେୟର ମୁଖହିଁ ଉପମାନ ରୂପେ ବର୍ଣ୍ଣିତ ହେବାରୁ ଅନନ୍ୱୟ ।

ଅନୁରୂପ ଯଥା -ଯେ ରୂପେ ଗଗନ ଗଗନ ସଦୃଶ ସାଗର ସାଗରୋପମ ।
ଅବନୀ ମଣ୍ଡଳେ ସର୍ବ ରାଜଗୁଣେ ତୁମେ ଏକା ତୁମ୍ଭ ସମ (ଇନ୍ଦୁମତୀ)

ପରବର୍ତ୍ତୀ କାଳରେ ଭାମହଙ୍କ ଅନୁଯାୟୀ ରାଜାନକ କୁନ୍ତକ ଅନନ୍ୱୟକୁ ସ୍ୱତନ୍ତ୍ର ଅଲଙ୍କାର ମନେ ନକରି ଉପମାର ପ୍ରଭେଦରୂପ ବୋଲି କହିଛନ୍ତି ।

୪୭) ଉତ୍ପ୍ରେକ୍ଷାବୟବ—ଶ୍ଳେଷାର୍ଥରେ ସଂଯୁକ୍ତ, ଉତ୍ପ୍ରେକ୍ଷା ଓ ରୂପକ ଦ୍ୱାରା କିଂଚିତ୍ ଅନ୍ୱିତ ଉତ୍ପ୍ରେକ୍ଷାବୟବ ଅଲଙ୍କାର ଅଟେ ।

ବାସ୍ତବରେ ଭାମହ ଉତ୍ପ୍ରେକ୍ଷାବୟବକୁ ସ୍ୱତନ୍ତ୍ର ଅଲଙ୍କାର ରୂପେ ପ୍ରତିପାଦନ କରିଥିଲେ ମଧ୍ୟ ଏହା ଶ୍ଳିଷ୍ଟ, ଉତ୍ପ୍ରେକ୍ଷା ଓ ରୂପକର ମିଶ୍ରଣ ହେବାରୁ ଅଲଙ୍କାର ସଂସୃଷ୍ଟି ରୂପେ ଗୃହୀତ ହେବା ଉଚିତ । ପରବର୍ତ୍ତୀ ଆଲଙ୍କାରିକମାନେ ଏହି ଅଲଙ୍କାରକୁ ସ୍ୱୀକୃତି ଦେଇନାହାନ୍ତି ।

୪୮) ଉଦାହରଣ—ଉଦୟ ଅସ୍ତ ସମାନ ହେବାରୁ, ସୂର୍ଯ୍ୟ ଅସ୍ତାଚଳକୁ ଚାଲିଯିବାପରେ କ୍ଳାନ୍ତ ଦିବସ ମଧ୍ୟ ବିଶ୍ରାମ ପାଇଁ ବୋଧହୁଏ; ଅନ୍ଧକାର-ଗୃହରେ ପ୍ରବେଶ କରୁଅଛି ।

ବଗଚଭୂଷା ପ୍ରସୃଷ୍ଟିରନ୍ୟାଳଂକାରଯୋଗତଃ ।
॥ ଉଚିତା ରନ୍ନମାଳେବ ହାରେଣେବ ମୁଦ୍ରିତା ଯଥା ॥ ୪୯ ॥
ଗାମ୍ଭୀର୍ଯ୍ୟଲାଘବବତୋସ୍ତ୍ୱଂ ଭଦ୍ୟୋଃ ପ୍ରାଜ୍ୟରତ୍ନୟୋଃ ।
ସୁଖସେବ୍ୟୋ ଜନାନାଂ ତ୍ୱଂ ଦୁଷ୍ଟଗ୍ରାହୋଽମ୍ବୁଧିଃ ପତିଃ ॥ ୫୦ ॥

---

ଲୋଚନକାର ଅଭିନବଗୁପ୍ତ ଏହି ଶ୍ଳୋକକୁ ସଂକର ଅଳଂକାରର ଉଦାହରଣ ରୂପେ ଉପସ୍ଥାପନ କରିଛନ୍ତି ।

ଅନୁରୂପ ଯଥା—ବାସବ ଦିଗ ଅଭି ମୁକୁରଣୀ କରକ ଜଳ ରକ୍ତପିଣ୍ଡ ଜାଣି ।
ତୁମ୍ଭ ସଙ୍କେତର ଦୃଷ୍ଟି ଆସିଲା, ବଢେ କଣ୍ଠେ ଶୀତ ବାତ ସେ ହେଲା ।
ବୁଚ୍ଛେଦନ କର ତମକୁ କ ସେ, ବିଲେପନ ଚନ୍ଦ ରକତ ଦର୍ଶେ ।

---

ବସ୍ତୁଳେ ରୂପେ ଲୁପ୍ତ ଲାଗି ଚଲ କଳ୍ୟାଣ କ୍ୟାଳ ଆରମ୍ଭ ଆସ୍ଥ ।(ଟେ୍ରୈ ବ ୬-୩୪)

ପ୍ରସ୍ତୁତରେ ଏ ଅମଣ୍ଡଳ ଦେଖି କବି ଉତ୍ପ୍ରେକ୍ଷା କରନ୍ତେ । ବାସବ ଦିଗ (ପୂର୍ବଦିଗ) ରୂପକ ଅଭି ମୁକୁରଣୀ (ଦଗଦ୍ବୃତି ନ) ରକ୍ତ ପିଣ୍ଡ ଜାତ କଲ କ ? ତାହାକୁ ମୂର୍ତ୍ତିମନ୍ତ କରିବା ପାଇଁ କଣ୍ଠରେ ବଢେ କି ତେଣୁ ଶୀତ ବାତ କହିଲି । ତମ (ଅନ୍ଧକାର-ରାତ୍ରି) କୁ ଚନ୍ଦରେ ଛେଦନ କରିବାରୁ ରକ୍ତଲିପ୍ତ ହୋଇଛି କି ? ବିଧାଣ ଜାଲ ଜାଣି ଉପରେ ସର୍ଜିତର ମାତେ ଲୁଚାଉଛନ୍ତି । ଏଠାରେ ବାସବ ଦିଗରେ ଅଭି ମୁକୁରଣୀର ଆରୋପ ହେତୁ ରୂପକ । ତମ ଅନ୍ଧକାର ଓ ତମ ରାହୁ, ଅତଏବ ଶ୍ଳେଷ । ବିଚ୍ଛେଦନ କର ତମକୁ କ ସେ ? ପଦରେ ଉତ୍ପ୍ରେକ୍ଷା । ତେଣୁ ଉତ୍ପ୍ରେକ୍ଷାବୟବ ।

୪୯) ପ୍ରଂଶସ୍ତ୍ର ଅନେକ ରତ୍ନରେ ଗ୍ରଥିତ ମାଳା ପରି ବହୁତ ଅଳଂକାରର ଯୋଗରେ ସଂସୃଷ୍ଟି ନାମକ ସୁନ୍ଦର ଅଳଂକାର ସମ୍ପନ୍ନ ହୁଏ । ତାହାକୁ କମେଣ୍ଟ ଭାବରେ ପ୍ରକାଶ କରାଯାଏ ।

ଅନେକ ଅଳଂକାର ଯୋଗରେ ସଂସୃଷ୍ଟି ହୁଏ, କିନ୍ତୁ ଭାମହ ଉତ୍ପ୍ରେକ୍ଷାବୟବକୁ ପୃଥକ ଅଳଂକାର ରୂପେ କପଣ ଗ୍ରହଣ କରିଛନ୍ତି, ତାହାସ୍ପଷ୍ଟ ହୁଏ ନାହିଁ ।

୫୦) ଉଦାହରଣ—ହେ ନୃପ ତୁମ୍ଭେ କପରେ ଗାମ୍ଭୀର୍ଯ୍ୟ, ଲଘୁତା ତଥା ପ୍ରଚୁର ରତ୍ନ ରହିଛି ତଥାପି ତୁମେ ଲୋକଂକ ପାଇଁ ସୁପ୍ରାପ୍ୟ । କିନ୍ତୁ ସମୁଦ୍ର ଦୁଷ୍ଟ ଗ୍ରାହରେ ଯୁକ୍ତ ହେତୁ ଅସେବ୍ୟ ଅଟେ ।

ଅର୍ଥାତ୍ ଲୋକେ ତୁମ୍ଭ ପାଖରେ ସ୍ୱଚ୍ଛନ୍ଦରେ ପହଞ୍ଚିପାରିବେ, କିନ୍ତୁ ସମୁଦ୍ରରେ ପ୍ରବେଶ କରିବାକୁ କିଏ ସାହସ କରିବ ? ଏହି କାରିକାର ପୂର୍ବାର୍ଦ୍ଧରେ ଗାମ୍ଭୀର୍ଯ୍ୟ, ଲାଘବ ଆଦି ଶ୍ଳେଷ ରହିଛି । ଉତ୍ତରାର୍ଦ୍ଧରେ ସମୁଦ୍ର ଅପେକ୍ଷା ତୁମେ ଶ୍ରେଷ୍ଠ ହେତୁ ବ୍ୟତିରେକ । ଅତଏବ ସଂସୃଷ୍ଟି ଅଳଙ୍କାର ।

ଅନଲଂକୃତକାନ୍ତଂ ତେ ବଦନଂ ବନଜଦ୍ୟୁତ ।
ନିଶାକୃତଂ ପ୍ରକୃତ୍ୟୈବ ଶୃଙ୍ଗେଃ କା ବାସ୍ତ୍ୟଲଂକୃତଃ ॥ ୫୧ ॥
ଅନ୍ୟେଷାମପି କର୍ତ୍ତବ୍ୟା ସଂସୃଷ୍ଟିରନୟା ଦିଶା ।
କିୟଦୁଦ୍‌ଘଟିତଙ୍କେଭ୍ୟଃ ଶକ୍ୟଂ କଥୟିତୁଂ ମୟା ॥ ୫୨ ॥
ଭାବିକତ୍ୱମିତି ପ୍ରାହୁଃ ପ୍ରବନ୍ଧବିଷୟଂ ଗୁଣମ୍
ପ୍ରତ୍ୟକ୍ଷା ଇବ ଦୃଶ୍ୟନ୍ତେ ଯତ୍ରାର୍ଥା ଭୂତଭାବିନଃ ॥ ୫୩ ॥

---

ଅନୁରୂପ ଯଥା—ବିମ୍ବାଧାରଙ୍କର ଚମ୍ପକ ଅଙ୍ଗୁଳି କମ୍ପନେ ମଧ୍ୟ ଝଙ୍କାର ।
ଉପୁଜିବା ଆଣେ କେନ୍ଦୁଟିରେ ଗଢ଼ା ହେଉଅଛି ଲୌହତାର ।[ପାଟଙ୍ଗ]

ବିମ୍ବାଧରା ଚମ୍ପକ ଅଙ୍ଗୁଳି ଅଂଶରେ ଉପମା ଓ ସମୁଦାୟରେ ପର୍ଯ୍ୟାୟୋକ୍ତ ନିରପେକ୍ଷ (ବିଜାତୀୟ) ଭାବେ ଅବସ୍ଥିତ ହେତୁ ସଂସୃଷ୍ଟି ।

୫୧) ଦ୍ୱିତୀୟ ଉଦାହରଣ—କମଳ ସଦୃଶ କାନ୍ତି ଯୁକ୍ତ ତୁମର ମୁଖ ବିନା ଆଭୂଷଣରେ ମଧ୍ୟ ସୁନ୍ଦର ଅଟେ । ନିସର୍ଗ ସୁନ୍ଦର ଚନ୍ଦ୍ରର କିଣ ବା ଅଳଙ୍କରଣ ହୋଇପାରେ ।

ଏଠାରେ 'ବନଜଦ୍ୟୁତ' (କମଳସମାନକାନ୍ତିଯୁକ୍ତ)ରେ ଉପମା, ଅଳଙ୍କାର ଶୂନ୍ୟ ହୋଇ ମଧ୍ୟ ସୁଂଦର କହିବା ଦ୍ୱାରା ବିଭାବନା (କାରଣ ଅଭାବରେ କାର୍ଯ୍ୟର ଉତ୍ପତ୍ତି) ଉତ୍ତରାର୍ଦ୍ଧରେ ଦୃଷ୍ଟାନ୍ତ ହେତୁ ସଂସୃଷ୍ଟି ଅଳଙ୍କାର । ଭାମହଙ୍କ ମତରେ ବହୁ ଅଳଙ୍କାରର ଏକତ୍ର ସମାବେଶ ସଂସୃଷ୍ଟି । ସେ ସଂକରାଲଂକାର ସ୍ୱୀକାର କରିନାହାନ୍ତି ।

୫୨) ଏହି ରୀତିରେ ଅନ୍ୟ ଅଳଂକାରର ସଂସୃଷ୍ଟି ପ୍ରଦର୍ଶନ କରାଯାଇପାରେ । ଜଳ୍ପନା-ପ୍ରବଣ ବିଜ୍ଞଙ୍କ ପାଇଁ ମୁଁ ଅଧିକା କିଣ ବା କହିବି(କବି ଉଦ୍ଦେଶ୍ୟରେ ଭାମହଙ୍କ ଉକ୍ତି)

୫୩) ଭାବିକତ୍ୱକୁ ପ୍ରବନ୍ଧ ବିଷୟକ ଗୁଣ କୁହାଯାଏ, ଯେଉଁଠି ଭୂତ ଓ ଭବିଷ୍ୟତ ପଦାର୍ଥ ପ୍ରତ୍ୟକ୍ଷ ପରି ଦୃଷ୍ଟିଗୋଚର ହୁଏ ।

ଭାମହଙ୍କ ମତରେ ଅତୀତ ଓ ଭବିଷ୍ୟତ ପଦାର୍ଥକୁ ପ୍ରତ୍ୟକ୍ଷ ରୂପରେ ଦେଖିବା ହେଉଛି ଭାବିକତ୍ୱର ଲକ୍ଷଣ । ଏହାର ସ୍ଥିତି ପ୍ରବନ୍ଧ କାବ୍ୟରେ ଓ ଏହା ଗୁଣ ଅଟେ, ଅଳଙ୍କାର ନୁହେଁ । ଏହାର ଉଦାହରଣ ପାଇଁ ସମଗ୍ର ପ୍ରବନ୍ଧ କାବ୍ୟକୁ ଉଦ୍ଧାର କରିବାକୁ ପଡ଼ିବ । କିନ୍ତୁ ପରବର୍ତ୍ତୀ ଆଳଂକାରିକ ଭାବିକକୁ ଅଳଂକାର ମନେ କରିଛନ୍ତି ଏବଂ ମୁକ୍ତକ କାବ୍ୟରେ ମଧ୍ୟ ଏହାର ସ୍ଥିତି ଦେଖିଛନ୍ତି । ଲକ୍ଷଣ ଏକ ପ୍ରକାର ।

ଯଥା - ଯହିଁଥାଏ ଭାବି ଅବା ଅତୀତ ଅର୍ଥର,
ସାକ୍ଷାତ୍‌କାର ଉକ୍ତି ତେବେ ଭାବିକାଲଂକାର (ଅଳଂକାର ଚନ୍ଦ୍ରିକା)

ଚକୋଦାତ୍ତଦ୍ଭୁତାର୍ଥତ୍ୱଂ କଥାସ୍ୱାଃ ସୁଭଗାଚତା ।
ଶବ୍ଦନାକୁଳତା ଚେତି ତସ୍ୟ ହେତୁଂ ପ୍ରଚକ୍ଷତେ ॥ ୫୪ ॥
ଆଶୀରପି ଚ କେଷାଂଚଦଲଂକାରତୟା ମତା ।
ସୌହୃଦସ୍ୟାବରୋଧୋକ୍ତୌ ପ୍ରୟୋଗୋଽସ୍ୟାଷ୍ଟ ତଦ୍ୟଥା ॥ ୫୫ ॥
ଅସ୍ମିଂଜହୀହି ସୁହୃଦି ପ୍ରଣୟାଭ୍ୟସୂୟା—
ମାଶ୍ଲିଷ୍ୟ ଗାଢମମୁମାନତମାଦରେଣ ।
ବନ୍ଧ୍ୟଂ ମହାନିବ ଘନଃ ସମୟେଽଭିବର୍ଷ
ନ୍ନାନନ୍ଦଜୈର୍ନୟନବାରିଭିରୁକ୍ଷତୁ ତ୍ୱାମ୍ ॥ ୫୬ ॥

---

ଅତୀତ କାର୍ଯ୍ୟର ସାକ୍ଷାତ୍‌କାର ଯଥା - ଦେଖିଲ ଦୃଶ୍ୟ ମୁ ବସି ତୋର ତଟେ ।
ଲଗି ରହିଛୁ ଯା ସଦା ସୃତି ପଟେ ।
ସମୀରେ ଅଝାଳମାଳା ସ୍ଫୀତ କରି
ଦର୍ଶିଣ୍ଡ୍ର ଆସିଲ ଶତଶତ ତରୀ (ଚିଲିକା)

ଏଥିରେ ଅତୀତରେ ଶତ ଶତ ତରୀର ଆଗମନ କବି ଦେଖିଲା ପରି ବର୍ଣ୍ଣନା କରିଥିବାରୁ ଭାବିକ ଅଲଂକାର । ଭାବିକାର୍ଯ୍ୟର ସାକ୍ଷାତ୍‌କାର ଯଥା
ଅଗ୍ନି ସଙ୍ଗେ ସହ୍ୟ ଶୈଳେ ନକାଣନେ ବସି, କହନ୍ତେ ଏସନ ରାଜା ଫିଟିଲି ସହସା
ଇନ୍ଦ୍ରଧନୁ ତୋର ପକ୍ଷୀ ତୋରଣ ଅଗତେ ବଜ୍ରନାଦେ ସିଂହନାଦେ କମ୍ପାଇ ମେଦିନୀ ।
ବାହାରିଲେ ଦଳେ ଦଳେ ସେ ତୋରଣ ମୁଖ ଅସଂଖ୍ୟ ପଦାତି, ସାଦୀ, ଆଧୋରଣ ରଥୀ ।
(ମହାଯାତ୍ରା)

ଏଠାରେ କବି ପକ୍ଷୀର ଭାବି ଅବସ୍ଥା ପାଣ୍ଡବମାନେ ସାକ୍ଷାତ୍ କଲା ପରି ବର୍ଣ୍ଣନା କରିଛନ୍ତି । ପାଣ୍ଡବଙ୍କ ସମୟରେ ପକ୍ଷୀର ଏହି ଅବସ୍ଥା ଭବିଷ୍ୟତ ଅତଏବ ଭାବିକ ଅଲଙ୍କାର ।

୫୪) ଅର୍ଥର ବୈଚିତ୍ର୍ୟ, ଉଦାରତା ଅଦ୍‌ଭୁତତା, କଥାର ଅଭିନେୟତା ଏବଂ ଶବ୍ଦର ସ୍ପଷ୍ଟତା ସେହି ଭାବିକତ୍ୱ ଗୁଣର ଜନ୍ମାଦକ ବୋଲି କୁହାଯାଏ ।
ଆଶୀଃର ଅର୍ଥ ଶୁଭ ଆଶଂସା ବା ମଙ୍ଗଳାକାଂକ୍ଷା ।

୫୫) ଆଶୀଃ—କେତେକ ଆଚାର୍ଯ୍ୟ ଆଶୀଃକୁ ମଧ୍ୟ ଅଲଂକାର ରୂପେ ସ୍ୱୀକାର କରନ୍ତି । ଏହାର ପ୍ରୟୋଗ ସୌହାର୍ଦ୍ଦ ଅଥବା ଅବରୋଧନୀ ବର୍ଣ୍ଣନରେ ହୋଇଥାଏ ।

୫୬) ସୌହାର୍ଦ୍ଦରେ ଆଶୀଃର ଉଦାହରଣ—ଯଥା ନିଜର ଏହି ମିତ୍ର ପ୍ରତି ଥିବା ପ୍ରଣୟ କୋପ ତ୍ୟାଗକର । ଆଦର ପୂର୍ବକ ଏହି ନମ୍ର ବ୍ୟକ୍ତିକୁ ପ୍ରଗାଢ ଭାବେ ଆଲିଙ୍ଗନ କର । ଏ ମଧ୍ୟ ଯଥା ସମୟରେ ବନ୍ଧ୍ୟ ପର୍ବତ ଉପରେ ବର୍ଷା କରୁଥିବା ମେଘ ପରି ତୁମକୁ ଆନଂଦରୁ ଜାତ ଅଶ୍ରୁରେ ସିକ୍ତ କରୁ ।

ମଦାନ୍ଧମାତଙ୍ଗବଭନ୍ନସାଳା
ହତପ୍ରବୀରା ଦ୍ରୁତଖିତପୌରାଃ ।
ଉତ୍ତେଜସା ଦଗ୍ଧ ସମସ୍ତଶୋଭା
ଦ୍ୱିଷାଂ ପୁରଃ ପଶ୍ୟତୁ ରାଜଲୋକଃ ॥ ୫୭ ॥

ଗିରାମଲଂକାରବିଧିଃ ସବିସ୍ତରଃ, ସ୍ୱୟଂ ବିନିଶ୍ଚିତ୍ୟ ଧିୟା ମୟୋଦିତଃ ।
ଅନେନ ବାଗର୍ଥବିଦାମଲଂକୃତା ବିଭାତି ନାରୀବ ବିଦଗ୍ଧମଣ୍ଡନା ॥ ୫୮ ॥

ଇତି ଶ୍ରୀଭାମହାଲଂକାରେ ତୃତୀୟଃ ପରିଚ୍ଛେଦଃ ।

---

ବୋଧହୁଏ, କୌଣସି କାରଣରୁ ଦୁଇ ବନ୍ଧୁଂକ ମଧ୍ୟରେ ବୈମନସ୍ୟ ସୃଷ୍ଟି ହୋଇଯାଇଛି । କୌଣସି ହିତଚିନ୍ତକ ବନ୍ଧୁ ଉଭୟଙ୍କୁ ମିଶାଇବା ଇଚ୍ଛାରେ ଏପରି କହୁଛି ।

ଏଥିରେ ସୌହାର୍ଦ୍ଦ ବିଷୟକ ଆଶୀର୍ବାଦ ରହିଛି ।

୫୭] **ଅବରୋଧ ବିଷୟକ ଆଶୀଃ**-ଅନ୍ୟ ରାଜନ୍ୟବର୍ଗ ତୁମର ଶତ୍ରୁଂକ ରାଜଧାନୀକୁ ଦେଖନ୍ତୁ । ଯାହାର ସମସ୍ତ ଶୋଭା ତୁମର ତେଜରେ ଭସ୍ମୀଭୂତ ହୋଇଯାଇଛି । ମଦାନ୍ଧ ହସ୍ତୀଂକ ଦ୍ୱାରା ଯାହାର ପ୍ରାଚୀର ଭଗ୍ନ, ବୀରଗଣ ମୃତ ଏବଂ ଭୟଭୀତ ନାଗରିକ ପଳାୟନ ପର ।

କୌଣସି ରାଜାର ସ୍ତୁତି ଏ ପଦ୍ୟରେ ବର୍ଣ୍ଣିତ । ଶତ୍ରୁନାଶ ରୂପ ଅବରୋଧ ବର୍ଣ୍ଣିତ ହେତୁ ଅବରୋଧ ବିଷୟକ ଆଶୀଃ ଅଟେ । କିନ୍ତୁ ପରବର୍ତ୍ତୀ କାଳରେ ଆଶୀଃ ଏକ ଅଲଂକାର ଭାବେ ସ୍ୱୀକୃତ ଲାଭ କରିନାହିଁ ।

୫୮] **ଉପସଂହାର**—ଭାମହ କହନ୍ତି -'ମୁଁ ନିଜ ବୁଦ୍ଧି ବଳରେ ବାଣୀର ଅଲଂକାର ନିର୍ଣ୍ଣୟ କରି ସବିସ୍ତାର ବର୍ଣ୍ଣନ କରିଅଛି । ଏହା ଦ୍ୱାରା ଅର୍ଥ ମର୍ମଜ୍ଞଂକ ବାଣୀ ଭୂଷିତା ରମଣୀ ପରି ଶୋଭା ପାଇବ ।

ଭାମହଂକ କାବ୍ୟାଲଂକାର ଗ୍ରନ୍ଥର ତୃତୀୟ ପରିଚ୍ଛେଦ ସମାପ୍ତ ।

—●—

## ଚତୁର୍ଥ ପରିଚ୍ଛେଦ

ଅପାର୍ଥଂ ବ୍ୟର୍ଥମେକାର୍ଥଂ ସସଂଶୟମପକ୍ରମମ ।
ଶବ୍ଦହୀନଂ ଯତିଭ୍ରଷ୍ଟଂ ଭିନ୍ନବୃତ୍ତଂ ବିସନ୍ଧି ଚ ॥ ୧ ॥

ଦେଶକାଳକଳାଲୋକନ୍ୟାୟାଗମବିରୋଧି ଚ ।
ପ୍ରତିଜ୍ଞାହେତୁଦୃଷ୍ଟାନ୍ତହୀନଂ ଦୁଷ୍ଟଂ ଚ ନେଷ୍ୟତେ ॥ ୨ ॥

ଅପାର୍ଥମିତ୍ୟମେତାର୍ଥ ସ ସ୍ଵର୍ଥଃ ପଦବାକ୍ୟୟୋଃ ।
ଅର୍ଥବାନ୍ ବର୍ଣ୍ଣସଂଘାତଃ ସୁପ୍ ତିଙନ୍ତଂ ପଦଂ ପୁନଃ ॥ ୩ ॥

ତଦାନାମେବ ସଂଘାତଃ ସାପେକ୍ଷାଣାଂ ପରସ୍ପରମ୍ ।
ନିରାକାଙ୍କ୍ଷଂ ଚ ତଦ୍ ବାକ୍ୟମେକବସ୍ତୁନିବନ୍ଧନମ୍ ॥ ୪ ॥

---

ଦ୍ଵିତୀୟ ଓ ତୃତୀୟ ପରିଚ୍ଛେଦରେ କାବ୍ୟଶୋଭା ନିଷ୍ପାଦକ ଅଳଙ୍କାର ନିରୂପଣ ପରେ ବର୍ତ୍ତମାନ ଚତୁର୍ଥ ଓ ପଞ୍ଚମ ପରିଚ୍ଛେଦରେ କାବ୍ୟ ଶୋଭା ବିଘାତକ ଦୋଷର ନିରୂପଣ କରାଯାଉଛି ।

୧-୨) ଅପାର୍ଥ, ବ୍ୟର୍ଥ, ଏକାର୍ଥ ସସଂଶୟ, ଅପକ୍ରମ, ଶବ୍ଦହୀନ, ଯତିଭ୍ରଷ୍ଟ, ଭିନ୍ନବୃତ୍ତ, ବିସନ୍ଧି, ଦେଶ ବିରୋଧୀ, କାଳବିରୋଧୀ ଲୋକବିରୋଧୀ, ନ୍ୟାୟ ବିରୋଧୀ, ଆଗମ ବିରୋଧୀ, ପ୍ରତିଜ୍ଞା ହୀନ, ହେତୁହୀନ ଓ ଦୃଷ୍ଟାନ୍ତ ହୀନ ଦୋଷ କାବ୍ୟରେ ଈପ୍ସିତ ନୁହେ ।

ପ୍ରଥମ ୧୬ଟି ଦୋଷ ଚତୁର୍ଥ ପରିଚ୍ଛେଦରେ ଓ ଅନ୍ତିମ ୩ଟି ଦୋଷ ପଞ୍ଚମ ପରିଚ୍ଛେଦରେ ବିବେଚନ କରାଯାଉଛି ।

୩) ଅପାର୍ଥ-ଅର୍ଥ ରହିତକୁ ଅପାର୍ଥ କହନ୍ତି । ଏହି ଅପାର୍ଥ ପଦ ଓ ବାକ୍ୟରେ ରହେ । ଅପଗତ ଅର୍ଥ-ଅପାର୍ଥ । ଅର୍ଥାତ୍ ଯେଉଁଥିରେ ଅର୍ଥ ନାହିଁ । ସାର୍ଥକ ତିଙନ୍ତ ଓ ଓ ସୁବନ୍ତ ବର୍ଣ୍ଣସଂଘାତ ପଦ ନାମରେ ପରିଚିତ । ଶବ୍ଦ ବିଭକ୍ତିହୀନ ହୋଇଥାଏ ଓ ପଦ ବିଭକ୍ତି ଯୁକ୍ତ ହୋଇ ବାକ୍ୟରେ ବ୍ୟବହୃତ ହୋଇଥାଏ ।

୪) ବାକ୍ୟ —ବାକ୍ୟ କାହାକୁ କହନ୍ତି ? ସେ ସମ୍ବନ୍ଧରେ କୁହାଯାଉଛି । ପରସ୍ପର ସାକାଙ୍କ୍ଷ ପଦସମୂହକୁ ବାକ୍ୟ କହନ୍ତି । କିନ୍ତୁ ସେହି ବାକ୍ୟ ସ୍ୱୟଂ ନିରାକାଙ୍କ୍ଷ ହୋଇଥାଏ । ଅର୍ଥାତ୍ ସେଥିରେ ଅନ୍ୟ କିଛି ଯୋଡ଼ିବା ଆକାଙ୍କ୍ଷା ନଥାଏ । ଏକ ବାକ୍ୟରେ ଗୋଟିଏ ବସ୍ତୁର ପୂର୍ଣ୍ଣରୂପରେ ପ୍ରକାଶିତ ହୁଏ ।

କ୍ରମବୃତ୍ତିଷୁ ବର୍ଣ୍ଣେଷୁ ସଙ୍ଘାତାର୍ଥ ନ ଯୁଜ୍ୟତେ।
ବୁଦ୍ଧୌ ତୁ ସମ୍ଭବତ୍ୟେତଦନ୍ୟତ୍ରେଽପି ପ୍ରତିକ୍ଷଣମ୍ ॥ ୫ ॥

---

ଅନ୍ୟ ପକ୍ଷରେ ଯୋଗ୍ୟତା, ଆକାଙ୍କ୍ଷା ଓ ଆସତ୍ତି ଯୁକ୍ତ ପଦସମୂହ ବାକ୍ୟ ଅଟେ । ଯୋଗ୍ୟତା-ପଦାର୍ଥମାନଙ୍କର ପରସ୍ପର ସମ୍ବନ୍ଧ ବିଷୟରେ ବାଧାର ଅଭାବ । ଯଥା ବହ୍ନି ସେଚନ କରୁଅଛୁ । [ଅଗ୍ନିର ସେଚନ ଅସମ୍ଭବ) ତେଣୁ ଜଳ ସିଞ୍ଚୁ ଅଛୁ ଏଥିରେ ଯୋଗ୍ୟତା ରହୁଛି । ଆକାଙ୍କ୍ଷା - ଏକ ପଦ ବ୍ୟକ୍ତ କଲେ କ୍ରମାନ୍ୱୟରେ ଅନ୍ୟପଦମାନଙ୍କୁ ଜାଣିବା ଇଚ୍ଛା ।ଗାଈ, ଅଶ୍ୱ, ପୁରୁଷ ପଦରେ ଆକାଙ୍କ୍ଷା ପୂରଣ ହୁଏ ନାହିଁ । ତେଣୁ ଏହା ବାକ୍ୟ ନୁହେଁ । ରାମ ପୁସ୍ତକ ପଢୁଅଛି । ଆକାଙ୍କ୍ଷା ପୂରଣ ହେତୁ ବାକ୍ୟ ଅଟେ । ଆସତ୍ତି ପଦାର୍ଥର ଉପସ୍ଥିତିରେ ବ୍ୟବଧାନ ହୀନତା । ଯଥା - ପର୍ବତ ଦେବଦତ୍ତ ବହ୍ନିମାନ ଦେଖୁଅଛି । ଏଥିରେ ଆସତ୍ତିର ଅଭାବ ରହୁଛି । ଦେବଦତ୍ତ ବହ୍ନିମାନ ପର୍ବତ ଦେଖୁଅଛି ଆସତ୍ତି ଯୁକ୍ତ ହେତୁ ବାକ୍ୟ ଅଟେ ।

୫) ପୂର୍ବୋକ୍ତ ଲକ୍ଷଣରେ ଶଙ୍କା ଓ ସମାଧାନ— କ୍ରମଶଃ ଉଚ୍ଚାର୍ଯ୍ୟମାଣ ବର୍ଣ୍ଣ ଗୁଡ଼ିକରେ ଯଦାପି ସମୂହତା ହୋଇପାରେ ନାହିଁ ।ତଥାପି ବୁଦ୍ଧିରେ ଏହି ସମୂହତା ସମ୍ଭବ ହୁଏ ।

ପ୍ରଥମାର୍ଦ୍ଧରେ ଶଙ୍କା ଓ ଦ୍ୱିତୀୟାର୍ଦ୍ଧରେ ସମାଧାନ କରୁଛ । ବର୍ଣ୍ଣ ସମୂହ ପଦ ଅଟେ ଓ ପଦ ସମୂହକୁ ବାକ୍ୟ କହନ୍ତି । ଏଠାରେ ପ୍ରଶ୍ନ ହୁଏ ସମୂହତା ଯେତେବେଳେ ସମ୍ଭବ ଯେତେବେଳେ ଅନେକର ଏକ ସମୟରେ ଉପସ୍ଥିତ ରହେ । ଉଦାହରଣ ସ୍ୱରୂପ- ରାମଚନ୍ଦ୍ର ଶବ୍ଦକୁ ଗ୍ରହଣ କରାଯାଇପାରେ । ଏଥିରେ ଥିବା ବର୍ଣ୍ଣ ଗୁଡ଼ିକ ଏକ ସଙ୍ଗରେ ଶୁଣା ଯାଇପାରେ ନାହିଁ । 'ର'ଉଚ୍ଚାରଣ ବେଳେ ଅନ୍ୟତମବର୍ଣ୍ଣ ନଥାଏ । ସେହିପରି'ମ'ଉଚ୍ଚାରଣ ବେଳେ ର କିମ୍ବା ଚନ୍ଦ୍ର ନଥାଏ । ଅତଏବ ରାମଚନ୍ଦ୍ରର ଉଚ୍ଚାରଣ ଏକ ସଙ୍ଗରେ ସମ୍ଭବ ନୁହେ । ଏପରି ପରିସ୍ଥିତିରେ କ୍ରମଶଃ ଏବଂ ପୃଥକ୍ ପୃଥକ୍ ଶ୍ରୂୟମାଣ ବର୍ଣ୍ଣଗୁଡ଼ିକର ସମୂହତ୍ୱ ଅନୁପପନ୍ନ ହୁଏ ।

ଅତଏବ ପଦ ଓ ବାକ୍ୟର ଲକ୍ଷଣ ଖଣ୍ଡିତ ହୁଏ । ତେଣୁ ଶବ୍ଦ ଓ ବାକ୍ୟରୁ ଅର୍ଥପ୍ରାପ୍ତ କିପରି ହେବ ?

ସମାଧାନ-ଏହା ସତ୍ୟ ଯେ, ବର୍ଣ୍ଣର ଉଚ୍ଚାରଣ ଗୋଟିଏ ପରେ ଅନ୍ୟଟି ହେବା ହେତୁ (କ୍ରମଶଃ) ଏକ ସଙ୍ଗରେ ଶ୍ରବଣ ସମ୍ଭବ ନୁହେ । ତଥାପି ବୁଦ୍ଧିରେ ତାର ସଂସ୍କାର ରହିବା ହେତୁ ପଦର ଅନ୍ତିମ ବର୍ଣ୍ଣ ଶ୍ରବଣ ସହିତ ପୂର୍ବଶ୍ରୁତ ବର୍ଣ୍ଣ ଗୁଡ଼ିକର ଯୌଗିକ ସମୂହତ୍ୱ ହୋଇ ଅର୍ଥବୋଧ କରାଏ । ଉଚ୍ଚାର୍ଯ୍ୟ ବର୍ଣ୍ଣ କର୍ଣ୍ଣକର୍ଣ୍ଣରେ ପ୍ରବେଶ ବୁଦ୍ଧିରେ ତାହାର ପ୍ରଭାବ

ଧୀରନ୍ତ୍ୟଶବ୍ଦବିଷୟା ବୁଦ୍ଧିବର୍ଣ୍ଣାହିତସ୍ମୃତିଃ ।
ବାକ୍ୟମିତ୍ୟାହୁରପରେ ନ ଶବ୍ଦାଃ କ୍ଷଣନଶ୍ୱରାଃ ॥ ୬ ।

ଅତ୍ରାପି ବହୁ ବକ୍ତବ୍ୟଂ ଜାୟତେ ତତ୍ତ୍ୱବୋଧକମ୍ ।
ଗୁରୁଭିଃ କିଂ ବିବାଦେନ ଯଥା ପ୍ରକୃତମୁଚ୍ୟତେ ॥ ୭ ॥

ସମୁଦାୟାର୍ଥଶୂନ୍ୟଂ ଯତ୍ତଦପାର୍ଥକମିଷ୍ୟତେ ।
ଦାଡିମାନି ଦଶାପୂପାଃ ଷଡିତ୍ୟାଦି ଯଥୋଦିତମ୍ ॥ ୮ ॥

---

ରଖିଥାଏ । ଏବଂ ବୁଦ୍ଧି ତାହାକୁ ମିଶାଇ ଅର୍ଥ ପ୍ରଗତ କରାଏ । ଅତଏବ ବର୍ଣ୍ଣ ଗୁଡ଼ିକର ସମୂହର ଅସ୍ତିତ୍ୱରୁ ପଦ୍ ବା ବାକ୍ୟର ନିଷ୍ପତ୍ତି ହୁଏ ନାହିଁ ଏଣିକା ନିରାଧାର ।

୬) ଅନ୍ୟମତ—ଅନ୍ୟକେତେକ ବିଦ୍ୱାନ୍ କହନ୍ତି କ୍ଷଣିକ ଶବ୍ଦ ଦ୍ୱାରା ବାକ୍ୟ ହୋଇ ପାରେ ନାହିଁ ତଥାପି ପୂର୍ବପୂର୍ବ ବର୍ଣ୍ଣଗୁଡ଼ିକର ଶ୍ରବଣଦ୍ୱାରା ଉତ୍ପନ୍ନ ସ୍ମୃତି ସହିତ ଅନ୍ତିମ ବର୍ଣ୍ଣାଶ୍ରିତ ଅଖଣ୍ଡ ବୁଦ୍ଧି ହିଁ ବାକ୍ୟ ଅଟେ ।

ବାକ୍ୟ ସମ୍ବନ୍ଧରେ ବୌଦ୍ଧଙ୍କ ମତ ଏହି କାରିକାରେ ଉପସ୍ଥାପିତ । ସେମାନେ କହନ୍ତି ଯଦ୍ୟପି ପ୍ରତ୍ୟେକ ବର୍ଣ୍ଣ ଉଚ୍ଚାରିତ ହେବାମାତ୍ରେ ତତ୍କାଳ ନଷ୍ଟ ହୋଇଯାନ୍ତି । ତଥାପି ବୁଦ୍ଧିରେ ତାର ପ୍ରଭାବ ସ୍ଥାୟୀ ହୋଇ ରହେ । ଏହିପରି ପ୍ରତ୍ୟେକ ବର୍ଣ୍ଣର ପ୍ରଭାବ ସ୍ମୃତିରେ ଅଙ୍କିତ ହୋଇଯାଏ । ଅନ୍ତିମ ବର୍ଣ୍ଣ ଉଚ୍ଚାରିତ ହେବା ପରେ ସମସ୍ତ ବର୍ଣ୍ଣର ସମୁଦାୟ ପ୍ରଭାବ ଅଖଣ୍ଡ ରୂପରେ ଥରେ ବୁଦ୍ଧି ଗୋଚର ହୁଏ । ତାହାକୁ ହିଁ ବାକ୍ୟ କହନ୍ତି ।

୭) ଏ ବିଷୟରେ ଆଲୋଚନା କରିବା ପାଇଁ ବହୁତ କଥା ରହିଛି । କିନ୍ତୁ ସେ ସମସ୍ତ ଏଠାରେ କୁହାଯାଉନାହିଁ । ଗୁରୁଜନଙ୍କ ସହିତ ବିବାଦ କରି ଲାଭ କ'ଣ ? ବର୍ତ୍ତମାନ ପ୍ରକରଣ ବିଷୟ ପ୍ରତିପାଦନ କରାଯାଉଛି ।

ଏହି ମତରେ ଥିବା ଶଙ୍କା ଓ ସମାଧାନ ଅପ୍ରାସଙ୍ଗିକ ମନେକରି ଭାମହ ସେ ବିଷୟରେ ଆଲୋଚନା ନ କରିବା ଶ୍ରେୟସ୍କର ମନେ କରିଛନ୍ତି । ଏହି ରୀତିରେ ଭାମହ ଶବ୍ଦର ନିତ୍ୟତ୍ୱ ଅନିତ୍ୟତ୍ୱ ପ୍ରଶ୍ନ ଉଠାଇ (୬-୧୫) ଅସମାହିତ ଅବସ୍ଥାରେ ଛାଡ଼ିଯାଇଛନ୍ତି ।

୮) ଅପାର୍ଥକ— ସାର୍ଥକ ପଦଥିବା ସତ୍ତ୍ୱେ ସମୁଦାୟ ଅର୍ଥଶୂନ୍ୟ ହେଲେ ଅପାର୍ଥ ଦୋଷ ହୁଏ । ଯଥା ଦଶଟି ଡାଲିମ୍ବ ଛଅ ଗୋଟି ପିଠା ଇତ୍ୟାଦି ।

ଏବିଷୟରେ ଦଣ୍ଡୀଙ୍କ ଉଦାହରଣ ଅଧିକ ସ୍ପଷ୍ଟ ଯଥା—

ସମୁଦ୍ରଃ ପୀୟତେ ଦେବୈରହମସ୍ମି ଜରାତୁରଃ ।
ଅମୀ ଗର୍ଜନ୍ତି ଜୀମୂତା ହରେ ରୈରାବଣ ପ୍ରିୟଃ । (କାବ୍ୟାଦର୍ଶ)

ବିରୁଦ୍ଧାର୍ଥଂ ମତଂ ବ୍ୟର୍ଥଂ ବିରୁଦ୍ଧଂ ତୁ ପ୍ରଦର୍ଶ୍ୟତେ ।
ପୂର୍ବାପରାର୍ଥବ୍ୟାଘାତାଦ୍ବିପର୍ଯ୍ୟସ୍ତକରଂ ଯଥା ॥ ୯ ॥
ସଖିମାନଂ ପ୍ରିୟେ ଧେହି ଲଘୁତାମସ୍ୟମାଗମଃ ।
ଭର୍ତ୍ତୁଶ୍ଛନ୍ଦାନୁବର୍ତ୍ତିନ୍ୟଃ ପ୍ରେମଘ୍ନନ୍ତି ନହିସ୍ତ୍ରିୟଃ ॥ ୧୦ ॥

---

ଦେବତାମାନଙ୍କ ଦ୍ଵାରା ସମୁଦ୍ର ପୀତ ହେଲ , ମୁଁ ବୃଦ୍ଧାବସ୍ଥାରେ ଆତୁର ଅଟେ ଏହି ମେଘ ଗୁଡ଼ିକ ଗର୍ଜନ କରୁ ଅଛନ୍ତି । ଐରାବଣ ବିଷ୍ଣୁଙ୍କ ପ୍ରିୟ ଅଟେ । ପ୍ରତି ବାକ୍ୟର ପ୍ରତ୍ୟେକ ପଦ ସାର୍ଥକ । କିନ୍ତୁ ଯୋଗ୍ୟତା [ସମ୍ବନ୍ଧ] ଅଭାବରୁ ବାକ୍ୟଗୁଡ଼ିକର କୌଣସି ସଙ୍ଗତ ଅର୍ଥ ପ୍ରକାଶ ପାଏ ନାହିଁ । ସ୍ଵତନ୍ତ୍ର ବାକ୍ୟ ତଥାପି ପରସ୍ପର ସମ୍ବନ୍ଧିତ ଯଥା-

ରାବଣୋ ରାକ୍ଷସେନ୍ଦ୍ରୋଽଭୂତ୍ ରାମଭାର୍ଯ୍ୟାଂ ଜହାର ସା ।
ରାମସ୍ତମବଧୀତ୍ କ୍ରୋଧାତ୍ କୋ ନ ନଶ୍ୟତ୍ୟଧାର୍ମିକଃ [ଉଦ୍ଧୃତକାବ୍ୟାଲଂକାରଟୀକା]

ରାବଣ ରାକ୍ଷସମାନଙ୍କର ରାଜା ହେଲ । ସେ ରାମଙ୍କ ପତ୍ନୀକୁ ହରଣ କଲ । ରାମ କ୍ରୋଧରେ ତାକୁ ହତ୍ୟା କଲେ । କେଉଁ ଅଧାର୍ମିକ ବା ବିନଷ୍ଟ ନହୁଏ ? ଏହି ସମସ୍ତ ବାକ୍ୟର ସମୁଦିତ ଅର୍ଥ ହେବ, ରାବଣପରି ଅଧାର୍ମିକ କୁଆଡ଼େ ନଷ୍ଟ ହୁଅନ୍ତି । ଅନୁରୂପ ଯଥା—ରତ୍ନମାଳା ହେମମାଳା ବିମଳା ପ୍ରେମଶୀଳା ସୁଶୀଳା ପଦ୍ମମଳା ।

ଚନ୍ଦ୍ରଲତା ମଦାଲସା ମଞ୍ଜୁଳା, ପ୍ରେମ ସୁଧାନିଧି ପ୍ରଶ୍ନମଞ୍ଜୁଳା (ଜ-ବ-ଆ-୨୩)

ଏତନ୍ନାମଧେୟା କାବ୍ୟନାୟିକା ଲବଣ୍ୟବତୀର ଅଟନ୍ତି । ଏହା ପ୍ରକରଣରୁ ଜଣାଯାଏ । କିନ୍ତୁ ଉପର୍ଯ୍ୟୁକ୍ତ ପଦଟିକୁ ସ୍ଵତନ୍ତ୍ରଭାବେ ପାଠକଲେ ତାହା ଅପାର୍ଥ ଦୋଷରେ ଦୂଷିତ ମନେହୁଏ ।

୯) ବ୍ୟର୍ଥ—ବିରୁଦ୍ଧାର୍ଥକ ପଦକୁ ବ୍ୟର୍ଥ କୁହାଯାଏ । ପୁଣି ବିରୁଦ୍ଧାର୍ଥକ ତାହାକୁ କୁହାଯାଏ, ଯହିଁରେ ପୂର୍ବ ଓ ଅପର ଅର୍ଥର ବିରୋଧରୁ ବିପର୍ଯ୍ୟୟ ଜାତ ହୁଏ ।

ବ୍ୟର୍ଥର ପ୍ରଚଳିତ ଅର୍ଥ ଅଟେ—ନିରର୍ଥକ । କିନ୍ତୁ ଏଠାରେ ଅଭିପ୍ରେତ ଅର୍ଥ ଅଟେ—ବିରୁଦ୍ଧାର୍ଥକ ।

୧୦) ଉଦାହରଣ— ହେ ସଖି ! ପ୍ରିୟଠାରେ ମାନ କରେ । ତାଙ୍କର ଆଗରେ ନିଜର ଲଘୁତା ଦେଖାଅନା । ଯେଉଁ ନାରୀମାନେ ସ୍ଵାମୀର ଇଚ୍ଛାରେ ପରିଚାଳିତ ହୁଅନ୍ତି, ସେମାନଙ୍କର ପ୍ରେମ ନଷ୍ଟ ହୁଏନାହିଁ ।

ଅଭିମାନ କରିବା ଓ ପତିର ଇଚ୍ଛାକୁ ଅନୁବର୍ତ୍ତନ କରିବା ଏକ ସଙ୍ଗରେ ସମ୍ଭବ ନୁହେ । ତେଣୁ ଉଭୟ ଅର୍ଥ ପରସ୍ପର ବିରୋଧୀ । ଅତଏବ ବ୍ୟର୍ଥ ଦୋଷ ଅଟେ ।

ଉପାସିତ ଗୁରୁତ୍ୱାତ୍ତ୍ୱଂ ବିଜିତେନ୍ଦ୍ରିୟ ଶତ୍ରୁଷୁ ।
ଶ୍ରେୟସେ ବିନୟାଧାନମଧୁନାତିଷ୍ଠ କେବଳମ୍ ॥ ୧୧ ॥

ଯଦ ଭିନ୍ନାର୍ଥମନ୍ୟୋନ୍ୟଂ ତଦେକାର୍ଥଂ ପ୍ରଚକ୍ଷତେ ।
ପୁନରୁକ୍ତମିଦଂ ପ୍ରାହୁରନ୍ୟେ ଶବ୍ଦାର୍ଥଭେଦତଃ ॥ ୧୨ ॥

ନ ଶବ୍ଦ ପୁନରୁକ୍ତଂ ତୁ ସୌଲ୍ୟାଦତ୍ରୋପବର୍ଣ୍ଣ୍ୟତେ ।
କଥମର୍ଥିପ୍ରତୀତଃ ସନ୍ନୁକ୍ତମେବାଭିଧାସ୍ୟତେ ॥ ୧୩ ॥

---

୧୧) ଅନ୍ୟ ଉଦାହରଣ - ଗୁରୁଙ୍କ ଉପାସନାରୁ ତୁମେ ଇନ୍ଦ୍ରସ୍ୱରୂପୀ ଶତ୍ରୁଙ୍କୁ ଜୟ କରିଅଛ । ବର୍ତ୍ତମାନ ଗୁରୁଜନଙ୍କଠାରେ ବିନୟ ପ୍ରଦର୍ଶନ କରିବା ଶିଖ ।

ଇନ୍ଦ୍ରିୟଜୟୀ ବ୍ୟକ୍ତିକୁ ବିନୟବୋଧ ପାଇଁ ଶିକ୍ଷା ଦେବା ବ୍ୟର୍ଥ ଅଟେ । ଇନ୍ଦ୍ରିୟଦମନକାରୀ ସ୍ୱତଃ ବିନୟୀ ହୋଇଥାଏ ।

ଅନୁରୂପ ଯଥା ଶୁଣିଛୁ ଚନ୍ଦ୍ର ବଦନ ନିରତେ ନୀର ଲୋଚନ ।
ତେବେ ହେଁ ଶୋଭାକୁ ଉପମା ଦେବାକୁ ନାହିଁ ନା ଅନ୍ୟ ଭୁବନ, ନାରୀ ରତନ ।
(ବିଚିତ୍ର ରାମାୟଣ, ସୁନ୍ଦର କାଣ୍ଡ ଅଷ୍ଟମ ସର୍ଗ)

ପ୍ରଥମେ ବଦନକୁ ଚନ୍ଦ୍ରମା କହି, ଉପମା ଦେବାକୁ ତ୍ରିଭୁବନରେ ନାହିଁ କହିବା ପୂର୍ବାପର ଭାବର ବିପର୍ଯ୍ୟୟ ହେତୁ ବ୍ୟର୍ଥ ଦୋଷରେ ଦୂଷିତ । ପରବର୍ତ୍ତୀ କାଳରେ ଏହାକୁ ବ୍ୟାହତତା ଦୋଷ ନାମରେ ନାମିତ କରାଯାଇଛି ।

୧୨) ଏକାର୍ଥ (ପୁନରୁକ୍ତ) ଦୋଷ—ଯେଉଁଠି ଶବ୍ଦଗୁଡ଼ିକ ଅଭିନ୍ନାର୍ଥକ, ତାହାକୁ ଏକାର୍ଥ ଦୋଷ କହନ୍ତି । କେତେକ ଆଚାର୍ଯ୍ୟ ଏହାକୁ ପୁନରୁକ୍ତ ଦୋଷ ମଧ୍ୟ କହିଥାନ୍ତି । ଏହା ଶବ୍ଦ ଓ ଅର୍ଥ ଭେଦରେ ଦ୍ୱିବିଧ ।

୧୩) ସ୍ଥୂଳହେତୁ ଏଠାରେ ଶବ୍ଦ ପୁନରୁକ୍ତ ଦୋଷର ଉଦାହରଣ ପ୍ରସ୍ତୁତ କରାଗଲା ନାହିଁ । ମସ୍ତିଷ୍କ ବିକୃତ ହୋଇଥିଲେ କିଏ ବା କହିବା କଥାକୁ ପୁଣି କହିବ ? ସ୍ଥଳବିଶେଷରେ ଶବ୍ଦ ପୁନରୁକ୍ତ ଦୋଷ ଦୃଷ୍ଟିଗୋଚର ହୁଏ ଯଥା—

ଗତ ନିଶାରେ ସ୍ୱପ୍ନ ଦେଖିଲେ ରାଇ, ନାରୀ ଏ ଦେଖାଦେଇ ଗଲା ଉଭାଇ ।
ସେଦିନବେଳୁ ରାଇ ଅସ୍ଥିର ପ୍ରାଣେ, ନିରତେ ବସିଛନ୍ତି ତା' ରୂପ ଧ୍ୟାନେ ।
ଯାବତ ନହେବ ତା' ସାକ୍ଷାତକାର, ତାବତ ନାହିଁ ତାଙ୍କ ପାନ ଆହାର ।
(କୀଚକବଧ, ଚତୁର୍ଥ ସର୍ଗ)

ଦାସୀ ସୁଦେଷ୍ଣାକୁ କ'ଣ କହିବ, ସେ କଥା କୀଚକ ଆଗରେ କହି ପୁଣି ସେହି ଶବ୍ଦରେ ସୁଦେଷ୍ଣାକୁ କହିବା ଏକାର୍ଥ ଦୋଷ । କବି ଶବ୍ଦ ପରିବର୍ତ୍ତନ କରି ଦାସୀର ଆନୁଗତ୍ୟ ପ୍ରଦର୍ଶନ କରିପାରିଥାନ୍ତେ ।

ଭୟଶୋକାଭ୍ୟସୂୟାସୁ ହର୍ଷବିସ୍ମୟୟୋରପି ।
ଯଥାହ ଗଚ୍ଛ ଗଚ୍ଛେତି ପୁନରୁକ୍ତଂ ନତଦ୍‌ବଦୁଃ ।। ୧୪ ।।

ଅର୍ଥାର୍ଥ ପୁନରୁକ୍ତଂ ଯଦେବୈକାର୍ଥମିଷ୍ୟତେ ।
ଉକ୍ତସ୍ୟ ପୁନରାଖ୍ୟାନେ କାର୍ଯ୍ୟାସମ୍ଭବତୋ ଯଥା ।। ୧୫ ।।

ତାମ୍ବୁକ୍ତମନସଂ ନୂନଂ କରୋତି ଧ୍ୱନିରମ୍ଭସାମ୍ ।
ସୌଧେଷୁ ଘନମୁକ୍ତାନାଂ ପ୍ରଣାଳୀମୁଖପାତିନାମ୍ ।। ୧୬ ।।

ଶ୍ରୁତେଃ ସାମାନ୍ୟଧର୍ମାଣାଂ ବିଶେଷସ୍ୟାନୁବାଦ୍ଧୃତେଃ ।
ଅପ୍ରତ୍ତିଷ୍ଟଂ ଯଦର୍ଥେତିଜଜ୍ଞାନଂ ତତ୍‌ସଂଶୟଂ ବଦୁଃ ।। ୧୭ ।।

---

୧୪) **ପୁନରୁକ୍ତ ଦୋଷ ପରିହାର** — ଭୟ, ଶୋକ, ଅସୂୟା, ହର୍ଷ, ବିସ୍ମୟ ଆଦି ଭାବପ୍ରକାଶରେ ଯାହା ପୁନରୁକ୍ତ ହୁଏ, ତାହା ଦୋଷ ନୁହେ । ଯେପରି କେହି କହେ— ଯାଅ-ଯାଅ । ଯଦି କେହି ଭୟରେ କହେ — ପଳାଅ-ପଳାଅ । ଏହା ପୁନରୁକ୍ତ ଦୋଷ ନୁହେ ।

ଅନୁରୂପ ଯଥା — ଧିକ, ଧିକ, ଧିକ ଶତଧିକ ଏ ମନ୍ତ୍ରଣା,
ଏ ହୀନ ମନ୍ତ୍ରଣା ହିବୁ ପାମର ଉଚିତ । (ମହାଯାତ୍ରା)

ଏଠାରେ ଘୃଣା ପ୍ରକାଶ ପାଇଁ 'ଧିକ୍' ଶବ୍ଦ ବାରମ୍ବାର ଉକ୍ତ ହୋଇଅଛି । ଏହା ଦୋଷ ନୁହେ ।

୧୫) ଯେଉଁଠି (କାବ୍ୟଶାସ୍ତ୍ରରେ) ଅର୍ଥର ପୁନରୁକ୍ତି ଘଟେ, ସେଇଠି ହିଁ ପୁନରୁକ୍ତ ବା ଏକାର୍ଥ ଦୋଷ ହୁଏ । କହିଥିବା ବିଷୟକୁ ପୁଣି କହିବାରେ କୌଣସି ମହତ୍ତ୍ୱ ନାହିଁ ।

କାର୍ଯ୍ୟାସମ୍ଭବତା = ନିଷ୍ପ୍ରୟୋଜନ ।

୧୬) **ଉଦାହରଣ** — ଯଥା-ଭବନର ଛାତ ଉପରେ ବର୍ଷିଥିବା ମେଘଜଳ ନଳା ବାଟଦେଇ ପଡ଼ିବା ଧ୍ୱନି ନାୟିକାକୁ ଅବଶ୍ୟ ଉନ୍ମତ୍ତ କରିଦେଉଛି ।

ଏଠାରେ ଘନମୁକ୍ତାନାଂ (ମେଘମୁକ୍ତ) କହିଲେ ଜଳର ବୋଧହୁଏ, ପୁଣି ଅମ୍ଭସାଂ (ଜଳ) ଶବ୍ଦ ଉଲ୍ଲେଖ ଏକାର୍ଥ ଦୋଷଯୁକ୍ତ ।

ଅନୁରୂପ ଯଥା — ନିସ୍ତବ୍ଧ ସକଳ ନାହିଁ ଗଣ୍ଡଗୋଳ,
ସରିତର ଜଳ ହୁଏ କଳ କଳ ।
ପୂର୍ଣ୍ଣମଳ ବିଧୁ ମଣ୍ଡଳ ରାଜେ । (କବିତାକଳାପ)

ସସଂଶୟମିତ ପ୍ରଦୃଷ୍ଟଜ୍ଞନନଂ ବଚଃ ।
ଇଷ୍ଟଂ ନିର୍ଣ୍ଣେତୁଂ ବାକ୍ୟଂ ନ ଦୋଳାୟେତ ତ ଦ୍ୟଥା ॥ ୧୮ ॥
ବ୍ୟାଳବନ୍ତୋ ଦୁରାରୋହା ରତ୍ନବନ୍ତଃ ଫଳାନ୍ୱିତାଃ ।
ବିଷମା ଭୂଭୃତସ୍ତେଭ୍ୟୋ ଭୟମାଶୁ ପ୍ରମାଦିନାମ୍ ॥ ୧୯ ॥

ଏଠାରେ ନିଷ୍ପ୍ରୟୋଜନ ସକଳ କହିବା ଦ୍ୱାରା ଗଣ୍ଡଗୋଳ ନଥିବା ବ୍ୟକ୍ତ ହୁଏ । ପୁଣି ନାହିଁ ଗଣ୍ଡଗୋଳ କହିବା ଏକାର୍ଥ ଦୋଷ ଅଟେ । ଏହାକୁ ଅର୍ଥ ପୁନରୁକ୍ତ କହିବା ଯଥାର୍ଥ ଅଟେ ।

(୧୭-୧୮) ସସଂଶୟ—ସାଧାରଣ ଧର୍ମର ଶ୍ରବଣ ଏବଂ ବିଶେଷଧର୍ମର ଅଶ୍ରବଣରୁ ଯେଉଁ ଜ୍ଞାନ ଅନିର୍ଣ୍ଣିତ ରହେ, ତାହାକୁ ସଂଶୟ କହନ୍ତି । ଅତଃ ସେହି ସଂଶୟଜନକ ବାକ୍ୟକୁ ସସଂଶୟ କୁହାଯିବ । ଅର୍ଥ ନିର୍ଣ୍ଣୟ ପାଇଁ ବିବକ୍ଷିତ ବାକ୍ୟ ଦୋଳାୟିତ ନ ହେବା ଉଚିତ ।

ପ୍ରଥମ କାରିକାରେ ସନ୍ଦେହ କିପରି ଉତ୍ପନ୍ନ ହୁଏ' ତାହା କୁହାଯାଇଛି । ଦ୍ୱିତୀୟ କାରିକାରେ ଦୋଷ ନିରୂପିତ ହୋଇଛି ।

କୌଣସି ବସ୍ତୁର ବିଶେଷ ଧର୍ମ ନ ଜାଣି କେବଳ ସାମାନ୍ୟ ଧର୍ମ ଜାଣିଲେ ସନ୍ଦେହ ଉତ୍ପନ୍ନ ହୁଏ । କାରଣ ସାଧାରଣ ଧର୍ମ ଅନ୍ୟନିଷ୍ଠ ମଧ୍ୟ ହୋଇପାରେ । ସାଧାରଣ ଧର୍ମ ଅନେକ ନିଷ୍ଠ ହେତୁ ଅନ୍ୟବସ୍ତୁର ବୋଧ ମଧ୍ୟ ହୋଇପାରେ । ଫଳରେ ଯଥାର୍ଥ ନିର୍ଣ୍ଣୟରେ ବାଧା ସୃଷ୍ଟି ହୁଏ । ତେଣୁ ସନ୍ଦେହ ହେବା ସ୍ୱାଭାବିକ ।

ଯେଉଁ ବାକ୍ୟ ଶ୍ରବଣରେ ନିଶ୍ଚୟ ପ୍ରତିବନ୍ଧେ ସନ୍ଦେହ ଜାତ ହୁଏ, ତାହା ସସଂଶୟ ଦୋଷରେ ଦୂଷିତ ହୁଏ । ତେଣୁ ନିଶ୍ଚୟ ପାଇଁ ପ୍ରଯୁକ୍ତ ବାକ୍ୟ ଭିନ୍ନ ଅର୍ଥକ ହୋଇ ଦୋଳାୟିତ ନ ହେବା ଉଚିତ ।

୧୯) ଉଦାହରଣ—ଭୂଭୃତ (ରଜା ଓ ପର୍ବତ) ବ୍ୟାଳଯୁକ୍ତ, ଦୁଷ୍ପ୍ରାପ୍ୟ, ରତ୍ନ ସମ୍ପନ୍ନ, ଫଳାନ୍ୱିତ ଓ ବିଷମ ହୋଇଥାନ୍ତି । ତାଙ୍କର ଶଠ କାରକ ତତ୍କ୍ଷଣାତ୍ ଭୀତ ହୋଇଥାନ୍ତି ।

ଏଠାରେ ଭୂଭୃତ ଶବ୍ଦ ଶୈଳ ଓ ଭୂପାଳ ଉଭୟ ଅର୍ଥର ଦ୍ୟୋତକ । ସାଧାରଣ ଧର୍ମ ମଧ୍ୟ ଉଭୟ ନିଷ୍ଠ ହେତୁ ସସଂଶୟ ଦୋଷ ଯୁକ୍ତ । ବ୍ୟାଳଯୁକ୍ତ ( ଦୁର୍ଜନ ପରିବେଷ୍ଟିତ ରଜା, ସର୍ପଯୁକ୍ତ ପର୍ବତ) ଦୁଷ୍ପ୍ରାପ୍ୟ [ ଯାହା ନିକଟରେ ପ୍ରବେଶ କରିବା କଠିନ (ଦୁର-

ପାଠାନ୍ତର—ସନ୍ଦେହକୃଜ୍ଜ୍ଞନଂ, ହେଳାୟେତ

ଯଥୋପଦେଶଂ କ୍ରମଶୋ ନିର୍ଦ୍ଦେଶୋଽକ୍ରମୋ ମତଃ ।
ତଦପେତଂ ବିପର୍ଯ୍ୟାସା ଦତ୍ୟାଖ୍ୟାତମପକ୍ରମମ୍ ॥୨୦॥
ବିଦଧାନୌ କିରୀଟେନ୍ଦୂ ଶ୍ୟାମାଭ୍ରହିମସନ୍ନିଭୌ ।
ରଥାଙ୍ଗଶୂଲେ ବିଭ୍ରାଣୌ ପାତାଂ ବଃ ଶମ୍ଭୁଶାର୍ଙ୍ଗିଣୌ ॥୨୧ ॥

ପକ୍ଷରେ] ବହୁଫପନ୍ନ [ଗୁଜା ଓ ପର୍ବତ ରତ୍ନ ଯୁକ୍ତ] । ଫଳାନ୍ୱିତ [ ପର୍ବତ ଆମ୍ର ଆଦି ଯୁକ୍ତ, ରାଜା ଅଭିଳଷିତ ଫଳଦାତା ] । ବିଷମ [ ଉନ୍ନତାବନତ ପର୍ବତ, ବୁଦ୍ଧି ଅସ୍ଥିର] ତେଣୁ କବିଙ୍କ ଅଭିପ୍ରାୟ ଅସ୍ପଷ୍ଟ ।

ଅନୁରୂପ ଯଥା—ଶୁଣ ଆହେ ବନ୍ଧୁଗଣ, କହୁଁଅଛି କ୍ରମଣ ମନ,
ଏହି ଦେଖ ସୁରାଳୟ ଭରଗମନ ହେ ।
ତହିଁ ନିତ୍ୟ ସେବାକର, ମନେ ପ୍ରଫୁଲ୍ଲ ଆଚର,
କ୍ରମେ ଆସକ୍ତ ବଢ଼ିବ ତୁମ ମନର ହେ । (ଅଳଙ୍କାର ସାର)

ଏଥିରେ ସୁରାଳୟ ( ସୁର + ଆଳୟ) = ମନ୍ଦିର) (ସୁରା + ଆଳୟ) = ମଦ୍ୟଶାଳା) ପାଇଁ ବ୍ୟବହୃତ ଅନ୍ୟ ସମସ୍ତ ସାମାନ୍ୟ ଧର୍ମ ଉଭୟ ନିଷ୍ଠ ହେତୁ ସଫଳସ୍ଥ ଦୋଷଯୁକ୍ତ

୨୦ ଅପକ୍ରମ—ଉପଦେଶର ଯଥାକ୍ରମ ନିର୍ଦ୍ଦେଶ କ୍ରମ ନାମରେ ଅଭିହିତ । ତାହା ବିପର୍ଯ୍ୟସ୍ତ (ଓଲଟ ପାଲଟ) ହେଲେ ଅପକ୍ରମ ଦୋଷ ହୁଏ ।

ଉପଦେଶ = ବସ୍ତୁର ପ୍ରଥମ ବିନ୍ୟାସ

୨୧) ଉଦାହରଣ—କିରୀଟ ଓ ଚନ୍ଦ୍ରମାଧାରୀ, ଶ୍ୟାମ ମେଘ ତଥା ହିମଗିରି ପରି କାନ୍ତି ବିଶିଷ୍ଟ, ଚକ୍ର ଏବଂ ଶୂଳ ଧାରଣ କରିଥିବା ଶିବ ଓ ବିଷ୍ଣୁ ଆପଣଙ୍କୁ ରକ୍ଷା କରନ୍ତୁ ।

ଏଠାରେ ପ୍ରଦର୍ଶିତ ଧର୍ମ ଶିବ ଓ ବିଷ୍ଣୁଙ୍କ ଧର୍ମ କଥନରେ କ୍ରମରକ୍ଷା ହୋଇନାହିଁ ଚନ୍ଦ୍ର ଓ କିରୀଟ ହିମ ଓ ମେଘ, ଶୂଳ ଓ ଚକ୍ର ଏହି କ୍ରମ ନଥିବାରୁ ପଦ୍ୟଟି ଅପକ୍ରମ ଦୋଷରେ ଦୂଷିତ ।

ଯଥା —ନୀଳ ଲୋହିତ ଶରୀର ଦରହାରୀ, ଶୁଦ୍ଧ ନିସ୍ତାରକ କୀର୍ତ୍ତି ଖ୍ୟାତକାରୀ,
ମୀନମୂର୍ତ୍ତି ରଘୁପତି ଶ୍ରୀପସ୍ୱର, ସ୍ୱରେ ଉପଇନ୍ଦ୍ର ଭଂଜ ଗିରବର (ଲ.ବ ୭-୧୬ )

ଏଠାରେ ମୀନ ମୂର୍ତ୍ତି ରଘୁପତି କ୍ରମ ପ୍ରଥମେ ନୀଳ ଲୋହିତ ଶରୀର ପ୍ରଦର୍ଶନରେ ରକ୍ଷିତ ହୋଇ ନାହିଁ । ତେଣୁ ଅପକ୍ରମ ଦୋଷ ।

ଯେହେତୁ ନୀଳ ଶରୀର ଦରହାରୀ କହିଥିଲେ ଦୋଷ ଶୂନ୍ୟ ହୋଇଥାନ୍ତା ।

ପୁଣି ଏହି କାରିକାରେ ବିଦଧାନେ ପରିବର୍ତ୍ତେ ଦଧାନୌ ପ୍ରଯୁକ୍ତ ହୋଇଥିଲେ ସମୀଚୀନ ହୋଇଥାନ୍ତା । ବି ଉପସର୍ଗ ଧା ଧାତୁ କରିବା ଅର୍ଥରେ ବ୍ୟବହୃତ ଧାଧାତୁର ଅର୍ଥ ଧାରଣ କରିବା ।

ସୂତ୍ରକୃତ୍ ପଦକାରେଷ୍ଟ ପ୍ରୟୋଗାଦ୍ ଯୋଽନ୍ୟଥା ଭବେତ୍ ।
ତମାହୁଶ୍ଚାବକାସିଦ୍ଧେଃ ଶବ୍ଦହୀନଂ ବିଦୁର୍ଯଥା ॥ ୨୨ ॥

ସ୍ଫୁରତ୍ତଡ଼ିଦ୍ବଲୟିନୋ ବିତତାମ୍ଭୋଗରୀୟସଃ ।
ତେଜସ୍ତିରସ୍କୃତଃ ସୌରଂ ଘନାନ୍ ପଶ୍ୟ ଦିବୋଽଭିତଃ ॥ ୨୩ ॥

ଯତିଶ୍ଛନ୍ଦୋଽଧିରୂଢ଼ାନାଂ ଶବ୍ଦାନାଂ ଯା ବିଧୃତିଃ ।
ତଦପେତଂ ଯତିଭ୍ରଷ୍ଟ ମିତି ନିର୍ଦ୍ଦିଶ୍ୟତେ ଯଥା ॥ ୨୪ "

---

୨୨) ଶବ୍ଦହୀନ—ସୂତ୍ରକାର (ପାଣିନି) ଏବଂ ପଦକାର (କାତ୍ୟାୟନ, ଉପଲକ୍ଷଣ ଦ୍ୱାରା ପତଞ୍ଜଳି ମଧ୍ୟ) ଙ୍କ ଦ୍ୱାରା ପ୍ରତିପାଦିତ ପ୍ରୟୋଗ ରୁ ଭିନ୍ନ ପ୍ରୟୋଗକୁ ଶବ୍ଦହୀନ ଦୋଷ କୁହାଯାଏ । କାରଣ ସେମାନଙ୍କ ଦ୍ୱାରା ପ୍ରତିପାଦିତ ନ ହୋଇ ଥିବା ଶବ୍ଦ ପ୍ରାମାଣିକ ନୁହେଁ ।

ଶବ୍ଦହୀନର ଅର୍ଥ ବ୍ୟାକରଣ ନିୟମ ବହିର୍ଭୂତ ଶବ୍ଦ । ସଂସ୍କୃତରେ ପ୍ରତିଷ୍ଠିତ ବୈୟାକରଣ ଅଟନ୍ତି ପାଣିନି କାତ୍ୟାୟନ ଓ ପତଞ୍ଜଳି । ପାଣିନିଙ୍କ ଅଷ୍ଟାଧ୍ୟାୟୀ ସୂତ୍ର, କାତ୍ୟାୟନଙ୍କ ବାର୍ତ୍ତିକ ଓ ପତଞ୍ଜଳିଙ୍କ ମହାଭାଷ୍ୟରେ ଶବ୍ଦ ସମ୍ବନ୍ଧୀୟ ଯେଉଁ ଅନୁଶାସନ କର୍ତ୍ତୀତ ତଦ୍ ଭିନ୍ନ କୌଣସି ଶବ୍ଦ ପ୍ରମାଣିକ ନୁହେଁ ।

୨୩] ଉଦାହରଣ—ଝଟକୁ ଥିବା ବିଜୁଳି ରୂପକ ବଳୟଯୁକ୍ତ, ଜଳଜଳରେ ପୂର୍ଣ୍ଣ, ସୂର୍ଯ୍ୟଙ୍କୁ ଆକାଶରେ ଆଚ୍ଛାଦନ କରୁଥିବା ସବୁଁଠି ପରିବ୍ୟାପ୍ତ ମେଘ ପୁଞ୍ଜକୁ ଦେଖ ।

ଏଠାରେ ବଳୟିନଃରେ ଇନ ପ୍ରୟୋଗ ଦୋଷଯୁକ୍ତ । ବହୁବ୍ରୀହି ସମାସ ଆଧାରରେ ସ୍ଫୁରତ୍ତଡ଼ିଦ୍ ବଳୟାଃ ହେବା କଥା । ଗରୀୟସଃରେ ଇୟସୁନ୍ ପ୍ରତ୍ୟୟ ଅସାଧୁ କାରଣ ସାପେକ୍ଷ ସ୍ଥିତିରେ ଏହି ପ୍ରତ୍ୟୟ ହୁଏ । ଏଠାରେ ତାରତମ୍ୟ ବୋଧର ଅବକାଶ ନାହିଁ । ତିରସ୍କୃତଃ ବ୍ୟାକରଣ ଦୃଷ୍ଟିରେ ଅସାଧୁ ତିରସ୍କୁର୍ବନ୍ତି ହେବା କଥା । ଦିବୋଽଭିତଃ ନ ହୋଇ ଦିବମଭିତଃ ହେବା କଥା । କାରଣ ଅଭିତଃ ଯୋଗରେ ଦ୍ୱିତୀୟା ହୁଏ । ଏ ସମସ୍ତ ବ୍ୟାକରଣ ନିୟମ ବହିର୍ଭୂତ ପଦ ପ୍ରୟୋଗ ଯୋଗୁଁ ଏଠାରେ ଶବ୍ଦହୀନ ଦୋଷ ହୋଇଅଛି ।

ଅନୁରୂପ ଯଥା—ଲଣ୍ଠିଇ ଆଦର୍ଶ ଯହିଁ ଘୃଣିଇ ଧରମ ।
ଧ୍ୱଂସଇ ସଂସ୍କୃତି କବା ସାମ୍ରାଜ୍ୟ ବର୍ଦ୍ଧନ । (ପାଷାଣ ତରଣେ ରକ୍ତ, ତୃତୀୟ ସର୍ଗ)

ଏଠାରେ ଲଣ୍ଠନ, ଘୃଣା ଓ ଧ୍ୱଂସ ଆଦି ବିଶେଷ୍ୟ ପଦକୁ କ୍ରିୟାରୂପେ ବ୍ୟବହାର କରାଯାଇଛି । ଏପରି ବ୍ୟାକରଣ ନିୟମ ବିରୋଧୀ ଶବ୍ଦର ପ୍ରୟୋଗ ଶବ୍ଦହୀନ ଦୋଷରେ ଦୂଷିତ ।

ବଦ୍ଧ୍ୟଭିନ୍ନତମାଳାସିତବପୁଷ ଇମେ ବାରିବାହା ଧ୍ୱନନ୍ତି ॥ ୧୫ ॥

ଗୁରୋର୍ଲଘୋଷ୍ଟ ବର୍ଣ୍ଣସ୍ୟ ଯୋଽସ୍ଥାନେ ରଚନାବିଧିଃ ।
ତନ୍ନ୍ୟୂନାଧିକତା ବାପି ଭିନ୍ନବୃତ୍ତମିଦଂ ଯଥା ॥ ୧୬ ॥

୧୪) ଯତିଭ୍ରଷ୍ଟ—ଛନ୍ଦରେ ପ୍ରଯୁକ୍ତ ଶବର ବିସ୍ମରଣକୁ ଯତି କହନ୍ତି । ତଦ୍‌ଭିନ୍ନ ଯତି ଭ୍ରଷ୍ଟ ଦୋଷରେ ଦୂଷିତ । ଛନ୍ଦଶାସ୍ତ୍ର ଅନୁସାରେ ପ୍ରତ୍ୟେକ ଛନ୍ଦରେ ଯତି (ବିରାମ) ର ସ୍ଥାନ ନିର୍ଦ୍ଦିଷ୍ଟ ଅଟେ ।

ଯତି ନିର୍ଦ୍ଦିଷ୍ଟ ସ୍ଥାନରେ ବିରାମ ନହୋଇ ଅନ୍ୟତ୍ର ହୁଏ ତେବେ ଯତିଭ୍ରଷ୍ଟ ଦୋଷ ହୁଏ । ପ୍ରକାରାନ୍ତରେ ଯତିପରିମିତ ଅକ୍ଷର ସମ୍ବନ୍ଧ ଓ ବୃତ୍ତିମତୀ ରଚନାକୁ ଛନ୍ଦ ବୋଲାଯାଏ ।·ଛନ୍ଦକୁ ହିଁ ବୃତ୍ତ କହନ୍ତି । ବୃତ୍ତ ପଢ଼ିବା ସମୟରେ ଯେଉଁଠାରେ ଜିହ୍ୱାର ପାତ ଘଟେ ତାହାକୁ ଯତି କହନ୍ତି । ଏହି ଯତି ପଦମଧ୍ୟରେ ପଡ଼ିଲେ ଦୋଷ ବୋଲି ଆଲଙ୍କାରିକ ମାନେ କହନ୍ତି ।

୧୫) ଉଦାହରଣ—ବଦ୍ଧ୍ୟନ୍ତ୍ର୍ୟୁକ୍ତ ତମାଲ ସମାନ କୃଷ୍ଣବର୍ଣ୍ଣ ଏହି ମେଘ ଗର୍ଜନ କରୁ ଅଛି । ଏଠାରେ ସଂସ୍କୃତ ସ୍ରଗ୍‌ଧରା ଛନ୍ଦରେ· ଯତି ଦୋଷ ରହିଛି ।

ସ୍ରଗ୍‌ଧରା ଲକ୍ଷଣ— ମ୍ରଭ୍ନୈର୍ଯାନାଂ ତ୍ରୟେଣ ତ୍ରିମୁନି ଯତିଯୁତା ସ୍ରଗ୍‌ଧରା କୀର୍ତ୍ତିତେୟଂ । [ଛନ୍ଦୋମଞ୍ଜରୀ]

ଏଥିରେ ସାତ ସାତ ବର୍ଣ୍ଣରେ ଯତିପାତ ହୁଏ । ମ, ର, ଭ, ନ, ଯ, ଯ, ଯ, (ଗଣ) ୭, ୭, ୭, ଅକ୍ଷର ଯତିପାତ ହୁଏ । ଉକ୍ତ ପଦ୍ୟରେ ୮,୭ରେ ଯତି ପଡ଼ିବା ହେତୁ ଦୋଷାବହ ।

ଅନୁରୂପ ଯଥା—ବିରହବହ୍ନି ଆ,ରମ୍ଭେ ସୁନ୍ଦର ବର୍ଣ୍ଣନ, ଲେଖେ,
ପ୍ରଭଞ୍ଜନ ପଥ ପ୍ରଭ·,ଜନ ହୋଇବ ।
ବିଶ୍ୱସ୍ତେ ଜାତ ଏ, ତେଜ, ଲଭ ହ୍ରଦ ସଫୁଟକ,
ମଧ୍ୟରେ ସେ ମନୋରମ, ମଣି ଥୋଇବ ।
ବୋଲେ ସେ ଭ୍ରମର, ନୋହିବ;
ବଞ୍ଚନା କେତେ କାଳୁ କଲଣି ଦଇବ (ବୈ. ବି ୯-୧୫)

ଏଣୁ ଖି ଗରେ ଯତିପାତ ହୁଏ ୭+୧, ୭+୧, ୮+୫, ୭+୧,
୭+୧, ୮+୫, ୭+୩, ୭+୧+୫ ।

ଉକ୍ତ ପଦ୍ୟରେ ପଦ ମଧ୍ୟରେ ଯତିପାତ ହେତୁ ଯତିଭ୍ରଷ୍ଟ ଦୋଷ ଅଟେ ।

୧୬): ଭିନ୍ନବୃତ୍ତ—ଗୁରୁ ଓ ଲଘୁ ବର୍ଣ୍ଣର ଅସ୍ଥାନରେ ସମାବେଶ ଓ ଏହାର ନ୍ୟୂନତା ବା ଅଧିକତା ଭିନ୍ନବୃତ୍ତରେ ଦୋଷ ଅଟେ ।

ଭ୍ରମନ୍ତ ଭ୍ରମରମାଳା କାନନେ ଷୂନ୍ୟଦାସୌ ।
ବରହିତରମଣୀକୋଽହ୍ନି ଭାଦ୍ୟ ଗନ୍ତୁମ ॥ ୧୭ ॥

କାନ୍ତେ ଇନ୍ଦୁଶିରୋରତ୍ନେ ଆଦଧାନେ ଉଦଂଶୁମା ।
ପାତାଂ ବଃ ଶମ୍ଭୁଶର୍ବାଣ୍ୟାବିତ ପ୍ରାହୁର୍ବିସନ୍ଧ୍ୟଦଃ ॥ ୧୮ ॥

---

ଛନ୍ଦରେ ଗୁରୁ ଓ ଲଘୁ ବର୍ଣ୍ଣର ସ୍ଥାନ ନିର୍ଦ୍ଦିଷ୍ଟ ଅଛି । ସେହିପରି ବର୍ଣ୍ଣର ମାତ୍ରା ସଂଖ୍ୟା ମଧ୍ୟ ପୁନର୍ଦ୍ଦିଷ୍ଟ ତାହାର ବିପର୍ଯ୍ୟତ ହେଲେ ଭଗ୍ନ ବୃତ୍ତ ଦୋଷ ହୁଏ ।

୧୭) ଉଦାହରଣ—ଏହି ଉନ୍ମତ୍ତ ଭ୍ରମର ପଂକ୍ତି ବନରେ ବୁଲୁଛନ୍ତି । ତୁମେ ପ୍ରିୟାଠାରୁ ଦୂରେଇ ଯାଇଛ । ଅତଏବ ଆଜି ଘରକୁ ଯାଇପାର ।

ଏହି ଶ୍ଳୋକଟି ମାଳିନୀ ଛନ୍ଦରେ ଲିଖିତ । ମାଳିନୀର ଲକ୍ଷଣ ଯଥା—

ନନମୟଯଯୁତେୟଂ ମାଳିନୀ ଭୋଗିଲୋକୈଃ (ଛନ୍ଦୋମଞ୍ଜରୀ)

ଏଥିରେ ନ, ନ, ମ, ଯ, ଯ ଏହି ପାଞ୍ଚଗୋଟି ଗଣ ରହେ ।

ନ=ତିନିଲଘୁ  ମ=ତିନିଗୁରୁ  ଯ=ଆଦିଲଘୁ

VVV  – – –  V– –

ଭ୍ରମନ୍ତ ଭ୍ରମର ମାଳାକାନନେ ଷୂନ୍ୟଦାସୌ

VV– VVV– – – V– – – – –

ଲକ୍ଷଣ ଅନୁସାରେ ଗଣ ଯୋଜନା ହୋଇନାହିଁ । ଗୁରୁ ଲଘୁ ବର୍ଣ୍ଣର ଅସ୍ଥାନରେ ପ୍ରୟୋଗ ହୋଇଛି । ଦ୍ୱିତୀୟ ଚରଣରେ ୧୫ଟି ଅକ୍ଷର ସ୍ଥାନରେ ୧୩ ଗୋଟି ଅକ୍ଷର ଅଛି । ଅତଏବ ବର୍ଣ୍ଣନ୍ୟୂନତ ହେତୁ ଭଗ୍ନବୃତ୍ତ ଦୋଷରେ ଦୂଷିତ ।

ଅନୁରୂପ ଯଥା—ପିତାଙ୍କ ଠାରୁ ମେଲାଣି ହୋଇଲେ ।
କୃଷ୍ଣ ମଥୁରାକୁ ବଜେ କଣଗଲେ ।

ଚକ୍ରକେଳି ରାଗରେ ପଦଟି ଲିଖିତ । ଏଗାର ଅକ୍ଷରରେ ଏକପାଦ ହୁଏ । ଏଠାରେ ଦ୍ୱିତୀୟ ପାଦରେ ବାର ଅକ୍ଷର ଥିବାରୁ ହତବୃତ୍ତତା ଦୋଷରେ ଦୂଷିତ ।

୧୮) ବିସନ୍ଧି —ସୁନ୍ଦର ଦୀପ୍ତ ଚନ୍ଦ୍ରମା ଏବଂ ଶିରୋରତ୍ନ ଧାରଣ କାରୀ ଶଙ୍କର ଓ ପାର୍ବତୀ ତୁମକୁ ରକ୍ଷା କରନ୍ତୁ । ଏଠାରେ ବିସନ୍ଧି ଦୋଷ ରହିଛି । ଭାମହ ବିସନ୍ଧିର ଲକ୍ଷଣ ନ ଲେଖି ଉଦାହରଣ ଦେଇଛନ୍ତି ।

---

ପାଠାନ୍ତର-ଅର୍ହସ୍ୟର୍ବ୍ୟ

ଯା ଦେଶେ ଦ୍ରବ୍ୟସମ୍ଭୂତିରପି ବା ନୋପଦର୍ଶ୍ୟତେ ।
ତତ୍ତଦ୍ ବିରୋଧି ବକ୍ତୋର୍ଯ୍ୟଂ ସ୍ୱଭାବାତ୍ତଦ୍ୟଥୋଚ୍ୟତେ ॥ ୨୯ ॥

ମଲୟେ କନ୍ଦରୋତ୍ପନ୍ନହୃଦ୍ୟକାଳାଗରୁଦ୍ରୁମେ ।
ସୁଗନ୍ଧିକୁସୁମାନମ୍ରା ରାଜନ୍ତେ ଦେବଦାରବଃ ॥ ୩୦ ॥

ଷଣ୍ଣାମୃତୂନାଂ ଭେଦେନ କାଳଃ ଷୋଢେବ ଭିଦ୍ୟତେ ।
ତଦ୍ ବିରୋଧକୃଦତ୍ୟାହୁର୍ବିପର୍ଯ୍ୟାସାଦ୍ଦଂ ଯଥା ॥ ୩୧ ॥

---

ଏଠାରେ କାନ୍ତେ + ଇନ୍ଦୁ, ଶିରୋରତ୍ନେ + ଅଦଧାନେ, ଅଦଧାନେ + ଉଦଂଶୁକା ସନ୍ଧି ହେବା କଥା । କିନ୍ତୁ ପାଣିନିସୂତ୍ର 'ଈଦୂଦେଦ୍ଦ୍ୱିବଚନଂ ପ୍ରଗୃହ୍ୟଂ' ଅନୁସାରେ ପ୍ରକୃତି ଭାବ ହେତୁ ସନ୍ଧି ହୋଇ ପାରିବ ନାହିଁ । ଯେଣୁ ବିସନ୍ଧି ଦୋଷରେ ଏହା ଦୂଷିତ ନୁହେ । ତଥାପି ଶ୍ରମହ ବିସନ୍ଧି ଦୋଷ କହିବା ଉଦ୍ଦେଶ୍ୟ ଅଟେ । ପ୍ରକୃତ ଭାବର ବାରମ୍ବାର ପ୍ରୟୋଗ ବିରସ ଅଟେ ।

୨୯) ଦେଶବିରୋଧୀ- ଦେଶ ବିଶେଷରେ ଯେଉଁ ଦ୍ରବ୍ୟ ହୁଏ ବା ଉତ୍ପନ୍ନ ହୁଏ ନାହିଁ । ତାହା ଧ୍ୟାନରେ ରଖିବା ଉଚିତ । ଯଦି ବିପରୀତ ବର୍ଣ୍ଣନା କରାଯାଏ ତେବେ ଦେଶ ବିରୋଧୀ ଦୋଷ ହୁଏ ।

୩୦) ଉଦାହରଣ—ମଳୟ ପର୍ବତ କନ୍ଦରରେ କାଳାଗୁରୁବୃକ୍ଷ ଜନ୍ମିଅଛୁ । ତଥା ସୁ-ଗନ୍ଧିତ ପୁଷ୍ପରେ ଦେବଦାରୁ ସୁଶୋଭିତ ।

ମଳୟ ପର୍ବତରେ ଚନ୍ଦନ ଗଛ ହୁଏ, କିନ୍ତୁ କାଳାଗୁରୁ ବୃକ୍ଷ ଜନ୍ମେ ନାହିଁ । ଦେବଦାରୁ ବୃକ୍ଷରେ ସୁଗନ୍ଧିତ ପୁଷ୍ପ ଅସମ୍ଭବ । ତେଣୁଏପରି ବର୍ଣ୍ଣନା ଦେଶବିରୋଧୀ ଅଟେ ।

ଅନୁରୂପ ଯଥା - କର୍ଣ୍ଣାଟ ଦେଶ ମହିମା କେ କରେ ବର୍ଣ୍ଣନ ।
ଯହିଁକୁଙ୍କୁମ କସ୍ତୁରୀ ହୁଅଇ ଉତ୍ପନ୍ନ । ( ଅଲଙ୍କାର ବୋଧୋଦୟ)

କୁଙ୍କୁମ ଓ କସ୍ତୁରୀ କାଶ୍ମୀର ଓ ନେପାଳରେ ଉତ୍ପନ୍ନ ହୁଏ, କର୍ଣ୍ଣାଟକରେ ନୁହେ । ତେଣୁ ଦେଶ ବିରୋଧୀ ଦୋଷ ।

୩୧) କାଳ ବିରୋଧୀ - ଛଅ ଗୋଟି ଋତୁ ଭେଦରେ ସମୟ ମଧ୍ୟ ଛଅ ଭାଗରେ ବିଭକ୍ତ ସେଥିରେ ବିପର୍ଯ୍ୟୟ ଦେଖାଦେଲେ କାଳବିରୋଧୀ ଦୋଷ ହୁଏ ।

ଯେଉଁ ସମୟରେ ଯାହା ଉତ୍ପନ୍ନ ହୁଏ ତାହା ବର୍ଣ୍ଣନା ନକରି କାଳାନ୍ତରରେ ଉତ୍ପନ୍ନ ବସ୍ତୁର ବର୍ଣ୍ଣନା କଲେ ଏ ଦୋଷ ହୋଇଥାଏ ।

ଉଦ୍ଭୂତଶିଶିରସାରଙ୍ଗ ପ୍ରାବୃଟ୍‌କ୍ଷଣେଷ୍ୱାନ୍ତଭସ୍ୱତଃ ।
ସ୍ଫୁଲ୍ଲାଃ ସୁରଭୟନ୍ତୀମେ ଚୂତାଃ କାନନଶୋଭନଃ ॥ ୩୨ ॥

କଳା ସଙ୍କଳନା ପ୍ରଜ୍ଞା ଶିଳ୍ପାନ୍ୟସ୍ୟାଶ୍ଚ ଗୋଚରଃ ।
ବପର୍ଯ୍ୟସ୍ତଂ ତଥୈବାତ୍ର ତଦ୍ ବିରୋଧକରଂ ଯଥା ॥ ୩୩ ॥

ଋଷଭତ୍ରପଞ୍ଚମସ୍ତସ୍ମାତ୍‌ସଷଡ଼ଜଂ ଧୈବତଂ ସ୍ମୃତମ୍ ।
ଅସ୍ୟଂ ହି ମଧ୍ୟମଗ୍ରାମୋ ମଧ୍ୟମୋତ୍ପୀଡ଼ିତର୍ଷଭଃ ॥ ୩୪ ॥

ଇତି ସାଧିତଂ ମୋହାଦନ୍ୟଥୈବାବଗଚ୍ଛତି ।
ଅନ୍ୟାସ୍ୱପି କଳାସ୍ୱେବମଭିଧେୟା ବିରୋଧିତା ॥ ୩୫ ॥

---

୩୨) ଉଦାହରଣ—ଯଥା ଆମ୍ରମଞ୍ଜରୀ (ବଉଳ) ବସନ୍ତ ଋତୁରେ ଦେଖାଯାଏ । ସେ ବର୍ଷାକାଳୀନ ପବନକୁ ସୁରଭିତ କରୁଅଛି । ଏପରି ବର୍ଣ୍ଣନାରେ କାଳ ବିରୋଧ ସୃଷ୍ଟି ହୋଇଛି । ତେଣୁ ଏପରି ବର୍ଣ୍ଣନା କାଳ ବିରୋଧୀ ଦୋଷରେ ଦୂଷିତ ।

ଅନୁରୂପ ଯଥା - ପ୍ରବେଶ ହୋଇଲା ବରଷା କାଳ ।
କୋକିଳ ଧ୍ୱନିରେ ବନ ମଣ୍ଡଳ । (ଅଳଂକାର ବୋଧୋଦୟ)

କୋଇଲି ବସନ୍ତ କାଳରେ ଧ୍ୱନି କରେ । ବର୍ଷାକାଳରେ ତାର ଧ୍ୱନି ବର୍ଣ୍ଣନା କାଳ ବିରୋଧୀ ।

୩୩] କଳାବିରୋଧୀ - ସଙ୍କଳନଶୀଳ ବୁଦ୍ଧିକୁ କଳା କହନ୍ତି । ବିବିଧ ଶିଳ୍ପ ତାର ବିଷୟଅଟେ । ତାର ବିପରୀତ ବର୍ଣ୍ଣନା କଳା ବିରୋଧୀ ଦୋଷ ଅଟେ ।

ଧ୍ୱନ୍ୟାଙ୍କରେ କଳାର ବ୍ୟୁତ୍ପତ୍ତି ଦିଆଯାଇଛି । ଲୋକ ଏବଂ ଶାସ୍ତ୍ରକୁ ଅନୁଶୀଳନ କରି ତାର ବୈଶିଷ୍ଟ୍ୟକୁ ସଂକଳନ କରିବା ଶକ୍ତି କଳା ନାମରେ ପରିଚିତ । ସେହି କଳାର ବିଷୟ ସଙ୍ଗୀତ, ଚିତ୍ର, ମୂର୍ତ୍ତି, ଶିଳ୍ପ, ଆଦି ଅନେକ । ସେ ସମସ୍ତ କଳାରେ ସ୍ୱୀକୃତ ନିୟମରେ ବ୍ୟତିକ୍ରମ ଦେଖା ଦେଲେ କଳା ବିରୋଧୀ ଦୋଷ ହୁଏ ।

୩୪-୩୫] ଉଦାହରଣ—ସଙ୍ଗୀତ ଶାସ୍ତ୍ରରେ ଋଷଭ ପରେ ପଞ୍ଚମ ତା ପରେ ଷଡଜ ପୁଣି ଧୈବତର ଉଚ୍ଚାରଣ କରି ମଧ୍ୟମରେ ଋଷଭକୁ ଉତ୍ପୀଡ଼ନ କଲେ ମଧ୍ୟମ ଗ୍ରାମ ପ୍ରାପ୍ତ ହୁଏ । ଏହି ନିୟମକୁ ନଜାଣି ଅନ୍ୟଥାରେ ପ୍ରକାଶ କରିଗଲେ କଳା ବିରୋଧୀ ଦୋଷ ହୁଏ । ଅନ୍ୟ କଳା ବିଷୟରେ ମଧ୍ୟ ଏହିପରି ବିରୋଧ ଦୋଷାବହ ବୋଲି ବୁଝିବା ଉଚିତ ।

ଏହି ଉଦାହରଣ ସଙ୍ଗୀତ ଶାସ୍ତ୍ର ଜ୍ଞାନ ବ୍ୟତିରେକେ ଅସ୍ପଷ୍ଟ । ସଙ୍ଗୀତରେ ସାତ ଗୋଟି ସ୍ୱର ମୁଖ୍ୟ ଯଥା-ଷଡ଼ଜ, ଋଷଭ, ଗାନ୍ଧାର ,ମଧ୍ୟମରେ , ପଞ୍ଚମ,ଧୈବତ ଓ ନିଷାଦ

ସ୍ଥାସ୍ନୁ ଜଂଗମଭେଦେନ ଲୋକଂ ତନ୍ତ୍ରବଦୋ ବଦୁଃ ।
ସ ଚ ତଦ୍‌ବ୍ୟବହାରେଽସ୍ୟ ତଦ୍‌ବରୋଧକରଂ ଯଥା ॥ ୩୭ ॥

ତେଷାଂ କଟତଟଭ୍ରଷ୍ଟୈର୍ଗଜାନାଂ ମଦବିନ୍ଦୁଭିଃ ।
ପ୍ରାବର୍ତ୍ତିତ ନଦୀ ଘୋରା ହସ୍ତ୍ୟଶ୍ୱରଥବାହିନୀ ॥ ୩୭ ॥

---

ଏଗୁଡ଼ିକର ପ୍ରଥମ ଅକ୍ଷର ସା, ରେ, ଗା, ମା, ପ, ଧ, ନୀ ଅଟେ । କିନ୍ତୁ ସୁବିଧା ଦୃଷ୍ଟିରୁ ଷ ସ୍ଥାନରେ ସା, ଋ ସ୍ଥାନରେ ଗ କରାଯାଇଛି । ଏମଧ୍ୟରେ ଅବିକାରୀ ସ୍ୱର ଦୁଇଟି ଯଥା- ସା ଓ ପ ଅନ୍ୟ ପାଞ୍ଚଟିରେ ବିକାରୀ ସ୍ୱର (କୋମଳ ଓ ତୀବ୍ର ଭେଦରେ ଦ୍ୱିବିଧ) । ଅତଏବ ସମୁଦାୟ ଦ୍ୱାଦଶ ହେଲେ ମଧ୍ୟ ସୂକ୍ଷ୍ମ ଭେଦରେ ବହୁବିଧ ଏ ସମସ୍ତଙ୍କୁ ଶ୍ରୁତି କହନ୍ତି । ଶ୍ରୁତି ସଂଖ୍ୟା ୨୨ । ସାତ ସ୍ୱରରେ ୨୨ ଶ୍ରୁତିର ବିଭଜନ ନିମ୍ନୋକ୍ତ ରୀତିରେ ପ୍ରଦର୍ଶିତ । ଷଡ଼ଜ-୪, ଋଷଭ-୩, ଗାନ୍ଧାର-୨, ମଧ୍ୟମ-୪, ପଞ୍ଚମ- ୪, ଧୈବତ-୩, ନିଷାଦ-୨ । ସ୍ୱର ସମୂହର ନାମ 'ଗ୍ରାମ' ଅଟେ । ଗ୍ରାମ ତିନୋଟି—ଷଡ଼ଜ, ମଧ୍ୟମ ଗାନ୍ଧାର । ସାତ ସ୍ୱରର ଆରୋହ ଅବରୋହକୁ ମୂର୍ଚ୍ଛନା କହନ୍ତି । ମଧ୍ୟମ ଗ୍ରାମରୁ ଉତ୍ପନ୍ନ ମୂର୍ଚ୍ଛନା ମ'ରୁ ଆରମ୍ଭ ହୋଇ ଗ' ପର୍ଯ୍ୟନ୍ତ ଚାଲେ । ଏହି ମପଧନୀସାରେଗ କ୍ରମକୁ କେହି ଅଜ୍ଞାନ-ବଶତଃ ଓଲଟାଇ ଦେଲେ ସଙ୍ଗୀତଶାସ୍ତ୍ର ନିୟମ ବିପର୍ଯ୍ୟସ୍ତ ଦୋଷ ହେବ ।

ଅନ୍ୟ ଏକ କଥା । ପୀଡ଼ନର ଅର୍ଥ ଉତ୍ତରବର୍ତ୍ତୀ ସ୍ୱର ଦ୍ୱାରା ପୂର୍ବବର୍ତ୍ତୀ ସ୍ୱରକୁ ମିଶାଇବା । ଏପରି କରିବା ବେଳେ ପୂର୍ବବର୍ତ୍ତୀ ସ୍ୱରର ଅନ୍ତିମ ଶ୍ରୁତିକୁ ଆଶ୍ରୟ କରି ଉତ୍ତର ବର୍ତ୍ତୀ ସ୍ୱର ଉଚ୍ଚାରିତ ହୁଏ । ଏଦୃଷ୍ଟିରୁ ମଧ୍ୟମଦ୍ୱାରା ମଧ୍ୟମବର୍ତ୍ତୀ ଗାନ୍ଧାରକୁ ଛାଡ଼ି ଋଷଭର ପୀଡ଼ନ ସାଧାରଣତଃ ସଙ୍ଗତ ନୁହେଁ । ତଥାପି ମଧ୍ୟମୋତ୍ପୀଡ଼ିତର୍ଷଭିଃରେ ଏପରି କୁହା-ଯାଇଛି । ଉପର୍ଯ୍ୟୁକ୍ତ ଉଦାହରଣରେ ସଙ୍ଗୀତଶାସ୍ତ୍ର ନିୟମର ଦୁଇ ପ୍ରକାର ବ୍ୟତିକ୍ରମ ପ୍ରଦର୍ଶିତ । ଅତଏବ ଏହା କଳାବିରୋଧୀ ଦୋଷ ଅଟେ ।

୩୭) ଲୋକ ବିରୋଧୀ — ତନ୍ତ୍ରଜ୍ଞମାନେ ସଂସାରକୁ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ କରିଛନ୍ତି । ଯଥା - ସ୍ଥାବର ଓ ଜଙ୍ଗମ । ଏହି ବ୍ୟବହାର କାବ୍ୟଶାସ୍ତ୍ରରେ ମଧ୍ୟ ଗ୍ରହଣୀୟ ତାହାର ବିରୋଧ ଲୋକ ବିରୋଧୀ ଦୋଷ ଅଟେ ।

୩୭) ଉଦାହରଣ—ସେହି ହସ୍ତୀଙ୍କ କପୋଳରୁ ନିର୍ଗତ ମଦଜଳ ବିନ୍ଦୁରେ ଭୟଙ୍କର ନଦୀ ସୃଷ୍ଟିହେଲା । ଯେଉଁଥିରେ ହାତୀ, ଘୋଡ଼ା ରଥ ଆଦି ଭାସିଗଲେ ।

ହାତୀଙ୍କ ମଦଜଳରେ ନଦୀ ସୃଷ୍ଟିହେବା ଏବଂ ସେଥିରେ ହାତୀ, ଘୋଡ଼ା ରଥ ଆଦି ଭାସିଯିବା ଲୋକ ବିରୁଦ୍ଧ ହେତୁ ଏପରି ବର୍ଣ୍ଣନା ଦୋଷ ଯୁକ୍ତ ।

ଧାବତାଂ ସୈନ୍ୟବାହାନାଂ ଫେନବାରି ମୁଖଚ୍ୟୁତମ୍ ।
ଚକାର ଜାନୁଦଘ୍ନାମ୍ବୁପାନପ୍ରଭିଦଙ୍ଗମୁଖମନ୍ଥନଃ ॥ ୩୮ ॥
ନ୍ୟାୟ୍ୟଃ ଶାସ୍ତ୍ରଂ ତ୍ରିବର୍ଗୋକ୍ତିର୍ଦଣ୍ଡନୀତିଂ ଚ ତାଂ ବିଦୁଃ ।
ଅତୋ ନ୍ୟାୟ୍ୟବିରୋଧୀଷ୍ଟମପେତଂ ଯତ୍ତୟା ଯଥା ॥ ୩୯ ॥
ବିଜିଗୀଷୁମୁପନ୍ୟସ୍ୟ ବତ୍ସେଶଂ ବୃଦ୍ଧଦର୍ଶନମ୍ ।
ତସ୍ୟୈବ କୃତିନଃ ପଶ୍ଚାଦଭ୍ୟଧାଚାରଶୂନ୍ୟତାମ୍ ॥ ୪୦ ॥

---

୩୮) **ଅନ୍ୟ ଉଦାହରଣ** — ସେନାବାହିନୀରେ ଥିବା ଧାବମାନ ଘୋଡାଙ୍କ ମୁଖରୁ **ନିର୍ଗତ ଫେନ ଜଳରେ ପ୍ରତ୍ୟେକ ହସ୍ତୀମାନେ ଆଣ୍ଠୁ ଏ ପାଣିରେ ବୁଡିଗଲେ ।**

ଏଠାରେ ମଧ୍ୟ ଫେନ ଜଳରେ ଆଣ୍ଠୁ ବୁଡ଼ିଯିବା ବର୍ଣ୍ଣନା ଲୋକବିରୋଧୀ ଅଟେ ।
ଅନ୍ୟ ଏକ ଉଦାହରଣ—ଅନୁରାଗ ଉପୁଜେ ଯେଉଁ କୁସୁମ ବାଣେ ।
ଓଲଟା ଯୋଖିଲେ ସେ ବାଣ ପୁଣି ବିରାଗ ଆଣେ । (ଚନ୍ଦ୍ରଭାଗା)

କନ୍ଦର୍ପର ଫୁଲଶର ହୃଦୟରେ ଅନୁରାଗ ସୃଷ୍ଟି କରେ, ଏହା ଲୋକାଚାର । କିନ୍ତୁ ଓଲଟା ଯୋଖିଲେ ବିରାଗ ଜାତ କରେ । ଏହା ଲୋକ ବିରୋଧୀ ।

୩୯) **ନ୍ୟାୟ୍ୟ ବିରୋଧୀ**—ତ୍ରିବର୍ଗସାଧକ ଶାସ୍ତ୍ର ଓ ଦଣ୍ଡନୀତିକୁ ନ୍ୟାୟ୍ୟ କହନ୍ତି । ଅତଃ ଯେ ଏହାକୁ ବିରୋଧ କରେ, ସେ ନ୍ୟାୟ୍ୟ ବିରୋଧୀ ଅଟେ ।

ଲୌକିକ ଦୃଷ୍ଟିରୁ ଧର୍ମ, ଅର୍ଥ ଓ କାମ ତ୍ରିବିଧ ପୁରୁଷାର୍ଥ, ମୋକ୍ଷ ରୂପ ଚତୁର୍ଥ ପୁରୁଷାର୍ଥ ପାରଲୌକିକ ଦୃଷ୍ଟିରୁ ମହତ୍ତ୍ୱପୂର୍ଣ୍ଣ । ଜୀବନର ଅନ୍ତିମ ଲକ୍ଷ୍ୟ ହେତୁ ମୋକ୍ଷକୁ ପରମ ପୁରୁଷାର୍ଥ କହନ୍ତି । ଉପର୍ଯ୍ୟୁକ୍ତ ତ୍ରିବିଧ ପୁରୁଷାର୍ଥର ନିରୂପଣ ଯେଉଁ ଗ୍ରନ୍ଥରେ ହୋଇଥାଏ । ତାହାକୁ ଶାସ୍ତ୍ର କହନ୍ତି । ଦଣ୍ଡନୀତି ଏ ମଧ୍ୟରେ ଅନ୍ତର୍ଭୁକ୍ତ । ତଥାପି ଭାମହ ପୃଥକ ନିର୍ଦ୍ଦେଶ ଦେଇଛନ୍ତି । ଏ ସମସ୍ତ ଶାସ୍ତ୍ର ବିରୋଧୀ ବର୍ଣ୍ଣନକୁ ନ୍ୟାୟ୍ୟ ବିରୋଧୀ ଦୋଷ କହନ୍ତି ।

୪୦) **ଉଦାହରଣ**—ବତ୍ସନରେଶ ଉଦୟନଙ୍କୁ ବୁଦ୍ଧିମାନ, ବିଜୟାକାଙ୍କ୍ଷୀ ଏବଂ ବୃଦ୍ଧଙ୍କ ପରି ଦୂରଦର୍ଶୀ ବର୍ଣ୍ଣନା କରାଯାଇ ପରେ ତାହାଙ୍କୁ ଗୁପ୍ତଚର ଶୂନ୍ୟ କୁହାଯାଇଛି ।

ପ୍ରଥମ ଉଦାହରଣ ଉଦୟନ ଓ ବାସବଦତ୍ତା ଉପାଖ୍ୟାନରୁ ଭାମହ ନ୍ୟାୟ୍ୟବିରୋଧୀ ବିଷୟ ଉଦାହରଣ ପ୍ରସ୍ତୁତ କରିଛନ୍ତି । ଯେଉଁ ରାଜା ଗୁପ୍ତଚର ଶୂନ୍ୟ, ସେ ଶତ୍ରୁଙ୍କ ବିଷୟରେ କିପରି ଜାଣି ପାରିବ ? ବିଜୟ ଅଭିଳାଷ କିପରି ପୂର୍ଣ୍ଣ ହେବ ! ତାକୁ କିପରି ବୁଦ୍ଧିମାନ୍ ଓ ଦୂରଦର୍ଶୀ କୁହାଯିବ ? **ତେଣୁ** ଏଧରଣର ବର୍ଣ୍ଣନା ନ୍ୟାୟ୍ୟ ବିରୋଧୀ ।

ଅନ୍ତର୍ଯୋଧଶତାକୀର୍ଣ୍ଣଂ ସାଲଂକାୟନନେତ୍ରକମ୍ ।
ତଥା ବଧଂ ଗଜଚ୍ଛଦ୍ମ ନାଜ୍ଞାସୀଶ୍ଚ ସ୍ୱଭୂଗତମ୍ ॥ ୪୧ ॥
ଯଦି ଚୋପେକ୍ଷିତଂ ତସ୍ୟ ସଚିବୈଃ ସ୍ୱାର୍ଥସିଦ୍ଧୟେ ।
ଅହୋନ୍ମଦମା ତେଷାଂ ଭକ୍ତିର୍ବା ନାସ୍ତି ଭର୍ତ୍ତରି ॥ ୪୨ ॥
ଶରା ଦୃଢଧନୁର୍ମୁକ୍ତା ମନ୍ୟମଦ୍ଭିରଗ୍ରତଃ ।
ମର୍ମାଣି ପତିହୃତ୍ତ୍ୟାସ୍ୟ ପତିଷ୍ୟନ୍ତୀତି କାନୁମା ॥ ୪୩ ॥

---

୪୧) ଦ୍ୱିତୀୟ ଉଦାହରଣ--ଉଦୟନ କୃତ୍ରିମ ହସ୍ତୀକୁ କପଟ ଚିହ୍ନିପାରିଲେ ନାହିଁ । ଯେଉଁ ହସ୍ତୀକୁ ତାଙ୍କ ରାଜ୍ୟରେ ରଖାଯାଇଥିଲା ଓ ଯେଉଁ କୃତ୍ରିମ ହସ୍ତୀ ଗର୍ଭରେ ସାଲଂକାୟନଙ୍କ ନେତୃତ୍ୱରେ ଶହ ଶହ ଯୋଦ୍ଧା ଲୁଚି ରହିଥିଲେ ।

ଏକେତ ହାତୀ ନକଲି । ଦ୍ୱିତୀୟରେ ନିଜ ରାଜ୍ୟରେ ବର୍ତ୍ତମାନ । ତୃତୀୟରେ ଏତେ ବିଶାଳ ଯେ ତା' ଗର୍ଭରେ ଶହ ଶହ ଯୋଦ୍ଧା ଲୁଚି ରହିଥିଲେ । ଏକଥା ମୂର୍ଖ ମଧ୍ୟ ଜାଣିପାରିବ । ମାତ୍ର ନିପୁଣ ଉଦୟନ ତାହାକୁ ଜୀବନ୍ତ ହସ୍ତୀ ମନେକରି ଧରିବାକୁ ଯାଇ ନିଜେ ଧରା ପଡ଼ିଗଲେ । ଏହା ଅନ୍ୟ ଏକ ନ୍ୟାୟ ବିରୋଧୀ ଦୋଷ ।

୪୨) ଯଦି କୁହାଯାଏ ମନ୍ତ୍ରୀଗଣ ସ୍ୱାର୍ଥସିଦ୍ଧି ପାଇଁ ଉପେକ୍ଷା କରିଥିଲେ, ତେବେ ବୁଝିବାକୁ ହେବ, ଏହା ସେମାନଙ୍କର ମନ୍ଦବୁଦ୍ଧିତା ଅଥବା ସେମାନଙ୍କର ସ୍ୱାମୀ ପ୍ରତି ଭକ୍ତିହୀନତା ଅଟେ ।

ଯଦି କୁହାଯିବ, ମନ୍ତ୍ରୀମାନେ ଉଦୟନଙ୍କୁ ସୂଚନା ନ ଦେବାରୁ ଏପରି ଭୁଲ ହୋଇଗଲା ତେବେ ସେମାନେ ବିଶ୍ୱାସଘାତକ ଅଟନ୍ତି । ଯଦି ମନ୍ତ୍ରୀମାନେ ଏତିକିଖବର ରଖି ନପାରିଲେ, ତେବେ ସେମାନେ ମୂର୍ଖ ଅଟନ୍ତି । ପୁଣି ଯଦି ମନ୍ତ୍ରୀମାନେ ଭୁଲକଲେ, ତେବେ ରାଜାଙ୍କର ବୁଦ୍ଧି କୁଆଡେ଼ ଗଲା । ସବୁ ଦୃଷ୍ଟିରୁ ଏହା ଅସଙ୍ଗତ । ତେଣୁ ଲୋକ ନ୍ୟାୟ ବିରୋଧୀ ଅଟେ ।

୪୩) ଅନ୍ୟ ଏକ ଅସଙ୍ଗତ ଯଥା-ପୁଣି ଯୋଧାନ୍ଧ ଶତ୍ରୁଙ୍କ ଦ୍ୱାରା ଶକ୍ତଧନୁରୁ କ୍ଷେପଣ କରାଯାଇଥିବା ଶର ଉଦୟନଙ୍କ ମର୍ମ ଭେଦ ନକରି ଅନ୍ୟତ୍ର ପତିତ ହେଲା, ତେବେ ଏ କଳ୍ପନା ବିଶ୍ୱାସଯୋଗ୍ୟ ନୁହେଁ ।

ଶତ୍ରୁଙ୍କ ଧନୁ ଶକ୍ତ, ଶତ୍ରୁ ଯୋଧାନ୍ଧ, ଉଦୟନ ଏକାକୀ । ତଥାପି ଗୋଟିଏ ଶର ମଧ୍ୟ ଉଦୟନଙ୍କୁ ଆଘାତ କରିନାହିଁ । ଏପରି କଳ୍ପନାକୁ ପାଠକର ବୁଦ୍ଧି କପରି ସ୍ୱୀକାର କରିବ !

ହତୋଽନେନ ମମ ଭ୍ରାତା ମମ ପୁତ୍ରଃ ପିତା ମମ ।
ମାତୁଲୋ ଭଗିନେୟଶ୍ଚ ରୁଷା ସରବ୍‌ଧଚେତସଃ ॥ ୪୪ ॥

ଅସ୍ୟନ୍ୟୋ ବିବଧାନ୍ୟାନାବାପୁଧାନ୍ୟପରାଧିନମ୍ ।
ଏକାକିନମରଣ୍ୟାନ୍ୟାଂ ନ ହନ୍ୟୁଦ୍ଧବଃ କଥମ୍ ॥ ୪୫ ॥

ନମୋଽସ୍ତୁ ତେଭ୍ୟୋ ବିଦ୍ୱଦ୍‌ଭ୍ୟୋ ଯେଽଭିପ୍ରାୟଂ କବେରିମମ୍ ।
ଶାସ୍ତ୍ର ଲୋକାବପାସ୍ୟୈବଂ ନୟନ୍ତି ନୟବେଦନଃ ॥ ୪୬ ॥

ସଚେତସୋବନେଭସ୍ୟ ଚର୍ମଣା ନିର୍ମିତସ୍ୟ ଚ ।
ବିଶେଷଂ ବେଦ ବାଲୋଽପି କଷ୍ଟଂ କିଂନୁ କଥଂ ନୁ ତତ୍ ॥ ୪୭॥

---

୪୪-୪୫) ଏହି ବ୍ୟକ୍ତି ମୋର ଭାଇ, ପୁଅ, ବାପା, ମାମୁ, ଭଣଜାଙ୍କୁ ସମସ୍ତଙ୍କୁ ମାଇଲା । ଏହି ପରି କ୍ରୋଧାନ୍ଧ ହୋଇ, ବିବିଧ ଅସ୍ତ୍ରଚାଳନାରେ ନିପୁଣ ଯୋଦ୍ଧା ବୃନ୍ଦ ଜଙ୍ଗଲରେ ଏକାକୀ ବୁଲୁଥିବା ଅପରାଧୀ ଉଦୟନଙ୍କୁ କିପରି ମାରିପାରିଲେ ନାହିଁ ?

ଉଦୟନ ଏକାକୀ । ଶତ୍ରୁଙ୍କର ପ୍ରିୟଜନଙ୍କୁ ମାରି ସେମାନଙ୍କର ଅପରାଧୀ । ପ୍ରିୟଜନଙ୍କ ମୃତ୍ୟୁରେ ଶତ୍ରୁପକ୍ଷ କ୍ରୋଧାନ୍ଧ । ଯେଉଁ ବଣରେ ଯୁଦ୍ଧ ହେଉଥିଲା । ତାହା ବିଶାଳ ସେଥିରୁ ଉଦୟନ ସହଜରେ ବାହାରି ପାରିବେ ନାହିଁ ବା ବାହାରୁ ସହାୟତା ମିଳି ପାରିବ ନାହିଁ । ତଥାପି ଶତ୍ରୁଗଣ ତାଙ୍କର କୌଣସି କ୍ଷତି କରିପାରିଲେ ନାହିଁ, ଏପରି ବର୍ଣ୍ଣନ ବିଶ୍ୱସନୀୟ କି ?

୪୬) ସେହି ନୀତିଜ୍ଞ ପଣ୍ଡିତଙ୍କୁ ପ୍ରଣାମ ଯେ ଶାସ୍ତ୍ର ଓ ଲୋକାଚାରକୁ ଉପେକ୍ଷା କରି କବିଙ୍କର ଏହି ଅବିଶ୍ୱାସୀ ଅଭିପ୍ରାୟକୁ ଅନୁମୋଦନ କରନ୍ତି ।

୪୭) ସଜୀବ ବନ୍ୟହସ୍ତୀ ଏବଂ ଚମଡାରେ ତିଆରି କୃତ୍ରିମହସ୍ତୀ ମଧ୍ୟରେ ଥିବା ପ୍ରଭେଦ ବାଳକ ମଧ୍ୟ ଜାଣି ପାରେ । ତ'ଣ ଏତିକ ବୁଝିବା କଷ୍ଟକର । ତେବେ ଏ ପରି କମିତି ହେଲା ।

ପୂର୍ବୋକ୍ତ ନ୍ୟାୟ ବିରୋଧୀ ଦୋଷର ଏହା ଉପସଂହାର ଅଟେ । ବୋଧହୁଏ ଏ ସମସ୍ତ ଉଦାହରଣ କ୍ରମଙ୍କ ପ୍ରତିଜ୍ଞାଯୌଗନ୍ଧରାୟଣ ନାଟକ ପ୍ରତି ସଙ୍କେତ ପ୍ରଦାନ କରେ । ଉଦୟନ ବାସବଦତ୍ତା କଥାର ସାରାଂଶ । ବତ୍ସଦେଶର ରାଜା ଉଦୟନଙ୍କ ରାଜଧାନୀ ଥିଲା ଇଲାହାବାଦର ଦକ୍ଷିଣରେ ଥିବା ଯମୁନାତଟବର୍ତ୍ତୀ କୌଶାମ୍ବୀ (କୋସମ) । ଉଦୟନ ଶ୍ରେଷ୍ଠ ବୀଣା ବାଦକ ଓ ହାତୀ ଶିକାର କଳାରେ ନିପୁଣ । ସେ ସମୟରେ ପ୍ରଦ୍ୟୋତ ବା ଚଣ୍ଡ ମହାସେନ ଥିଲେ ଅବନ୍ତୀର ରାଜା । ତାଙ୍କର ରାଜଧାନୀ ଥିଲା ଉଜ୍ଜୟିନୀ (ଉଜ୍ଜୈନ) ।

ଆଗମୋ ଧର୍ମଶାସ୍ତ୍ରାଣି ଲୋକସୀମା ଚ ତତ୍‌କୃତା ।
ତଦ୍‌ବିରୋଧି ତଦାଖ୍ୟରବ୍ୟତିକ୍ରମଣତୋ ଯଥା ॥ ୪୮ ॥
ଭୁକ୍ତାଂ ପୀତସୋମାନଂ ନ୍ୟାଯ୍ୟେ ବର୍ତ୍ମନି ତିଷ୍ଠତାମ୍ ।
ଅଳଂକରିଷ୍ଣୁନା ବଂଶଂ ଗୁରୌ ସତି ଜିଗୀଷୁଣା ॥ ୪୯ ॥
ଅଗ୍ରଯୋତେନ ସଂସାରମନ୍ତରେଣ ଦ୍ୱିଜନ୍ମନା ।
ନରବାହନ ଦତ୍ତେନ ବେଶ୍ୟାବାର୍ନିଶି ପୀଡ଼ିତଃ ॥ ୫୦ ॥

---

ପ୍ରଦ୍ୟୋତଙ୍କ ପୁତ୍ରୀ ଶୀଳ-ଗୁଣ ସମ୍ପନ୍ନା ପରମରୂପବତୀ ବାସବଦତ୍ତା । ପ୍ରଦ୍ୟୋତ ଉଦୟନଙ୍କ ଗୁଣରେ ମୁଗ୍‌ଧ ହୋଇ ବାସବଦତ୍ତା ସହିତ ଉଦୟନଙ୍କ ବିବାହ ସମ୍ପନ୍ନ କରିବାକୁ ଚାହିଁଲେ । ଆତ୍ମାଭିମାନ ହେତୁ ପ୍ରଦ୍ୟୋତ ସରଳଭାବରେ ଏକଥା ନକହି ଭଙ୍ଗ୍ୟନ୍ତରରେ ଦୂତଦ୍ୱାରା ଉଦୟନଙ୍କ ନିକଟକୁ ଖବର ପଠାଇଲେ - ଯଦି ଆପଣ ଉଜ୍ଜୟିନୀ ଆସି ମୋର ପୁତ୍ରୀକୁ ବୀଣାବାଦନ ଶିକ୍ଷା ଦେବେ, ତେବେ ଉପକୃତ ହେବି ଉଦୟନ ଏ ପ୍ରସ୍ତାବକୁ ଅପମାନଜନକ ମନେକରି ନାସ୍ତିବାଣୀ ଶୁଣାଇଲେ । ପ୍ରଦ୍ୟୋତ ଛଳେ ବଳେ ହସ୍ତୀ ଶିକାର ପ୍ରିୟ ଉଦୟନଙ୍କୁ ଉଜ୍ଜୟିନୀ ଆଣିବା ଚିନ୍ତାକଲେ । ସେ ବିଶାଳ ଯନ୍ତ୍ରମୟ ହସ୍ତୀ ନିର୍ମାଣ କଲେ । ସେ ମଧ୍ୟରେ ଅସଂଖ୍ୟ ଯୋଦ୍ଧା ଲୁଚି ରହିଲେ । ତାହାକୁ କୌଶାମ୍ବୀ ନିକଟସ୍ଥ ବିନ୍ଧ୍ୟବନରେ ରଖାଇଲେ । ଉଦୟନ ଅଦ୍‌ଭୁତ ହସ୍ତିର ସୂଚନା ପାଇ ଅସ୍ତ୍ରଶସ୍ତ୍ର ବୀଣାଧରି ଏକାକୀ ବୀଣାବାଦନ କରି ହାତୀ ନିକଟରେ ପହଞ୍ଚିଲେ । ସେ ସମୟରେ ଅନ୍ଧାର ହୋଇଥିବାରୁ ଉଦୟନ ଠିକରୂପେ ହାତୀକୁ ଦେଖି ପାରିଲେ ନାହିଁ ହଠାତ୍ ହାତୀ ଭିତରୁ ପ୍ରଦ୍ୟୋତଙ୍କ ସୈନ୍ୟ ଗଣ ବାହାରି ଉଦୟନଙ୍କୁ ଘେରିଗଲେ । ଉଦୟନ ପ୍ରାଣପଣେ ଯୁଦ୍ଧ କରି ପୁଣି ଶେଷରେ ବନ୍ଦୀହେଲେ । ଉଜ୍ଜୟିନୀରେ ପହଞ୍ଚି ବାଧ୍ୟହୋଇ ବାସବଦତ୍ତାକୁ ବୀଣାବାଦନ ଶିଖାଇଲେ । ଶିକ୍ଷା ସମୟରେ ଉଭୟେ ପ୍ରେମରେ ପଡି ଶେଷରେ ବିବାହ କଲେ । ପ୍ରଦ୍ୟୋତଙ୍କ ଇଚ୍ଛା ପୂର୍ଣ୍ଣ ହେଲ ଏହି ଲୋକପ୍ରିୟ କଥା ବର୍ଣ୍ଣନାରେ ଥିବା ଅସଙ୍ଗତିକୁ ଭାମହ ୪୧ କାରିକା ଠାରୁ ୪୭ କାରିକା ମଧ୍ୟରେ ପ୍ରଦର୍ଶନ କରି ନ୍ୟାୟ ବିରୋଧୀ ଦୋଷ ଉଦ୍‌ଘାଟନ କରିଛନ୍ତି ।

୪୮) **ଆଗମ ବିରୋଧୀ**—ଧର୍ମଶାସ୍ତ୍ର ଦ୍ୱାରା ପ୍ରତିପାଦିତ ଲୋକ-ମର୍ଯ୍ୟାଦାର ନାମ ଆଗମ ସେହି ପ୍ରତିଷ୍ଠିତ ଶାସ୍ତ୍ର ଓ ଆସ୍ଥାର ବିରୋଧୀ ଆଗମ ବିରୋଧୀ ଦୋଷ ଅଟେ ।

ଧର୍ମ ନିରୂପଣ ଶ୍ରୁତି ଓ ସ୍ମୃତି ସମୂହରେ କରାଯାଇଛି । ତେଣୁ ଧର୍ମଶାସ୍ତ୍ର କହିଲେ ଉଭୟ ପ୍ରକାର ଗ୍ରନ୍ଥରାଜିକୁ ବୁଝାଏ । ଧର୍ମଶାସ୍ତ୍ର ଦ୍ୱାରା ନିର୍ଦ୍ଦିଷ୍ଟ ନିୟମର ଭଙ୍ଗ ଆଗମ ବିରୋଧୀ ଦୋଷ ଅଟେ । ଯଥା -

ନ ଦୂଷଣାୟାଲମୁଦାହୃତୋ ବିଧି—
ର୍ନ ସ୍ୱାଭିମାନେନ କମୂ ପ୍ରଣୀୟତେ ।
କୃତାତ୍ମନାଂ ତତ୍ତ୍ୱଦୃଶାଂ ଚ ମାଦୃଶୋ
ଜନୋଽଭିସନ୍ଧିଂ କ ଇବା ବଗୋହ୍ୟତେ ॥ ୫୧ ॥
ଇତି ଶ୍ରୀମହାଲଂକାରେ ଚତୁର୍ଥଃ ପରିଚ୍ଛେଦଃ ।

---

୪୯-୫୦) **ଉଦାହରଣ**— ନ୍ୟାୟମାର୍ଗରେ ପରିବ୍ୱଳିତ, ସୋମପାୟୀ ରାଜବଂଶର ଅଳଙ୍କାର ସ୍ୱରୂପ, ପିତାଙ୍କ ଜୀବଦ୍ଦଶାରେ ବିଜୟ କରିବା ଇଚ୍ଛାରେ ପ୍ରେରିତ, ଯଜ୍ଞାର ବିନା ଦ୍ୱିଜତ୍ୱ ଧାରଣ କରିଥିବା ଅବିବାହିତ ନରବାହନ ଦତ୍ତ ରାତ୍ରିରେ ବେଶ୍ୟା-ସକ୍ତକୁ ମାରିଦେଲେ ।

ପ୍ରସ୍ତୁତ ଉଦାହରଣରେ ଆଗମବିରୋଧୀ ଦୋଷ ଉପସ୍ଥାପିତ । ୧) ଧର୍ମଶାସ୍ତ୍ରରେ କ୍ଷତ୍ରିୟଙ୍କ ସୋମପାନ ନିଷିଦ୍ଧ । ୨) ପିତାଙ୍କ ଉପସ୍ଥିତିରେ ପୁତ୍ରର ବିଜିଗୀଷୁତା । ୩) ଯଜ୍ଞାର ବ୍ୟତୀତ ଦ୍ୱିଜତ୍ୱ ଧାରଣ । ୪) ଅବିବାହିତଙ୍କୁ ସ୍ତ୍ରୀ ପ୍ରସଙ୍ଗ ଗର୍ହିତ ଦୋଷ । ପୁଣି ବେଶ୍ୟାଳୟକୁ ଯିବା ଅନ୍ୟ ପୁରୁଷକୁ ମାରିବା ଆଦି ଧର୍ମଶାସ୍ତ୍ର ବିରୁଦ୍ଧ ଆଚରଣ ବର୍ଣ୍ଣିତ ହେଉ ଏହା ଆଗମ ବିରୋଧୀ ବିଷୟ ଦୋଷରେ ଦୂଷିତ । ଏଥିରେ କୁଳ ଶୀଳ ଧର୍ମ ସବୁକିଛୁର ଉଲ୍ଲଙ୍ଘନ କରାଯାଇଛି ।

୫୧) **ଉପସଂହାର**--ଏହି ରଚନା ଅନ୍ୟର ଦୋଷ ଦେଖାଇବା ପାଇ କରାଯାଇନାହିଁ ବା ସ୍ୱାଭିମାନ ପ୍ରଦର୍ଶନ ପାଇଁ ନୁହେ, ବରଂ ବ୍ୟୁତ୍ପତ୍ତି ପ୍ରଦର୍ଶନ ଏହାର ଲକ୍ଷ୍ୟ । ବିଦ୍ୱାନ ଓ ତତ୍ତ୍ୱଜ୍ଞଙ୍କ ଅଭିପ୍ରାୟ ମୋ ପରି କ୍ଷୁଦ୍ରବୁଦ୍ଧି କିଣ ବା ବୁଝିବ ।

ଭାମହ ବିନମ୍ର ପ୍ରଦର୍ଶନ କରି ଏହି ଦୋଷ ପ୍ରକରଣର ଉପସଂହାର କରିଛନ୍ତି । କାହାର ଦୋଷ ଦେଖାଇ ବା ପାଇଁ ବା ନିଜର ବିଦ୍ୱତ୍ତା ଅଭିମାନରେ ପ୍ରେରିତ ହୋଇ ଏହା ଲେଖାଯାଇ ନାହିଁ କେବଳ ଦୋଷ ପରିଜ୍ଞାନ ଏହାର ଲକ୍ଷ୍ୟ ।

ଭାମହାଲଙ୍କାରର ଚତୁର୍ଥ ପରିଚ୍ଛେଦ ସମାପ୍ତ ।

+
÷
×

## ପଞ୍ଚମ ପରିଚ୍ଛେଦ

ଅଥ ପ୍ରତିଜ୍ଞାହେତ୍ୱାଦ୍ୟାନଂ ଦୁଷ୍ଟଂତ ବର୍ଣ୍ଣ୍ୟତେ ।
ସମାସେନ ଯଥାନ୍ୟାୟଂ ତନ୍ମାତ୍ରାର୍ଥପ୍ରଶାନ୍ତୟେ ॥ ୧ ॥
ପ୍ରାୟେଣ ଦୁର୍ବୋଧତୟା ଶାସ୍ତ୍ରାଦ୍ ବିଭ୍ୟତ୍ୟମେଧସଃ
ତଦୁପଚ୍ଛନ୍ଦନାର୍ଥେୟଷ ହେତୁନ୍ୟାୟଲବୋଦ୍ଧୃତଃ ॥ ୨ ॥
ସ୍ୱାଦୁକାବ୍ୟରସୋନ୍ମିଶ୍ରଂ ଶାସ୍ତ୍ରମପ୍ୟୁପଯୁଂଜତେ ।
ପ୍ରଥମାଲୀଢମଧବଃ ପିବନ୍ତି କଟୁ ଭେଷଜମ୍ ॥ ୩ ॥

---

୧) ଏହି ପରେ ଅର୍ଥ ମାତ୍ରର ପ୍ରଶାନ୍ତି ପାଇଁ ନ୍ୟାୟ (ତର୍କଶାସ୍ତ୍ର) ଅନୁସାରେ ପ୍ରତିଜ୍ଞା, ହେତୁ ଆଦି ଦ୍ୱାରା ହାନ ଦୋଷ ଗୁଡ଼ିକୁ ସଂକ୍ଷେପରେ ନିରୂପଣ କରାଯାଉଛି ।

ଭାମହ ଚତୁର୍ଥ ପରିଚ୍ଛେଦର ଆରମ୍ଭରେ ଯେଉଁ ୧୮ଟି କାବ୍ୟ ଦୋଷର ସୂଚନା ଦେଇଛନ୍ତି ସେ ମଧ୍ୟରୁ ପ୍ରଥମ ୧୫ଟି ଦୋଷ ଚତୁର୍ଥ ପରିଚ୍ଛେଦରେ ସୋଦାହରଣ ନିରୂପଣ ପରେ ଶେଷ ତିନଗୋଟି ଦୋଷ ଯଥା- ପ୍ରତିଜ୍ଞାହାନ, ହେତୁ ହାନ ଓ ଦୃଷ୍ଟାନ୍ତ ହାନର ବିସ୍ତର ଏହି ପଞ୍ଚମ ପରିଚ୍ଛେଦରେ କରୁଛନ୍ତି ।

ଏହି ଦୋଷ ଗୁଡ଼ିକ ତର୍କ ଶାସ୍ତ୍ର ସମ୍ବନ୍ଧିତ ହେତୁ ତଦନୁସାରେ ବିସ୍ତର କରିବା ଯୁକ୍ତି ସଙ୍ଗତ ଅଟେ । କାବ୍ୟରେ ଏହାର ବ୍ୟାପକଜ୍ଞାନ ଅନାବଶ୍ୟକ ହେତୁ ସଂକ୍ଷେପରେ ପରିଚୟମାତ୍ର ଦିଆଯାଉଛି ।

୨) ତର୍କଶାସ୍ତ୍ରର ବିଷୟ ଦୁର୍ବୋଧ୍ୟ ହେତୁ ବୁଦ୍ଧିହୀନ ବ୍ୟକ୍ତି ଏହି ଶାସ୍ତ୍ରକୁ ଭୟ କରନ୍ତି । ସେମାନେ ସହଜରେ ବୁଝିବା ଭଳି ଅନୁମାନ ପଦ୍ଧତିର କିଛି ଅଂଶ ଏଠାରେ ସଙ୍ଗୃହୀତ ।

ଶାସ୍ତ୍ର ବିଷୟ କଠିନ ଅଟେ । ଅଳ୍ପଜ୍ଞ ବ୍ୟକ୍ତି ନବୁଝି ପାରିବା ହେତୁ ବିମୁଖ ହୋଇ ଥାନ୍ତି । କିନ୍ତୁ ଶାସ୍ତ୍ରଜ୍ଞାନ ଅଳ୍ପ ବହୁତେ ସମସ୍ତଙ୍କର ରହିବା ଉଚିତ । ଯଦି ସରଳ ଭାବରେ ସଂକ୍ଷେପରେ ପ୍ରସ୍ତୁତ କରାଯାଏ, ତେବେ କୋମଳମତି ବ୍ୟକ୍ତି ମଧ୍ୟ ସାଦରେ ଗ୍ରହଣ କରିବ

ହେତୁନ୍ୟାୟଲବୋଦ୍ଧୃତଃ = ଅନୁମାନ ପ୍ରଣାଳୀର ଅଂଶ ସଂଗ୍ରହ । ଉପଚ୍ଛନ୍ଦନ = ଅନୁରଞ୍ଜନ ।

୩) ମଧୁରକାବ୍ୟରସ ସହିତ ମିଶି ଶାସ୍ତ୍ର ମଧ୍ୟ ଉପଯୋଗୀ ହୋଇଥାଏ । ପ୍ରଥମେ ମହୁ ଚାଟିଥିବା ବ୍ୟକ୍ତି ତିକ୍ତ ଔଷଧ ମଧ୍ୟ ସେବନ କରିପାରେ ।

ନ ସ ଶବ୍ଦୋ ନତଦ୍‌ବାଚ୍ୟଂ ନ ସ ନ୍ୟାୟୋ ନ ସା କଳା ।
ଜାୟତେ ଯନ୍ନ କାବ୍ୟାଙ୍ଗମହୋ ଭାରୋ ମହାନ୍‌ କବେଃ ॥ ୪ ॥

ସତ୍ତ୍ୱାଦୟଃ ପ୍ରମାଣାଭ୍ୟାଂ ପ୍ରତ୍ୟକ୍ଷମନୁମା ଚ ତେ ।
ଅସାଧାରଣସାମନ୍ୟବିଷୟତ୍ୱଂ ତୟୋଃ କିଲ ॥ ୫ ॥

---

ପ୍ରଶ୍ନ ଉଠିପାରେ —କାବ୍ୟାଙ୍ଗ ନିରୂପଣ ବେଳେ ଅନୁମାନ ପ୍ରମାଣର ଆଲୋଚନା କରାଯାଉଛି କାହିଁକି ? ଉତ୍ତରରେ କୁହାଯାଇପାରେ । କାବ୍ୟ ରଚନା ବେଳେ ପ୍ରସଙ୍ଗ ଅନୁସାରେ ଅନୁମାନ ଆଦି ବିଷୟ ଆସିପାରେ । ସେ ବିଷୟରେ ସ୍ରଷ୍ଟାର ସାମାନ୍ୟତମ ଜ୍ଞାନ ନଥିଲେ, ନିର୍ଦ୍ଦୋଷ ବସ୍ତୁର ଉପସ୍ଥାପନ ସମ୍ଭବ କି ? କାବ୍ୟର ମଧୁର ଭାବରେ ମିଶି ଶାସ୍ତ୍ରୀୟ ବିଷୟ ମଧ ଉପ ଭୋଗ ହୋଇଯାଏ । ଯେପରି ମହୁ ଚଟେଇ ପିତା ଔଷଧ ଗୋଳ ଦିଆଯାଏ ।

୪) କାବ୍ୟବସ୍ତୁରବ୍ୟାପ୍ତି—ଏପରି କୌଣସି ଶବ୍ଦ, ଅର୍ଥ, କଳା ବା ନ୍ୟାୟ ନାହିଁ, ଯାହା କାବ୍ୟର ଅଙ୍ଗୀଭୂତ ନ ହୋଇପାରେ ଏଥିରୁ ସ୍ପଷ୍ଟ ହୁଏ କବିର ଦାୟିତ୍ୱ କେତେ ବିଶାଳ ଓ ବ୍ୟାପକ ।

୫) ପ୍ରମାଣର ଆବଶ୍ୟକତା ଭେଦ ଓ ବିଷୟ—ପ୍ରତ୍ୟକ୍ଷ ଓ ଅନୁମାନ ପ୍ରମାଣରେ ବସ୍ତୁର ସତ୍ତ୍ୱା ଆଦି ସିଦ୍ଧ ହୁଏ । ଏ ଦୁଇଟିର ବିଷୟ କ୍ରମଶଃ ବ୍ୟକ୍ତି ଓ ଜାତି ଅଟନ୍ତି ।

ଏହି କାରିକାରେ ପ୍ରମାଣର ଆବଶ୍ୟକତା, ପ୍ରମାଣର ଭେଦ ଓ ତାହାର ବିଷୟ ନିରୂପିତ । କୌଣସି ବସ୍ତୁର ଅସ୍ତିତ୍ୱ ସିଦ୍ଧି ପାଇଁ ପ୍ରମାଣ ନିତାନ୍ତ ଆବଶ୍ୟକ । ପ୍ରମାଣ ଅଭାବରେ ଯଥାର୍ଥ କଥା ଜାଣିବା କଠିନ । ଏଠାରେ ବୌଦ୍ଧ ଦର୍ଶନ ଅନୁସାରେ ପ୍ରମାଣ ସଂଖ୍ୟା ଦିଆଯାଇଛି ଦୁଇଟି-ପ୍ରତ୍ୟକ୍ଷ ଓ ଅନୁମାନ । ପ୍ରତ୍ୟକ୍ଷ ଦ୍ୱାରା ବ୍ୟକ୍ତିର ଜ୍ଞାନ ହୁଏ ଓ ଅନୁମାନ ଦ୍ୱାରା ଜାତିର ଜ୍ଞାନ ହୁଏ । ସମାନ୍ୟର ଅର୍ଥ ସାଧାରଣ ବା ଜାତି । ଜାତି, ଜାତ ଓ ସାମାନ୍ୟ । ପର୍ଯ୍ୟାୟବାଚୀ ଶବ୍ଦ-ଜାତିର୍ଜାତଞ୍ଚ ସାମାନ୍ୟମ୍‌ (ଅମରକୋଷ)

ଅସାଧାରଣ ଅର୍ଥ -- ବ୍ୟକ୍ତି । ବ୍ୟକ୍ତିକୁ ସ୍ୱ-ଲକ୍ଷଣ ମଧ କହନ୍ତି । ଲକ୍ଷଣ ବା ବୈଶିଷ୍ଟ୍ୟ ବ୍ୟକ୍ତିର ସ୍ୱାତନ୍ତ୍ର୍ୟ । ଫଳରେ ସେ ଅନ୍ୟ ବ୍ୟକ୍ତି ଠାରୁ ଭିନ୍ନ । ଜ୍ଞାନେନ୍ଦ୍ରିୟ ଏବଂ ବସ୍ତୁର ସନ୍ନିକର୍ଷ (ସାମୀପ୍ୟ) ରୁ ଯେଉଁ ଜ୍ଞାନ ହୁଏ, ତାହା ପ୍ରତ୍ୟକ୍ଷ ଅଟେ । ଲିଙ୍ଗ ପରାମର୍ଶ ବା କୌଣସି ଚିହ୍ନ ଦର୍ଶନରୁ ଯେଉଁ ଜ୍ଞାନ ହୁଏ, ତାହା ଅନୁମାନ । ପ୍ରକାରାନ୍ତରେ ଯେଉଁ ବସ୍ତୁ ସମ୍ମୁଖରେ ରହେ ତାହାର ଜ୍ଞାନ ପ୍ରତ୍ୟକ୍ଷ ପ୍ରମାଣରେ ହୁଏ ଯାହା ପରୋକ୍ଷ ତାହା ଅନୁମାନ ପ୍ରମାଣରେ ବୋଧ ହୁଏ ।

ପ୍ରତ୍ୟକ୍ଷଂ କଳ୍ପନାପୋଢଂ ସତୋଽର୍ଥାଦନ୍ତ କେଚନ ।
କଳ୍ପନାଂ ନାମଜାତ୍ୟାଦିଯୋଜନାଂ ପ୍ରତିଜାନତେ ॥ ୭ ॥
ସମାରୋପଃ କଲୈତାବାନ୍ ସଦର୍ଥାଲମ୍ବନଂଚ ତତ୍ ।
ଜାତ୍ୟାଦ୍ୟପୋଢ଼ ବୃତ୍ତିଃ କ୍ୱ କ୍ୱ ବିଶେଷଃ କୁତସ୍ତ ସଃ ॥ ୮ ॥

ଏହି ଆଧାରରେ ବୌଦ୍ଧମାନେ ବ୍ୟକ୍ତିକୁ ପ୍ରତ୍ୟକ୍ଷ ଓ ଜାତିକୁ ଅନୁମାନର ବିଷୟ ମନେ କରନ୍ତି । ମନୁଷ୍ୟ ବ୍ୟକ୍ତିକୁ ଦେଖିବା ସମ୍ଭବ । କିନ୍ତୁ ମନୁଷ୍ୟ ଜାତିକୁ ଦେଖିବା ଅସମ୍ଭବ ସମଗ୍ର ମନୁଷ୍ୟମାନଙ୍କୁ କେହି ଦେଖି ପାରେ ନାହିଁ । ତଥାପି ଅନ୍ୟ ଭୂଖଣ୍ଡରେ ମନୁଷ୍ୟ ଜାତିବାସକରେ । ଏହା ଅନୁମାନ ଉପରେ ଆଶ୍ରିତ । ଏଥିରୁ ସ୍ପଷ୍ଟ ହୁଏ, ଜାତି କେବଳ ଅନୁମାନ ବଳରେ ଜାଣିହୁଏ, ପ୍ରତ୍ୟକ୍ଷ ପ୍ରମାଣରେ ନୁହେଁ ।

୭) ପ୍ରତ୍ୟକ୍ଷ ଲକ୍ଷଣ—କେତେକ କହନ୍ତି—କୌଣସି ବସ୍ତୁର କଳ୍ପନା ରହିତ ଜ୍ଞାନ ହିଁ ପ୍ରତ୍ୟକ୍ଷ ହୁଏ । ଅନ୍ୟ ମତରେ ପ୍ରତ୍ୟକ୍ଷର ଆଲମ୍ବନ ସତ୍ ଅଟେ । କଳ୍ପନାର ଅର୍ଥ ବ୍ୟକ୍ତିଠାରେ ନାମ, ଜାତି, ଗୁଣ, କ୍ରିୟା ଓ ଦ୍ରବ୍ୟର ଆରୋପ ।

ଏ ସମସ୍ତର ଅନ୍ୟନାମ ଉପାଧି । ଅପୋଢ-ରହିତ, ଯୋଜନା-ଆରୋପ । ଅର୍ଥାତ୍ ବ୍ୟକ୍ତିକୁ ଉପାଧି ଶୂନ୍ୟ ଭାବେ ଗ୍ରହଣ କରିବା ହିଁ ପ୍ରତ୍ୟକ୍ଷ । କେତେକ ଆଲୋଚକ ନାମ ବ୍ୟତୀତ ଜାତି, ଗୁଣ, କ୍ରିୟା ଓ ଦ୍ରବ୍ୟକୁ ଉପାଧି ରୂପେ ସ୍ୱୀକାର କରନ୍ତି । ଧର୍ମକୀର୍ତ୍ତିଙ୍କ ଅନୁସାରେ ପ୍ରତ୍ୟକ୍ଷର ଲକ୍ଷଣ — କଳ୍ପନାପୋଢ଼ମଭ୍ରାନ୍ତଂ ପ୍ରତ୍ୟକ୍ଷଂ (ନ୍ୟାୟ ବିନ୍ଦୁ) ଅର୍ଥାତ୍ କଳ୍ପନାରହିତଭ୍ରାନ୍ତ ହୀନ ଜ୍ଞାନ ପ୍ରତ୍ୟକ୍ଷ ଅଟେ । ବୌଦ୍ଧଙ୍କ ଅନୁସାରେ ବ୍ୟକ୍ତି ବାସ୍ତବ ଓ ଜାତି କଳ୍ପିତ । ଅର୍ଥକ୍ରିୟାକାରିତା ଅର୍ଥାତ୍ କାର୍ଯ୍ୟ କରିବା ଯୋଗ୍ୟତା ବ୍ୟକ୍ତିରେ ଥାଏ ତେଣୁ ସେ ବାସ୍ତବ ।

ଆମେ ଗାଈଠାରୁ ଦୁଧ ଦୁହୁଁ ସେ ଗୋ ଜାତି ନୁହେଁ, ଗୋ ବ୍ୟକ୍ତି ମାତ୍ର । ଭାରବାହକ ଘୋଡ଼ା ବ୍ୟକ୍ତି ଅଟନ୍ତି ଜାତି ନୁହେ । ନାମ, ଜାତି ଆଦି ଆରୋପିତ ଧର୍ମ କଳ୍ପିତ ଅଟେ - ବାସ୍ତବ ନୁହେ । ଉଦାହରଣ ସ୍ୱରୂପ - ନାମ ସମ୍ବୋଧନ ପାଇଁ ଅଟେ । ଜଣେ ଚାହିଁଲେ ନାମ ବଦଳାଇ ପାରେ । କିନ୍ତୁ ବ୍ୟକ୍ତିତ୍ୱ ବଦଳେ ନାହିଁ । ନାମ ପରି ଜାତି ମଧ୍ୟ ଆରୋପିତ ଧର୍ମ । ମନୁଷ୍ୟତ୍ୱ ବା ପଶୁତ୍ୱ ଅପ୍ରତ୍ୟକ୍ଷ ହେତୁ ଅଗ୍ରାହ୍ୟ । ଗୁଣ ମଧ୍ୟ ବସ୍ତୁ ଆଶ୍ରିତ । ଗୁଣୀ ନଷ୍ଟ ହେଲେ ଗୁଣ ନଷ୍ଟ ହେବା ସ୍ୱତଃ ସିଦ୍ଧ । ପଠନାଦି କ୍ରିୟାର ସତ୍ତା ଅକଳ୍ପନୀୟ । ପଢ଼ିବା ବ୍ୟକ୍ତିକୁ ଦେଖି ଏହା ସମ୍ଭବ ବା ଅନୁଭବଗମ୍ୟ ହୁଏ । ଏ ସମସ୍ତ ଉପାଧି ବ୍ୟକ୍ତିରେ ଆରୋପିତ ହେତୁ ପରତନ୍ତ୍ର, ତେଣୁ ମିଥ୍ୟା । ସତ୍ୟର ପ୍ରତ୍ୟକ୍ଷ ହୁଏ, ମିଥ୍ୟାର ନୁହେ । ତେଣୁ ଯେ କୌଣସି ବସ୍ତୁର କଳ୍ପନା ରହିତ ଜ୍ଞାନ ହିଁ ହୁଏ ।

ତଦପୋହେଷ୍ଟ ନ ତଥା ସିଦ୍ଧା ସା ବୁଦ୍ଧିଗୋଚରା ।
ଅବସ୍ତୁଙ୍କ ତେଦ ବିତଥଂ ପ୍ରତ୍ୟକ୍ଷଂ ତନ୍ତ୍ରବୃତ୍ତି ହ୍ନି ॥ ୮ ॥

୭) **ପ୍ରତ୍ୟକ୍ଷ ଲକ୍ଷଣରେ ଅନୁପପତ୍ତି** – ଯଦି ଜାତି, ଗୁଣ ଆଦି ଆରୋପିତ ଅଟନ୍ତି ଏବଂ ପ୍ରତ୍ୟକ୍ଷର ଆଲମ୍ବନ ସତ୍ ବା ଯଥାର୍ଥ ଅଟେ, ତେବେ ଜାତି ଆଦିର ନିଷେଧ ହେଲେ ପ୍ରତ୍ୟକ୍ଷର ବିଷୟ କଣ ହେବ ! ଉଭୟ ମଧ୍ୟରେ ପାର୍ଥକ୍ୟର ଆଧାର କଣ ହେବ !

ବୌଦ୍ଧଙ୍କ ପ୍ରତ୍ୟକ୍ଷ ସମ୍ବନ୍ଧୀୟ ଉପର୍ଯ୍ୟୁକ୍ତ ମତରେ କୁମାରିଲ ଦୋଷ ପ୍ରଦର୍ଶନ କରିଛନ୍ତି । ବୌଦ୍ଧଙ୍କ ମତରେ ପ୍ରତ୍ୟକ୍ଷଜ୍ଞାନ ସେହି ବସ୍ତୁର, ଯାହା ସତ୍ ଅଟେ । ଜାତି, ଗୁଣ, କ୍ରିୟା ଆଦି ଉପାଧି ଅସତ୍ (କଳ୍ପନା) ଅଟେ । ଅତଏବ ସେମାନେ ପ୍ରତ୍ୟକ୍ଷ ହୁଅନ୍ତି ନାହିଁ । ବର୍ତ୍ତମାନ ପ୍ରଶ୍ନ ଉଠେ ଜାତି, ଦ୍ରବ୍ୟାଦି ଉପାଧିର ନିଷେଧରେ ବସ୍ତୁର ଜ୍ଞାନ ସମ୍ଭବ କି ? ଯଦି ଉପାଧି ଗୁଡ଼ିକୁ ଅବାସ୍ତବ ମନେ କରାଯାଏ ତେବେ ରାମ ଓ ଶ୍ୟାମ, ବଳଦ ଓ ଘୋଡ଼ା ମଧ୍ୟରେ ପାର୍ଥକ୍ୟ କଣ ରହିବ ?

ବାସ୍ତବରେ ପ୍ରତ୍ୟକ୍ଷ ଦ୍ୱିବିଧ ନିର୍ବିକଳ୍ପକ ଓ ସବିକଳ୍ପକ । ବିକଳ୍ପ ଭେଦ ବାଚକ । ଯେଉଁ ପ୍ରତ୍ୟକ୍ଷରେ ଭେଦ ନଥାଏ, ତାହା ନିର୍ବିକଳ୍ପକ । ଯେଉଁଥିରେ ଭେଦ ଥାଏ, ତାହା ସବିକଳ୍ପକ ଉଦାହରଣ ସ୍ୱରୂପ—ବହୁତ ଦୂର ପଡ଼ିଆରେ ଚରୁଥିବା ପଶୁକୁ ଦେଖି ଆମେ ପ୍ରଥମେ ଜାଣୁ ଏହା ଏକ ପଶୁ । କିନ୍ତୁ ଗାଈ, ବଳଦ ବା ଷଣ୍ଢ ନିର୍ଣ୍ଣୟ କରି ହୁଏ ନାହିଁ । ସମୀପକୁ ଯାଇ ରୂପ ରଙ୍ଗକୁ ଦେଖି ନିର୍ଣ୍ଣୟ କରୁ ତାହା କଣ ? ଯଥା—ଗାଈ । ପ୍ରଥମ ଜ୍ଞାନ ନିର୍ବିକଳ୍ପକ ସମୀପବର୍ତ୍ତୀ ହେବା ପରେ ଯେଉଁ ଜ୍ଞାନ ତାହା ସବିକଳ୍ପକ କୌଣସି ବସ୍ତୁ ଅଟେ ଏହି ଜ୍ଞାନ ନିର୍ବିକଳ୍ପକ—କି ପ୍ରକାର ବସ୍ତୁ ଅଟେ ଏହି ବୋଧ । ସବିକଳ୍ପକ । ଏହି ଉଭୟବିଧ ଜ୍ଞାନରେ ଭେଦକ ତତ୍ତ୍ୱ କଣ ? ଉତ୍ତର ହେବ - ଜାତି, ଗୁଣ, କ୍ରିୟାଦି ଉପାଧି ଚତୁଷ୍ଟୟ । ବାସ୍ତବ କଥା କୌଣସି ବସ୍ତୁର ପ୍ରତ୍ୟକ୍ଷ ଏହି ଉପାଧି ଦ୍ୱାରା ହୁଏ । ପୁଣି ଗୋଟିଏ ବସ୍ତୁ ଠାରୁ ଅନ୍ୟ ବସ୍ତୁର ପାର୍ଥକ୍ୟ ବୋଧ କରାନ୍ତି ଏହି ଉପାଧି ଚତୁଷ୍ଟୟ ।

ତେଣୁ କଳ୍ପନାରହିତ ଜ୍ଞାନ—ପ୍ରତ୍ୟକ୍ଷ ଏଯୁକ୍ତି ନିରାଧାର ।

୮) **ପ୍ରକାରାନ୍ତରେ ଖଣ୍ଡନ**—ଜାତ୍ୟାଦିର ନିରାକରଣ (ଅପୋହ) ହେଲେ ମଧ୍ୟ ସେହି ଜାତ୍ୟାଦି ବୁଦ୍ଧି ଗୋଚର ସିଦ୍ଧ ହୁଏ । ଯଦି ପ୍ରତ୍ୟକ୍ଷକୁ ଅବସ୍ତୁକ (ନିର୍ବିଷୟକ) ମନେକରି ଅଯଥାର୍ଥ କୁହାଯାଏ, ତେବେ ଠିକ ନୁହେ, କାରଣ ଏହା ଯଥାର୍ଥ ବୋଧକ ଅଟେ ।

କଳ୍ପନା ରହିତ ଜ୍ଞାନ ହିଁ ପ୍ରତ୍ୟକ୍ଷ । ବୌଦ୍ଧଙ୍କ ଏହି ମତ ଖଣ୍ଡନ ପାଇଁ କୁମାରିଳଙ୍କ ଦ୍ୱିତୀୟ ଯୁକ୍ତି ଏହି ଯୁକ୍ତି ବୁଝିବା ପୂର୍ବରୁ ବୌଦ୍ଧଙ୍କ ଅପୋହବାଦ ବିଷୟରେ ଧାରଣା ଆବଶ୍ୟକ ।

ଗ୍ରାହ୍ୟ ଗ୍ରାହକଭେଦେନ ବିଜ୍ଞାନାଂଶୋ ମତୋ ଯଦି ।
ବିଜ୍ଞାନମାତ୍ରସାଦୃଶ୍ୟାଦ୍ ବିଶେଷୋଽସ୍ୟ ବିକଳ୍ପନା ॥ ୯ ॥

ଅର୍ଥାଦେବେତି ରୂପାଦେସ୍ତତ ଏବେତି ନ୍ୟାଯୁତଃ ।
ଅନ୍ୟଥା ଘଟବିଜ୍ଞାନମନେ୍ୟନ ବ୍ୟପଦିଶ୍ୟତେ ॥ ୧୦ ॥

---

ଅପୋହବାଦ—ବୌଦ୍ଧମାନେ କହନ୍ତି - ଅପୋହର ଅର୍ଥ - ଅତଦ୍ ବ୍ୟାବୃତ୍ତି । ନତତ୍ ଅତତ୍ (ସେ ନୁହେ) ଅର୍ଥାତ୍ ତାଠାରୁ ଭିନ୍ନର ବ୍ୟାବୃତ୍ତି = ନିବୃତ୍ତି । ସାମଗ୍ରିକ ଭାବେ ଅର୍ଥ ହେଲା କୌଣସି ବସ୍ତୁର ବୋଧ ପାଇଁ ଯେଉଁ ଶବ୍ଦ ପ୍ରୟୋଗ କରାଯାଏ । ତା ଠାରୁ ଭିନ୍ନ ଯେତେ ସବୁ ବସ୍ତୁ ସେ ସମସ୍ତଙ୍କ ନିରାକରଣ କରିବା 'ଅପୋହ' ଅଟେ । ଉଦାହରଣ ସ୍ୱରୂପ —ଘୋଟକ ଶବ୍ଦ ଉଚ୍ଚାରଣ କରିବା ମାତ୍ରେ ବୁଦ୍ଧିରୁ ଅନ୍ୟାନ୍ୟ ସମସ୍ତ ବସ୍ତୁର ନିରାକରଣ ହୋଇଯାଏ । ପରିଶେଷରେ ଘୋଟକ ଶବ୍ଦର ଅର୍ଥ ଜଣାପଡେ । ଏହା ହିଁ ଅପୋହବାଦ । ସଂକ୍ଷେପରେ କହିଲେ ବ୍ୟାକରଣାଦି ଶାସ୍ତ୍ରରେ ଅର୍ଥବୋଧ ଭାବାତ୍ମକ କିନ୍ତୁ ବୌଦ୍ଧଙ୍କ ଅର୍ଥବୋଧ ଅଭାବାତ୍ମକ ।

ଭଟ୍ଟମତ କହନ୍ତି—ଜାତ୍ୟାଦିର ଅପୋହ ହେଲେ ମଧ୍ୟ ସେ ସମସ୍ତ ବୁଦ୍ଧି ଗୋଚର ହୋଇ ରହେ । ଅପୋହ ନିମନ୍ତେ ଗୋକୁ ବୁଝିବା ପାଇଁ ଗୋ ଭିନ୍ନର ବ୍ୟାବୃତ୍ତି ହେଲେ ମଧ୍ୟ ଗୋକୁ ବୁଝିବା ଆବଶ୍ୟକ । ଗୋକୁ ନଜାଣିଲେ ଗୋଭିନ୍ନ କିପରି ଜାଣିବ ? ଗୋକୁ ଜାଣିବା ପାଇଁ ଗୋତ୍ୱଜ୍ଞାନ ଅପରିହାର୍ଯ୍ୟ । ଅତଏବ ଜାତ୍ୟାଦି ପ୍ରତ୍ୟକ୍ଷ ଓ ତାର ସତ୍ତା ପ୍ରମାଣିତ । ପୁଣି ପ୍ରତ୍ୟକ୍ଷ ଅଯଥାର୍ଥ ନୁହେ । ପ୍ରତ୍ୟକ୍ଷ ଗୋତ୍ୱ (ଜାତି) ଜ୍ଞାନ କରାଇ ଗୋ (ବ୍ୟକ୍ତି)ର ଜ୍ଞାନ କରାଏ । ତେଣୁ ପ୍ରତ୍ୟକ୍ଷ ଜ୍ଞାନ ଅଯଥାର୍ଥ ନୁହେ ।

୯) ତୃତୀୟ ଯୁକ୍ତି— ଯଦି ଗ୍ରାହ୍ୟ-ଗ୍ରାହକ ଭେଦରେ ଜ୍ଞାନ ହିଁ ଅଭିମତ ତେବେ ଜ୍ଞାନ ମାତ୍ରର ସାଦୃଶ୍ୟ ହେତୁ ତଦ୍ୱାରା ବୈଶିଷ୍ଟ୍ୟ (ଭେଦ) ଅବାସ୍ତବିକ ହୋଇ ଯିବ ।

ଭଟ୍ଟମତ ଅନ୍ୟ ଏକ (ତୃତୀୟ) ଯୁକ୍ତିରେ ବୌଦ୍ଧଙ୍କ ପ୍ରତ୍ୟକ୍ଷ ଲକ୍ଷଣକୁ ଖଣ୍ଡନ କରୁଛନ୍ତି । ଗ୍ରାହ୍ୟ-ଜ୍ଞାନ, ଗ୍ରାହକ = ଯେ ଜ୍ଞାନକରାଏ । ଧରି ନିଆଯାଉ - ଯଦି ଗୋକୁ ଜାଣିବାକୁ ହେବ, ତେବେ ଗୋ ବ୍ୟକ୍ତି ହେବ ଜ୍ଞାନ । ବୌଦ୍ଧଂକ ଅନୁସାରେ ଏହି ଜ୍ଞାନ ଅପୋହ ରୀତିରେ ହେବ । ଅତଏବ ଅଗୋବ୍ୟାବୃତ୍ତି ଜ୍ଞାନ ହେବ ଗ୍ରାହକ । ଯଦି ଜ୍ଞାନ ହିଁ ଗ୍ରାହ୍ୟ ଏବଂ ଜ୍ଞାନ ହିଁ ଗ୍ରାହକ ହେବ, ତେବେ ଦୁଇଟି ମଧ୍ୟରେ ଅନ୍ତର କଣ ରହିଲା ? କିନ୍ତୁ ଗ୍ରାହ୍ୟ - ଗ୍ରାହକ ଏକ ନୁହେ । ଅତଏବ ଏ ଯୁକ୍ତି ଅଭିନନ୍ଦନୀୟ ନୁହେ ।

---

ପାଠାନ୍ତର—ନାନ୍ୟତଃ

ନିରୂପାଖ୍ୟିଙ୍ଗତୋ ଜ୍ଞାନମନୁମାନଂ ଚ କେଚନ ।
ତଦ୍‌ବଦୋ ନାନ୍ତ୍ୱାସ୍ୟାର୍ଥ ଦର୍ଶନଂ ଗୃପରଂ ବଦୁଃ ॥ ୧୧ ॥

---

୧୦)ଚତୁର୍ଥ ଯୁକ୍ତି ଏହା ସ୍ୱୀକୃତ ସିଦ୍ଧାନ୍ତ ଯେ, ଯେ କୌଣସି ବସ୍ତୁର ଜ୍ଞାନ ସେହି ଦ୍ୱାରା ପ୍ରାପ୍ତ ହୁଏ ଅତଃ ରୂପ-ଗୁଣାଦି ଉପାଧି ସେହି ବସ୍ତୁ ସହିତ ରହିଥାଏ । ଅନ୍ୟଥା ଘଟ୍‌ଜ୍ଞାନ ମଧ୍ୟ ଅନ୍ୟ ବସ୍ତୁ ଦ୍ୱାରା ସମ୍ଭବ ହେବ ।

ବୌଦ୍ଧଙ୍କ ଉପାଧି ଶୂନ୍ୟ ବ୍ୟକ୍ତି ହିଁ ପ୍ରତ୍ୟକ୍ଷ ହୁଏ । ଏହାକୁ ଚତୁର୍ଥ ଯୁକ୍ତିରେ ଖାମହି ଖଣ୍ଡନ କରୁଛନ୍ତି । ଏହା ସିଦ୍ଧାନ୍ତ ଅଟେ, ଯେ କୌଣସିବସ୍ତୁର ଜ୍ଞାନ ସେହି ବସ୍ତୁରୁ ହିଁ ପ୍ରାପ୍ତ ହୁଏ । ଫୁଲର ଜ୍ଞାନ ଫୁଲରୁ ହେବ, ଫଳରୁ ନୁହେ । ପ୍ରତ୍ୟେକ ବସ୍ତୁ ସହିତ ହିଁ ତାହାର ରୂପ, ଗୁଣ, ଜାତି, କ୍ରିୟା ଉପାଧି ପ୍ରତ୍ୟକ୍ଷ ହେବା ସ୍ୱାଭାବିକ । ଯଦି ଏହାକୁ ଆମେ ଅସ୍ୱୀକାର କରିବା ତେବେ ବଳଦ ମଧ୍ୟ ଘୋଡ଼ା ପରି ଦିଶିବ । ଏପରି ପରିସ୍ଥିତିରେ ଜ୍ଞାନର ନିୟମ ହିଁ ରହିବ ନାହିଁ । ଏ ସମସ୍ତ ଯୁକ୍ତିରୁ ସିଦ୍ଧ ହୁଏ ଯେ, ଉପାଧି ବିଶିଷ୍ଟ ବ୍ୟକ୍ତି ହିଁ ପ୍ରତ୍ୟକ୍ଷ ହୁଏ । ବୌଦ୍ଧମାନେ ଯାହା କହନ୍ତି - ଉପାଧି ରହିତ ବ୍ୟକ୍ତି ପ୍ରତ୍ୟକ୍ଷ ହୁଏ । ତାହା ନିରାଧାର ।

୧୧) ଅନୁମାନ—କେତେକ ବିଦ୍ୱାନଙ୍କ ମତରେ ନିବଧ ଲିଙ୍ଗ [ହେତୁ] ଦ୍ୱାରା ଲିଙ୍ଗୀ [ସାଧ୍ୟ]ର ଜ୍ଞାନ ଅନୁମାନ ଅଟେ । ଅନ୍ୟ କେତେକ ତଦ୍‌ବିଦ ଅନୁମାନକୁ ବସ୍ତୁର ନିତ୍ୟ ସମ୍ବନ୍ଧର ଅନୁଭବ ବୋଲି କହନ୍ତି ।

ଏହି କାରିକାରେ ଅନୁମାନର ଦୁଇଟି ଲକ୍ଷଣ ପ୍ରଦତ୍ତ । ପ୍ରଥମ ଲକ୍ଷଣ-ଲିଙ୍ଗ ଦ୍ୱାରା ଲିଙ୍ଗୀର ଜ୍ଞାନ ଅନୁମାନ ଅଟେ । ଏହାକୁ ବୁଝିବା ପାଇଁ କେତେ ପାରିଭାଷିକ ଶବ୍ଦଜ୍ଞାନ ଆବଶ୍ୟକ । ପ୍ରସିଦ୍ଧ ଉଦାହରଣ ନିଆଯାଉ —ପର୍ବତଃ ବହ୍ନିମାନ୍ ଧୂମାତ୍ । ( ଧୂଆଁରୁ ଅନୁମିତ ହୁଏ ପର୍ବତରେ ନିଆଁ ଅଛି ) ଏଥିରେ ଲିଙ୍ଗ = ସାଧନ = ହେତୁ ଅଟେ ଧୂଆଁ । ଲିଙ୍ଗୀ = ସାଧ୍ୟ ଅଟେ ନିଆଁ । ଏହି ସାଧନ (ଧୂଆଁ) ଦ୍ୱାରା ସାଧ୍ୟ (ନିଆଁ)ର ଜ୍ଞାନ ଅନୁମାନ ଅଟେ । ଏହି ଅନୁମାନର ମୂଳ ଅଟେ ବ୍ୟାପ୍ତି ଅର୍ଥାତ୍ ସାଧ୍ୟ ଓ ସାଧନର ନିତ୍ୟସମ୍ବନ୍ଧ । ପୁଣି ଅନୁମାନର ପାଞ୍ଚଗୋଟି ଅବୟବ ରହିଛି ।

୧) ପ୍ରତିଜ୍ଞା —ପର୍ବତରେ ନିଆଁ ଅଛି ।

୨) ହେତୁ—କାରଣ ସେଠାରେ ଧୂଆଁ ଅଛି । ହେତୁର ତିନିଗୋଟି ରୂପ ପକ୍ଷସତ୍ତ୍ୱ [ପକ୍ଷରେ ରହିବା, ସପକ୍ଷସତ୍ତ୍ୱ (ସପକ୍ଷରେ ରହିବା) ବିପକ୍ଷବ୍ୟାବୃତ୍ତ (ବିପକ୍ଷରେ ନରହିବା) ପକ୍ଷ ତାହାକୁ କହନ୍ତି । ଯେଉଁଠି ସାଧ୍ୟର ସନ୍ଦେହ ହୁଏ । ଏଠାରେ ପର୍ବତ ପକ୍ଷ ଅଗ୍ନି ସାଧ୍ୟ । ସପକ୍ଷ (ପକ୍ଷସମାନ) ତାହାକୁ କହନ୍ତି ଯେଉଁଠି ସାଧ୍ୟ ନିଶ୍ଚିତ ରହେ । ଏଠାରେ

ବିବଧାପ୍ରିଦଧର୍ମେଣ ଧର୍ମୀ କୃତବିଶେଷଣଃ ।
ପକ୍ଷସ୍ତସ୍ୟ ଚ ନିର୍ଦ୍ଦେଶଃ ପ୍ରତିଜ୍ଞେତ୍ୟଭିଧୀୟତେ ॥ ୧୨ ॥

ତଦର୍ଥହେତ୍ୱ ସିଦ୍ଧାନ୍ତସର୍ବାଗମବିରୋଧିନୀ ।
ପ୍ରସିଦ୍ଧଧର୍ମା ପ୍ରତ୍ୟକ୍ଷବାଧନୀ ଚେତି ଦୁଷ୍ୟତି ॥ ୧୩ ॥

---

ରୋଷେଇ ଘର । ପକ୍ଷ ଓ ସପକ୍ଷ ମଧ୍ୟରେ ପ୍ରଭେଦ ଏତିକି ଯେ ପକ୍ଷରେ ସାଧ୍ୟର ସ୍ଥିତି ନିଶ୍ଚିତ । ବିପକ୍ଷ କହିଲେ ବୁଝାଯାଏ, ସପକ୍ଷର ବିପରୀତ । ଅର୍ଥାତ୍ ଯେଉଁଠି ସାଧ୍ୟର ଅଭାବ ନିଶ୍ଚିତ, ଯଥା—ଜଳାଶୟ ।

୩) ଦୃଷ୍ଟାନ୍ତ—ଯେଉଁଠି ଧୂଆଁ ଥାଏ, ସେଇଠି ନିଆଁ ଥାଏ । ଯଥା-ରୋଷେଇଘର, ଯେଉଁଠି ନିଆଁ ନାହିଁ, ସେଇଠି ଧୂଆଁ ନାହିଁ । ଯଥା-ଜଳାଶୟ, ଏହା ଦୁଇ ପ୍ରକାର ଦୃଷ୍ଟାନ୍ତ । ପ୍ରଥମଟି ଅନ୍ୱୟ ବା ବିଧିବାକ୍ୟ । ଦ୍ୱିତୀୟଟି ବ୍ୟତିରେକ ବା ନିଷେଧ ବାକ୍ୟ । ଗୋଟିଏ କଥାକୁ ସିଦ୍ଧ କରିବା ପାଇଁ ଦୁଇ ପ୍ରକାର ଦୃଷ୍ଟାନ୍ତ ପ୍ରୟୋଗ କରାଯାଏ ।

୪) ଉପନୟ—ଏହି ପର୍ବତରେ ଧୂଆଁ ଅଛି ।

୫) ନିଗମନ—ଅତଏବ ଏଠାରେ ନିଆଁ ଅଛି । ଯେଉଁ ସାଧନ ବା ହେତୁ ପକ୍ଷସତ୍ତ୍ୱ ସପକ୍ଷସତ୍ତ୍ୱ ଓ ବିପକ୍ଷବ୍ୟାବୃତ୍ତି ଏହି ତିନି ଗୁଣ ବିଶିଷ୍ଟ ହୁଏ ସେଇଠି ସାଧ୍ୟର ସିଦ୍ଧି ହୁଏ । ତାହାକୁ ହେତ୍ୱାଭାସ କହନ୍ତି ।

୧୨) ପ୍ରତିଜ୍ଞା—ବିବାଦର ବିଷୟ ଯେଉଁ ଧର୍ମ ଅଛି, ତାହାଦ୍ୱାରା ବିଶେଷିତ ଧର୍ମୀକୁ ପକ୍ଷ କହନ୍ତି । ସେହି ପକ୍ଷର ନିର୍ଦ୍ଦେଶକୁ ପ୍ରତିଜ୍ଞା କହନ୍ତି ।

ଯେଉଁଠି ସାଧ୍ୟର ସନ୍ଦେହ ହୁଏ, ତାହାକୁ ପକ୍ଷ କହନ୍ତି । ସନ୍ଦେହ ହିଁ ବିବାଦର ବିଷୟ । ଉପର୍ଯ୍ୟୁକ୍ତ ଉଦାହରଣରେ ଅଗ୍ନିର ସ୍ଥିତି ନେଇ ସନ୍ଦେହ ଉଠେ । ସେହି ଅଗ୍ନି (ଧର୍ମ)ରେ ଯୁକ୍ତ ପର୍ବତ ଧର୍ମୀ ଅଟେ ଧର୍ମୀକୁ ପକ୍ଷ କହନ୍ତି । ପକ୍ଷ ନିର୍ଦ୍ଦେଶ ବାକ୍ୟକୁ ପ୍ରତିଜ୍ଞା କହନ୍ତି । ଏହି ପ୍ରତିଜ୍ଞା କଥନକୁ ପ୍ରମାଣସିଦ୍ଧ କରିବା ପାଇଁ ହେତୁ (ଧୂମାତ୍) ଉପସ୍ଥାପନ କରାଯାଏ । ଯଥା-ପର୍ବତଃ ବହ୍ନିମାନ ଧୂମାତ୍ ବା ପର୍ବତଃ ବହ୍ନିମାନ ଧୂମବତ୍ତ୍ୱାତ୍ ।

୧୩] ପ୍ରତିଜ୍ଞାଦୋଷ—ତଦର୍ଥବିରୋଧିନୀ, ହେତୁବିରୋଧିନୀ, ସିଦ୍ଧାନ୍ତ ବିରୋଧିନୀ, ସର୍ବାଗମ ବିରୋଧିନୀ, ପ୍ରସିଦ୍ଧଧର୍ମା ଓ ପ୍ରତ୍ୟକ୍ଷବାଧିନୀ ଏହି ଛଅ ପ୍ରକାର ଦୋଷରେ ପ୍ରତିଜ୍ଞା ଦୂଷିତ ହୁଏ ।

ଅର୍ଥାତ୍ ପ୍ରତିଜ୍ଞାର ଏସବୁ ଦୋଷ ଅଟେ । ଉପର୍ଯ୍ୟୁକ୍ତ ଷଡ଼୍‌ବିଧ ଦୋଷର ଲକ୍ଷଣ ଓ ଉଦାହରଣ ପରବର୍ତ୍ତୀ କାରିକାରେ ପ୍ରଦତ୍ତ ।

ତଥୈବ ହି ତଦର୍ଥସ୍ୟ ବିରୋଧକରଣଂ ଯଥା ।
ଯତିର୍ମମ ପିତା ବାଲ୍ୟାତ୍ସନ୍ନ୍ୟସ୍ୟାହମୌରସଃ ॥ ୧୪ ॥

ଅସ୍ତ୍ୟାତ୍ମା ପ୍ରକୃତିର୍ବେତି ଜ୍ଞେୟା ହେତ୍ୱପବାଦନା ।
ଧର୍ମିଣୋଽସ୍ୟାପ୍ରସିଦ୍ଧତ୍ୱାତ୍ତଦ୍ଧର୍ମୋଽପି ନ ସେତ୍ସ୍ୟତି ॥ ୧୫ ॥

ଶାଶ୍ୱତୋଽଶାଶ୍ୱତୋ ବେତି ପ୍ରସିଦ୍ଧେ ଧର୍ମିଣି ଧ୍ୱନୌ ।
ଜାୟତେ ଭେଦ ବିଷୟୋ ବିବାଦୋ ବାଦିନୋର୍ମିଥଃ ॥ ୧୬ ॥

---

୧୪) ତଦର୍ଥ ବିରୋଧିନୀ ପ୍ରତିଜ୍ଞା —ନିଜ କଥାର ନିଜେ ବିରୋଧ କଲେ, ତାହା ଅଗ୍ରାହ୍ୟ ହୁଏ । ତାହାକୁ ତଦର୍ଥବିରୋଧିନୀ ପ୍ରତିଜ୍ଞା କୁହାଯାଏ ।

ଯଥା—ମୋର ପିତା ବାଲ୍ୟକାଳରୁ ସନ୍ନ୍ୟାସୀ ଅଟନ୍ତି । ମୁଁ ତାଙ୍କର ଔରସ ଜାତ ପୁତ୍ର ଅଟେ । ଏହି କଥନ ଆତ୍ମବିରୋଧୀ ଅଟେ । କାରଣ ବାଲସନ୍ନ୍ୟାସୀର ପୁତ୍ର ସମ୍ଭବ କି ?

୧୫) ହେତୁ ବିରୋଧିନୀ-ସାଂଖ୍ୟ ଦର୍ଶନର ଗୋଟିଏ ଉଦାହରଣ ଦେଇ ଭାମହ ହେତୁ ବିରୋଧିନୀ ପ୍ରତିଜ୍ଞା ଦୋଷ ଦେଖା ଇଛନ୍ତି । ଅସ୍ତି ଆତ୍ମା ପ୍ରକୃତିର୍ବା - ନିତ୍ୟତ୍ୱାତ୍ (ଆତ୍ମା ଓ ପ୍ରକୃତିର ସତ୍ତା ରହିଛି—କାରଣ ତାହା ନିତ୍ୟ) ଏହା ହେତୁ ବିରୋଧିନୀ ପ୍ରତିଜ୍ଞା ଅଟେ । କାରଣ ଧର୍ମୀ [ଆତ୍ମା ବା ପ୍ରକୃତି] ଅସିଦ୍ଧ ହେତୁ ତାର ଧର୍ମ [ନିତ୍ୟତ୍ୱ] ମଧ୍ୟ ସିଦ୍ଧ ହୁଏ ନାହିଁ ।

ଧୂଆଁ (ଧର୍ମ) ଦେଖି ନିଆଁ (ଧର୍ମୀ)ର ଜ୍ଞାନ ହୁଏ । କାରଣ ଉଭୟେ,ପୂର୍ବରୁ ଦୃଷ୍ଟ ଓ ସିଦ୍ଧ । ଏ ଦୁଇଟିର ନିତ୍ୟ ସମ୍ବନ୍ଧ ଜ୍ଞାତ ଅଟେ । ଏ ଦୁଇଟି ମଧ୍ୟରୁ ଯେ କୌଣସି ଗୋଟିଏ ଅସିଦ୍ଧ (ଅପ୍ରମାଣିତ) ହେଲେ ଅନୁମାନର ପଥ ଅବରୁଦ୍ଧ ହୁଏ । ବାସ୍ତବରେ ଆତ୍ମା ଓ ପ୍ରକୃତିର ସତ୍ତା ପ୍ରମାଣିତ କି ? ତାହାକୁ କେହିଦେଖିଛି କି ? ତେଣୁ ଧର୍ମି ଆତ୍ମା ଓ ପ୍ରକୃତି ଅସିଦ୍ଧ ହେତୁ ତାହାର ଧର୍ମ ନିତାତ୍ୱ କିପରି ସିଦ୍ଧ ହେବ ? ଅତଏବ ଏପରି ପ୍ରତିଜ୍ଞା ହେତୁ ବିରୋଧିନୀ ଅଟେ ।

୧୬) ଅନ୍ୟ ଉଦାହରଣ—ଭାମହ ଅନ୍ୟ ଏକ ଉଦାହରଣ ମାଧ୍ୟମରେ ପୂର୍ବ କାରିକାର ଅର୍ଥକୁ ସ୍ପଷ୍ଟ କରୁଛନ୍ତି । ଧ୍ୱନି ପ୍ରସିଦ୍ଧ [ପୁର୍ବସିଦ୍ଧ) ଧର୍ମୀ ଅଟେ । ଅତଃ ଏହା ନିତ୍ୟ ଅଟେ ବା ଅନିତ୍ୟ ଅଟେ, ଏହି ଧର୍ମ ବିଷୟରେ ପ୍ରତିପକ୍ଷଙ୍କ ମଧ୍ୟରେ ବିବାଦ ହୋଇପାରେ ।

ଯଥା - ଯଦି ରାମ ନାମକ ବ୍ୟକ୍ତି ଅଛି । ତେବେ ତାର ସମ୍ବନ୍ଧରେ ବିବାଦ ହୋଇ ପାରେ । ସେ କଳା କି ଗୋରା, ଧନୀ ନା ନିର୍ଧନ । ଯଦି ସେପରି କେହି ବ୍ୟକ୍ତି ନାହିଁ,

ସ୍ୱସିଦ୍ଧାନ୍ତବିରୋଧିତ୍ୱାଦବିଜ୍ଞେୟା ତଦ୍‌ବିରୋଧିନୀ ।
କଣଭକ୍ଷୋ ଯଥା ଶବ୍ଦମାଚଷ୍ଟୀତାଽବିନଶ୍ୱରମ୍ ॥ ୧୭ ॥

ସର୍ବଶାସ୍ତ୍ର ବିରୁଦ୍ଧତ୍ୱାତ୍ସର୍ବାଗମବିରୋଧିନୀ ।
ଯଥା ଶୁଚିସ୍ତନୂର୍ନୀତି ପ୍ରମାଣାନି ନ ସନ୍ତିବା ॥ ୧୮ ॥

---

ତେବେ ତାହାର ଧର୍ମକୁ ନେଇ ବିବାଦ କରାଯାଇପାରେ କି ? ପୂର୍ବୋକ୍ତ ବାକ୍ୟରେ ଉକ୍ତ ଆତ୍ମା ଅଥବା ପ୍ରକୃତିର ଅସ୍ତିତ୍ୱ କଳ୍ପିତ । ବାସ୍ତବ ନୁହେ । କାରଣ କେହି ସେ ସବୁ ଦେଖିନାହିଁ । ତେଣୁ ତାହାର ନିତ୍ୟତ୍ୱ ଅନିତ୍ୟତ୍ୱକୁ ନେଇ ବିବାଦ ନିଷ୍ପ୍ରୟୋଜନ । ତାହାର ବିପରୀତରେ ଅନ୍ୟ ଏକ ଉଦାହରଣ ନିଆଯାଉ ଯଥା-ଧ୍ୱନି । ଧ୍ୱନି (ଶବ୍ଦ) ଧର୍ମୀର ଅସ୍ତିତ୍ୱ ପ୍ରମାଣିତ । ଭାଷା ରୂପରେ ମାନବ ଜାତିର କ୍ରିୟାକଳାପ ସମ୍ପନ୍ନ କରେ । ସେହି ଧ୍ୱନି ନିତ୍ୟ କି ଅନିତ୍ୟ ଏ ବିଷୟରେ ବିବାଦ କରାଯାଇପାରେ । ଯେପରି ନୈୟାୟିକ ଧ୍ୱନିକୁ ଅନିତ୍ୟ, ମୀମାଂସକ ଓ ବୈୟାକରଣ କହନ୍ତି ନିତ୍ୟ । ଏଠାରେ ହେତୁ ବିରୋଧିନୀ ପ୍ରତିଜ୍ଞା ଦୋଷ ସମ୍ଭବ ନୁହେ । ଭେଦ, ଧର୍ମର ବାଚକ ଅଟେ ।

୧୭) **ସ୍ୱସିଦ୍ଧାନ୍ତ ବିରୋଧିନୀ**—ଯେଉଁଥିରେ ନିଜ ସିଦ୍ଧାନ୍ତର ବିରୋଧ କରାଯାଇଥାଏ, ତାହା ସ୍ୱ-ସିଦ୍ଧାନ୍ତରେ ବିରୋଧିନୀ ପ୍ରତିଜ୍ଞା ଅଟେ । ଯଥା—କଣାଦ କହନ୍ତି ଶବ୍ଦ ନିତ୍ୟ (ଅବିନଶ୍ୱର) ଅଟେ ।

କଣଭକ୍ଷ=କଣାଦ ଋଷି ସେ ବୈଶେଷିକ ଦର୍ଶନର ପ୍ରଣେତା । ବୈଶେଷିକ ଦର୍ଶନରେ ଶବ୍ଦକୁ ଅନିତ୍ୟ ମନେ କରାଯାଇଛି । ସେହି ବୈଶେଷିକ ମତର ପ୍ରତିଷ୍ଠାପକ ଯଦି ଶବ୍ଦକୁ ନିତ୍ୟ କହନ୍ତି, ତେବେ ତାହା ସ୍ୱ-ସିଦ୍ଧାନ୍ତ ବିରୋଧିନୀ ପ୍ରତିଜ୍ଞା ହେବ ।

୧୮) **ସର୍ବାଗମ ବିରୋଧିନୀ**—ଯେଉଁ ପ୍ରତିଜ୍ଞା ସମସ୍ତ ଶାସ୍ତ୍ରର ନିୟମକୁ ବିରୋଧ କରେ, ତାହା ସର୍ବାଗମ ବିରୋଧିନୀ ପ୍ରତିଜ୍ଞା ଅଟେ ।

ଯଥା—ଶରୀର ପବିତ୍ର ଅଟେ । ପ୍ରମାଣ ତିନିଗୋଟି ଅଟେ । ପ୍ରମାଣ ନାହିଁ । ଭାମହ ଶାସ୍ତ୍ରର ସମର୍ଥନ ନଥିବା ଦୋଷର ପ୍ରତିପାଦନ ପାଇଁ ତିନିଗୋଟି ଉଦାହରଣ ଦେଇଛନ୍ତି ।

୧) ଯଦି କେହି କହେ 'ଶରୀର ପବିତ୍ର ଅଟେ । ଏହା କୌଣସି ଶାସ୍ତ୍ର ଦ୍ୱାରା ସମର୍ଥିତ ନୁହେ । ଶରୀରକୁ ସମସ୍ତେ ଅପବିତ୍ର କହିଛନ୍ତି । କାରଣ ମନୋବାକ୍ୟରେ ଏହା ଅଶୁଚି । ଯଦି କେହି କହେ,ଯୋଗୀଙ୍କ ଶରୀରତ ତପୋବଳରେ ପବିତ୍ର ଅଟେ । ତେଣୁ ଭାମହ ଅନ୍ୟ ଉଦାହରଣ ଦେଇଛନ୍ତି ।

ଆକୁମାରମସନ୍ଦିଗ୍ଧ ଧର୍ମାହିତବିଶେଷଣା ।
ପ୍ରସିଦ୍ଧଧର୍ମେତି ମତା ଶ୍ରୋତ୍ରଗ୍ରାହ୍ୟୋଧ୍ୱନିର୍ୟଥା ॥ ୧୯ ॥
ପ୍ରତ୍ୟକ୍ଷବାଧିନୀ ଯେନ ପ୍ରମାଣେନୈବ ବାଧ୍ୟତେ ।
ଯଥା ଶୀତୋଽନଲୋ ନାସ୍ତି ରୂପମୁଷ୍ଣଃ କ୍ଷପାକରଃ ॥ ୨୦ ॥

୨) ଯଦି କେହି କହେ ପ୍ରମାଣ ତିନୋଟି ଅଟେ । ଏହାକୁ ସମସ୍ତ ଶାସ୍ତ୍ର ସ୍ୱୀକାର କରନ୍ତି ନାହିଁ । ଚାର୍ବାକ-ଏକମାତ୍ର ପ୍ରତ୍ୟକ୍ଷ ପ୍ରମାଣକୁ ମାନନ୍ତି । ବୌଦ୍ଧ ଓ ବୈଶେଷିକ ପ୍ରତ୍ୟକ୍ଷ ଓ ଅନୁମାନ ଦୁଇଟି ପ୍ରମାଣ ମାନନ୍ତି । ନୈୟାୟିକ ମାନନ୍ତି ୪ଟି ପ୍ରମାଣ— ପ୍ରତ୍ୟକ୍ଷ, ଅନୁମାନ, ଉପମାନ ଓ ଶାବ୍ଦ । ମୀମାଂସକ ପ୍ରଭାକରଙ୍କ ମତରେ ପ୍ରମାଣ ପଞ୍ଚବିଧ ଯଥା - ପ୍ରତ୍ୟକ୍ଷ, ଅନୁମାନ, ଉପମାନ, ଶାବ୍ଦ ଓ ଅର୍ଥାପତ୍ତି । ମୀମାଂସକ କୁମାରିଲ ଭଟ୍ଟ ଓ ବେଦାନ୍ତ ଦର୍ଶନ ଛଅଟି ପ୍ରମାଣ ମାନନ୍ତି । ଯଥା—ପ୍ରତ୍ୟକ୍ଷ, ଅନୁମାନ, ଉପମାନ, ଶାବ୍ଦ ଅର୍ଥାପତ୍ତି ଓ ଅନୁପଲବ୍ଧି । ଯଦି କେହି କହେ ଯୋଗ ସୂତ୍ରରେ ପତଞ୍ଜଳି ତିନିଗୋଟି ପ୍ରମାଣ ମାନିଛନ୍ତି । 'ପ୍ରତ୍ୟକ୍ଷାନୁମାନାଗମାଃ ପ୍ରମାଣାନି' ପ୍ରତ୍ୟକ୍ଷ, ଅନୁମାନ ଓ ଆଗମ (ଶବ୍ଦ) ଏପରି ପ୍ରମାଣ ତ୍ରିବିଧ ଅଟେ ।

୩) ଯଦି କେହି କହେ—ପ୍ରମାଣ ନାମକ କୌଣସି ବସ୍ତୁ ନାହିଁ । ତେବେ ତାହା ସର୍ବଶାସ୍ତ୍ର ବିରୋଧୀ ହେବାରୁ ଏହା ସର୍ବାଗମବିରୋଧିନୀ ପ୍ରତିଜ୍ଞା ହେବ । ପ୍ରମାଣର ସଂଖ୍ୟାରେ ବିରୋଧ ଆସିପାରେ । କିନ୍ତୁ ପ୍ରମାଣର ଅସ୍ତିତ୍ୱ ସମସ୍ତ ଶାସ୍ତ୍ର ସ୍ୱୀକାର କରନ୍ତି ।

୧୯) ପ୍ରସିଦ୍ଧଧର୍ମା—ପ୍ରସିଦ୍ଧ ଧର୍ମୀ ଦୋଷ ତାହାକୁ କହନ୍ତି -- ଯାହାର ଧର୍ମ ସନ୍ଦେହ ରହିତ ଅଟେ । ଶିଶୁଟିଏ ମଧ୍ୟ ଯାହାକୁ ଜାଣେ । ଯଥା-ଧ୍ୱନି କାନରେ ଶୁଣାଯାଏ ।

ଅନୁମାନର ପ୍ରୟୋଜନ ଅସିଦ୍ଧକୁ ସିଦ୍ଧ କରିବା । ଯାହା ସିଦ୍ଧ ତାହା ପାଇଁ ଅନୁମାନର ପ୍ରୟୋଗ ନିରର୍ଥକ । ଯଦି କେହି ପ୍ରମାଣିତ କରିବାକୁ ଚେଷ୍ଟାକରେ ଧ୍ୱନି କାନରେ ଶୁଣାଯାଏ । ରୂପ ଆଖିରେ ଦେଖାଯାଏ, ତେବେ ତାହା ପ୍ରସିଦ୍ଧଧର୍ମା ଦୋଷରେ ଦୂଷିତ ହେବ । କାରଣ ଆବାଳବୃଦ୍ଧ ବନିତା ଜାଣିଥିବା ବିଷୟକୁ ପ୍ରମାଣିତ କରିବା ଅପଚେଷ୍ଟା ମାତ୍ର ।

୨୦) ପ୍ରତ୍ୟକ୍ଷ ବାଧିନୀ — ପ୍ରତ୍ୟକ୍ଷ ପ୍ରମାଣ ଦ୍ୱାରା ଯାହା ବାଧିତ ହୁଏ ତାହାକୁ ପ୍ରତ୍ୟକ୍ଷ ବାଧିନୀ ପ୍ରତିଜ୍ଞା କୁହାଯାଏ । ଯଥା-ଅଗ୍ନି ଶୀତଳ ଅଟେ । ରୂପ ନାହିଁ । ଚନ୍ଦ୍ର ଉଷ୍ଣ ଅଟେ । ଇତ୍ୟାଦି ।

ଯେଉଁ ଉକ୍ତି ପ୍ରତ୍ୟକ୍ଷରେ ବାଧା ସୃଷ୍ଟି କରେ ତାହା ପ୍ରତ୍ୟକ୍ଷ ବାଧିନୀ ପ୍ରତିଜ୍ଞା ଦୋଷ ଅଟେ । ଅଗ୍ନିକୁ ଶୀତଳ କରିବା, ନାମ ରୂପାତ୍ମକ ଜଗତରେ ରୂପର ଅଭାବ ଦେଖିବା ଓ ଚନ୍ଦ୍ରକୁ ଗରମ ବୋଲି କହିବା ଅଗ୍ରାହ୍ୟ ଅଟେ ।

ସନ୍ଦ୍ୱୟୋଃ ସଦ୍ଭାବେ ସିଦ୍ଧୋ ବ୍ୟାବୃତ୍ତସ୍ତଦ୍ବିପକ୍ଷତଃ ।
ହେତୁସ୍ତ୍ରିଲକ୍ଷଣୋ ଜ୍ଞେୟୋ ହେତ୍ୱାଭାସା ବିପର୍ଯ୍ୟୟାତ୍ ॥ ୨୧ ॥

ସନ୍ଦ୍ୱୟୋରପି ଯଃ ସିଦ୍ଧଃ ସ୍ୱପକ୍ଷପରପକ୍ଷୟୋଃ ।
ଅଭିନ୍ନଲକ୍ଷଣଃ ପକ୍ଷଃ ଫଳଭେଦାଦସୌ ଦ୍ୱିଧା ॥ ୨୨ ॥

ପରପକ୍ଷାନୁପାଦାନଂ ତତ୍‌ବସ୍ତୁଶେଷାନ୍ତ ହେତୌ ।
କଥମନ୍ୟତରାସିଦ୍ଧହେତ୍ୱାଭାସବ୍ୟବସ୍ଥିତିଃ ॥ ୨୩ ॥

---

୨୧) ହେତୁ ଓ ହେତ୍ୱାଭାସ — ହେତୁ (ସାଧନ)ର ତିନୋଟି ଲକ୍ଷଣ ଯଥା ପକ୍ଷସତ୍ତ୍ୱ, ସପକ୍ଷସତ୍ତ୍ୱ, ଓ ବିପକ୍ଷବ୍ୟାବୃତ୍ତ । (ସନ୍ଦ୍ୱୟୋଃ) ସ୍ୱପକ୍ଷ ଓ ପରପକ୍ଷ ଅର୍ଥାତ୍ ବାଦୀ ପ୍ରତିବାଦୀ ଦୁହିଁଙ୍କ ଦ୍ୱାରା ସ୍ୱୀକୃତ ହୋଇଥିବ । ସପକ୍ଷରେ ରହୁଥିବ କିନ୍ତୁ ବିପକ୍ଷରେ ରହୁ ନଥିବ । ଏହାର ବିପର୍ଯ୍ୟୟରେ ହେତ୍ୱାଭାସ ଦୋଷ ହୁଏ ।

୨୨) ସନ୍ଦ୍ୱୟୋଃର ବ୍ୟାଖ୍ୟା—ଦୁଇଟିରେ ହେବା (ସନ୍ଦ୍ୱୟୋଃ) ର ଅର୍ଥ ବାଦୀ-ପ୍ରତିବାଦୀ ବା ସ୍ୱପକ୍ଷ ପରପକ୍ଷରେ ସିଦ୍ଧ ଅର୍ଥାତ୍ ସ୍ୱୀକୃତ ହେଉଥିବ । ପକ୍ଷ (ଧର୍ମୀ) ଦୁହିଁଙ୍କ ଦୃଷ୍ଟିରେ ଏକ ହିଁ ହେବ । କିନ୍ତୁ ଫଳ ଭେଦରେ ତାହା ଦୁଇପ୍ରକାର ହୋଇଯାଏ ।

ବାଦୀ ଏବଂ ପ୍ରତିବାଦୀ ପକ୍ଷ ବିଷୟରେ ଏବଂ ପକ୍ଷରେ ହେତୁର ସ୍ଥିତି ବିଷୟରେ ଏକମତ ହେବା ଉଚିତ । କୌଣସି ବିବାଦ ସମ୍ଭବ ନୁହେଁ । ହାଁ ନିଷ୍କର୍ଷ ବିଷୟରେ ଉଭୟେ ଏକ ମତ ନ ହୋଇ ପାରନ୍ତି ।

ଉଦାହରଣ ସ୍ୱରୂପ-ଧ୍ୱନି ଧର୍ମୀ ଏକ ଅଟେ । କିନ୍ତୁ କେହି ନିତ୍ୟ ବା ଅନିତ୍ୟ କହିପାରେ ।

୨୩) ପରପକ୍ଷକୁ ସ୍ୱୀକାର ନ କଲେ ଏବଂ ସେଥିରେ ହେତୁର ସ୍ଥିତି ଅସ୍ୱୀକାର କଲେ ଅନ୍ୟତରାସିଦ୍ଧ ହେତ୍ୱାଭାସର ବ୍ୟବସ୍ଥା କିପରି ହେବ ?

ପୂର୍ବକାରିକାରେ କୁହାଯାଇଛି, ହେତୁ ଏପରି ହେବା ଉଚିତ, ଯାହା ବାଦୀ ପ୍ରତିବାଦୀ ଉଭୟ ପକ୍ଷରେ ରହିଥିବ । ତେବେ ଯାଇ ଯୁକ୍ତିର ସାମାନ୍ୟ ଆଧାର ପ୍ରସ୍ତୁତ ହୋଇ ପାରିବ । ତାହା ଏଠାରେ ସ୍ପଷ୍ଟ କରାଯାଇଛି । ଅସତ୍ ମିଥ୍ୟା ହେତୁକୁ ହେତ୍ୱାଭାସ କୁହାଯାଏ ଅର୍ଥାତ୍ ଯାହା ହେତୁ ନ ହୋଇ ହେତୁ ପରି ମନେ ହୁଏ । ହେତ୍ୱାଭାସ ତର୍କ ବା ଯୁକ୍ତିର ବହୁତ ବଡ ଦୋଷ । ହେତ୍ୱାଭାସ ବହୁବିଧ - ଯଥା-ସବ୍ୟଭିଚାର, ବିରୁଦ୍ଧ, ସତ୍ ପ୍ରତିପକ୍ଷ, ଅସିଦ୍ଧ ଓ ବାଧିତ । ଏ ମଧ୍ୟରୁ ଅସିଦ୍ଧ ଚତୁର୍ବିଧ ଯଥା-ଉଭୟାସିଦ୍ଧ, ଅନ୍ୟତରାସିଦ୍ଧ ତଦ୍ଭାବାସିଦ୍ଧ ଓ ଅନୁମେୟାସିଦ୍ଧ । ଉଭୟାସିଦ୍ଧର ଅର୍ଥ ଯାହା ଦୁଇ ପକ୍ଷ ପାଇଁ ଅସିଦ୍ଧ । ସେହିପରି ଅନ୍ୟତରାସିଦ୍ଧର ଅର୍ଥ-ଯାହା ଦୁଇପକ୍ଷ ମଧ୍ୟରୁ ଯେ କୌଣସି ଗୋଟିକରେ ଅସିଦ୍ଧ ।

ସାଧର୍ମ୍ୟାନୁଗମତଃ ସଦୃଶସ୍ତତ୍ର ଯସ୍ମ ସନ୍ ।
ଅନେ୍ୟାଽପ୍ୟସାବେକ ଇବ ସାମାନ୍ୟାଦୁପଚର୍ଯ୍ୟତେ ॥ ୧୪ ॥
ବିପକ୍ଷସ୍ତଦ୍ୱିସଦୃଶୋ ବ୍ୟାବୃତ୍ତିସ୍ତତ୍ର ଯୋ ହ୍ୟସନ୍ ।
ଇତି ଦ୍ୱୟୈକାନୁଗତବ୍ୟାବୃତ୍ତିଲକ୍ଷ୍ମ ସାଧୁତା ॥ ୧୫ ॥

---

୧୪) ସଦୃଶେସପିଣ୍ଡର ବ୍ୟାଖ୍ୟା—ସଦୃଶେ ପିଣ୍ଡର ଅର୍ଥ ସପକ୍ଷରେ ବର୍ତ୍ତିତ ରୂପରେ ରହିବା । ସାଧର୍ମ୍ମ (ଅଗ୍ନି)ର ଅନୁଗମ (ବିଦ୍ୟମାନତା)କାରଣରୁ ଯାହା ପକ୍ଷ(ପର୍ବତ ର ସମାନ (ଯଥା-ମହାନସ)ରେ ରହେ । ତାହାକୁ ହିଁ ସଦୃଶରେ ରହିବା କୁହା-ଯାଏ । ସେହି ଧର୍ମ ଭିନ୍ନ ହୋଇ ମଧ୍ୟ ଅଭିନ୍ନ ରୂପେ ବ୍ୟବହୃତ ହୁଏ ।

ପକ୍ଷ ଅଟେ ପର୍ବତ । ସାଧର୍ମ୍ମ ଅଗ୍ନି । ପର୍ବତରେ ଯେଉଁ ପ୍ରକାର ଅଗ୍ନି ଅଛି । ସେହିପରି ଅଗ୍ନି ଯେଉଁଠି ରହେ ସେ ତାହା ସଦୃଶ ହେବ । ଯେପରି-ରୋଷେଇଘର, ସଦୃଶ ହେତୁ ତାହା ସପକ୍ଷ । ପିଣ୍ଡର ଅର୍ଥ ଅବଶ୍ୟ ରହିବା । ସଂକ୍ଷେପରେ କହିଲେ ପକ୍ଷରେ ଯାହା ରହେ ସପକ୍ଷରେ ତାହା ରହିଲେ ତାହାକୁ ସଦୃଶେ ପିଣ୍ଡଂ କହନ୍ତି । ପ୍ରଶ୍ନ ଉଠିପାରେ ଗୋଟିଏ ବସ୍ତୁ ଦୁଇଟି ସ୍ଥାନରେ କିପରି ରହିବ ? ଆମ ଘରର ନିଆଁ ଅନ୍ୟ ଘରର ନିଆଁ ବା ଆମ ଘରର ଧୂଆଁ ଅନ୍ୟ ଘରର ଧୂଆଁ କଦାପି ଏକ ନୁହେଁ । ସେହି ପରି ପର୍ବତର ନିଆଁ ଚୁଲିର ନିଆଁ ଏକ ହୋଇ ପାରିବ କି ?

ଏହାର ଉତ୍ତରରେ କୁହାଯିବ, ଏଦୁଇଟି ନିଆଁ ବା ଧୂଆଁ ଭିନ୍ନ ସତ; କିନ୍ତୁ ଜାତି ଦୃଷ୍ଟିରୁ ଏକ । ଅର୍ଥାତ୍ ସ ଜାତୀୟ । ବ୍ୟକ୍ତି ରୂପରେ ଭିନ୍ନ ହେଲେ ମଧ୍ୟ ଏ ଦୁଇଟି ଅଗ୍ନି ବା ଧୂମ ଜାତି ଦୃଷ୍ଟିରୁ ଏକ । ତେଣୁ ଭିନ୍ନ ହେଲେ ମଧ୍ୟ ସଜାତୀୟ ଦୃଷ୍ଟିରୁ ଅଭେଦ ବ୍ୟବହାର କରାଯାଇଛି ।

୧୫) ବ୍ୟାବୃତ୍ତିସ୍ତଦ୍ ବିପକ୍ଷତଃର ବ୍ୟାଖ୍ୟା—ସେହି ପକ୍ଷ (ପର୍ବତ)ର ଯାହା ବିସଦୃଶ (ଅସମାନ) ଅଟେ ତାହା ବିପକ୍ଷ ଅଟେ । ସେଥିରେ (ବିପକ୍ଷରେ) ଯାହା ରହେ ନାହିଁ, ତାହାକୁ ବ୍ୟାବୃତ୍ତି କହନ୍ତି । ଏହି ସ୍ଥିତିରେ ପକ୍ଷ ଓ ସପକ୍ଷରେ ଅନୁଗତ[ସ୍ଥିତ] ଏବଂ [ବିପକ୍ଷ] ରେ ବ୍ୟାବୃତ୍ତି ହିଁ ହେତୁର ସାଧୁତା[ନିର୍ଦ୍ଦୋଷତା] ଅଟେ ।

ଅତଏବ ହେତୁ ସେତେବେଳେ ନିର୍ଦ୍ଦୋଷ ହୁଏ, ଯେତେବେଳେ ତାହା ପକ୍ଷରେ ଓ ସପକ୍ଷରେ ରହେ ଏବଂ ବିପକ୍ଷରେ ରହେ ନାହିଁ । ଏହାକୁ ହିଁ ୨୧ କାରିକାରେ ପକ୍ଷ-ସତ୍ତ୍ୱ, ସପକ୍ଷସତ୍ତ୍ୱ ଓ ବିପକ୍ଷବ୍ୟାବୃତ୍ତ କୁହାଯାଇଛି । 'ଦ୍ୱୟୈକାନୁଗତବ୍ୟାବୃତ୍ତି' ରେ ଯଥା-ସଂଖ୍ୟା ଅନ୍ୱୟ ଅପେକ୍ଷିତ । ଦ୍ୱୟ—ଏକ-ଅନୁଗତ-ବ୍ୟାବୃତ୍ତି । ଦ୍ୱୟ ସହିତ ଅନୁଗତ ଏବଂ ଏକ ସହିତ ବ୍ୟାବୃତ୍ତି ଅନ୍ୱିତ ହେବ । ଦ୍ୱୟର ଅର୍ଥ ପକ୍ଷ ଓ ସପକ୍ଷ ଏଥିରେ ଅନୁଗତ ଅର୍ଥାତ୍ ସ୍ଥିତ । ଏକର ଅର୍ଥ ବିପକ୍ଷରେ ବ୍ୟାବୃତ୍ତି ଅର୍ଥାତ୍ ନରହିବା ।

ସାଧ୍ୟ ସାଧନଧର୍ମାଭ୍ୟାଂ ମିଳିତୋ ଦୃଷ୍ଟାନ୍ତ ଉଚ୍ୟତେ ।
ତଦ୍‌ବିପର୍ଯ୍ୟୟତୋ ବାପି ତଦାଭାସସ୍ତଦବୃତ୍ତିତଃ ॥ ୨୭ ॥

ପର୍ବତରେ ଅଗ୍ନିର ସ୍ଥିତି ପ୍ରମାଣ କରିବା ପାଇଁ ହେତୁ ଅଟେ ଧୂମ । ସେହି ଧୂମ ସପକ୍ଷରେ ଅଛି ଓ ଚୂଲିରେ ମଧ୍ୟ ଅଛି । କିନ୍ତୁ ବିପକ୍ଷ[ଜଳାଶୟ]ରେ ନାହିଁ । ତେଣୁ ଏହାକୁ ସଦ୍ଧେତୁ ବା ନିର୍ଦ୍ଦୋଷ ହେତୁ କୁହାଯିବ । ଯଦି ଏଥିରେ ତ୍ରୁଟି ରହେ, ତେବେ ତାହା ହେତ୍ୱାଭାସ ହେବ ।

୨୭) ଦୃଷ୍ଟାନ୍ତହୀନ ଦୋଷ—ସାଧ୍ୟ ଓ ସାଧନ ଏହି ଦୁଇଧର୍ମରେ ମିଳିକୁ ଦୃଷ୍ଟାନ୍ତ କହନ୍ତି । ଏହି ଦୃଷ୍ଟାନ୍ତ ବିପର୍ଯ୍ୟୟରେ ମଧ୍ୟ ହୋଇଥାଏ । ଏହି ସାଧ୍ୟ ଓ ସାଧନ ଅଭାବରେ ଦୃଷ୍ଟାନ୍ତହୀନ ଦୋଷ ହୋଇଥାଏ ।

ଦୃଷ୍ଟାନ୍ତାଭାସ ନିରୂପଣ ପ୍ରସଙ୍ଗରେ ଗ୍ରନ୍ଥକାର ପ୍ରଥମେ ଦୃଷ୍ଟାନ୍ତର ସ୍ୱରୂପ ନିର୍ଣ୍ଣୟ କରିଛନ୍ତି ସାଧ୍ୟ [ଅଗ୍ନି] ସାଧନ [ଧୂଆଁ] ଏହି ଦୁଇଟି ଧର୍ମ ଯେଉଁଠି ରହିବା ନିଶ୍ଚିତ ଅଟେ ତାହା ଦୃଷ୍ଟାନ୍ତ ।ଏହି ଦୃଷ୍ଟାନ୍ତ ଦ୍ୱିବିଧ —

ଯେଉଁଠି ସାଧ୍ୟ ଓ ସାଧନ ଉଭୟ ରହେ ତାହା ଅନ୍ୱୟ ଦୃଷ୍ଟାନ୍ତ ।
ଯେଉଁଠି ଏ ଦୁଇଟି ରହେ ନାହିଁ ତାହା ବ୍ୟତିରେକ ଦୃଷ୍ଟାନ୍ତ ।

ଏହି କାରିକାର ପ୍ରଥମାର୍ଦ୍ଧରେ ଅନ୍ୱୟ ଦୃଷ୍ଟାନ୍ତର ଲକ୍ଷଣ ଦିଆଯାଇଛି । ତୃତୀୟ ଚରଣରେ ବ୍ୟତିରେକ ଦୃଷ୍ଟାନ୍ତ ଓ ଚତୁର୍ଥ ଚରଣରେ ଦୃଷ୍ଟାନ୍ତାଭାସର ସ୍ୱରୂପ ନିର୍ଣ୍ଣୀତ । ଦୃଷ୍ଟାନ୍ତ ବିପର୍ଯ୍ୟୟରେ ମଧ୍ୟ ହୁଏ, ଏହାର ଅଭିପ୍ରାୟ ବ୍ୟତିରେକ ଦ୍ୱାରା ମଧ୍ୟ ହୁଏ । ଏଠାରେ ବିପର୍ଯ୍ୟୟ ବ୍ୟତିରେକ ବାଚକ । ଅନ୍ୱୟକୁ ସାଧର୍ମ୍ୟ ଓ ବ୍ୟତିରେକକୁ ବୈଧର୍ମ୍ୟ ଦୃଷ୍ଟାନ୍ତ କହନ୍ତି । ଅନ୍ୱୟ ବା ସାଧର୍ମ୍ୟ ଦୃଷ୍ଟାନ୍ତର ଉଦାହରଣ ଚୂଲି । କାରଣ ସେଠାରେ ନିଆଁ ଓ ଧୂଆଁ ଉଭୟ ବିଦ୍ୟମାନ । ତେଣୁ ପର୍ବତ ସହିତ ସାଧର୍ମ୍ୟ ରହିଛି । ବ୍ୟତିରେକ ବା ବୈଧର୍ମ୍ୟ ଦୃଷ୍ଟାନ୍ତର ଉଦାହରଣ ଜଳାଶୟ । ସେଠାରେ ନିଆଁ ବା ଧୂଆଁ ନାହିଁ । ତେଣୁ ପର୍ବତ ଠାରୁ ତାର ବୈଧର୍ମ୍ୟ ରହିଛି । ସାଧର ସିଦ୍ଧିରେ ଅନ୍ୱୟ, ବ୍ୟତିରେକ ଦୁଇଟି ସହାୟକ ହୁଅନ୍ତି । ତେଣୁ ଉଭୟଙ୍କୁ ଦୃଷ୍ଟାନ୍ତ କହନ୍ତି ।

ତଦାଭଃ ତଦବୃତ୍ତିତଃ = ବୃତ୍ତି = ରହିବା, ନବୃତ୍ତି ଅବୃତ୍ତି = ନରହିବା, ତତ୍ ଅବୃତ୍ତିତଃ = ତତ୍ ତ ହାର ଅର୍ଥାତ୍ ସାଧ୍ୟ-ସାଧନର ଅବୃତ୍ତିତଃ = ନରହିବାରୁ, ତଦାଭାସ ତତ୍ = ସେହି ଅର୍ଥାତ୍ ଦୃଷ୍ଟାନ୍ତ ଆଭାଃ = ଯେପରି ଅର୍ଥାତ୍ ଦୃଷ୍ଟାନ୍ତ ପରି ଅର୍ଥାତ୍ ଯାହା ଦୃଷ୍ଟାନ୍ତ ନୁହେ କିନ୍ତୁ ତାହାପରି ପ୍ରତୀତ ହୁଏ, ଅର୍ଥାତ୍ ଦୃଷ୍ଟାନ୍ତାଭାସ । ସଂକ୍ଷେପରେ କହିଲେ-- ସାଧ୍ୟ-ସାଧନ ନଥାଇ ଯାହା ଦୃଷ୍ଟାନ୍ତ ରୂପରେ ଉପସ୍ଥାପିତ ତାହା

ସାଧ୍ୟେନ ଲିଂଗାନୁଗତସ୍ତଦଭାବେ ଚ ନାସ୍ତିତା ।
ଖ୍ୟାପ୍ୟତେ ଯେନ ଦୃଷ୍ଟାନ୍ତଃ ସ କଲାନୈର୍ଯ୍ୟର୍ଦ୍ୱିଧୋଚ୍ୟତେ ॥ ୨୭ ॥
ଦୂଷଣଂ ନ୍ୟୂନତାଦ୍ୟୁକ୍ତିର୍ନ୍ୟୂନଂ ହେତ୍ୱାଦିନାଥ ଚ ।
ତନ୍ନ୍ଯୁନତ୍ୱୋକ୍ତିଥାପ୍ୟସ୍ତି ନ୍ୟୂନଂ ନେଷ୍ଟଂ ପ୍ରତିଜ୍ଞୟା ॥ ୨୮ ॥
ଜାତୟୋ ଦୂଷଣାଭାସ ସ୍ତାଃ ସାଧର୍ମ୍ୟସମାଦୟଃ ।
ତାସାଂ ପ୍ରପଞ୍ଚୋ ବହୁଧା ଭୂୟସ୍ତ୍ୱାଦହନୋଦିତଃ ॥ ୨୯ ॥

---

ଦୃଷ୍ଟାନ୍ତାଭାସ ମାତ୍ର । ଦୃଷ୍ଟାନ୍ତରେ ସାଧ୍ୟ-ସାଧନ ଯୁକ୍ତ ହୋଇ କଥନକୁ ପ୍ରମାଣିତ କରେ । ଚୂଲିରେ ସାଧ୍ୟ-ସାଧନ (ନିଆଁ ଓ ଧୂଆଁ) ଉଭୟ ରହିଛି । ତେଣୁ ଏହା ଦୃଷ୍ଟାନ୍ତ । ଯଦି କେହି କହେ-ପର୍ବତରେ ନିଆଁ ଅଛି ଯେପରି ପୁସ୍ତକରେ । ତେବେ ଏହାକୁ ଦୃଷ୍ଟାନ୍ତହୀନ ବା ଦୃଷ୍ଟାନ୍ତାଭାସ ଦୋଷ କୁହାଯିବ ।

୨୭) ଦୃଷ୍ଟାନ୍ତର ଦ୍ୱିତୀୟ ଲକ୍ଷଣ— କେତେକ ବ୍ୟକ୍ତି ଦୃଷ୍ଟାନ୍ତକୁ ଦୁଇ ଭାବରେ ଉପସ୍ଥାପନ କରନ୍ତି । ଏକ-ସାଧ୍ୟ ସହିତ ସାଧନ ରହିବା । ଦ୍ୱିତୀୟ-ସାଧ୍ୟ ଅଭାବରେ ସାଧନ ନରହିବା ଦୃଷ୍ଟାନ୍ତ ଅଟେ ।

କାରିକାର ଅନ୍ୱୟ-ଯେନ ସାଧ୍ୟେନ ଲିଂଗାନୁଗତଃ ତଦଭାବେ (ସାଧ୍ୟା ଭାବେ) ଚ (ଲିଂଗସ୍ୟ) ନାସ୍ତିତା ଖ୍ୟାପ୍ୟତେ ସ ଦୃଷ୍ଟାନ୍ତଃ ଅନ୍ୟୈ ଦ୍ୱିଧା ଉଚ୍ୟତେ କିଳ । କେତେକ କହନ୍ତି— ଯେଉଁଠି ସାଧ୍ୟ ରହେ, ସେଇଠି ସାଧନ ରହେ, ଅଥବା ଯେଉଁଠି ସାଧ୍ୟ ରହେ ନାହିଁ ସେଇଠି ସାଧନ ରହେ ନାହିଁ—ଏହା ଦୃଷ୍ଟାନ୍ତ ଅଟେ । ଅନ୍ୟ ଶବ୍ଦରେ ଯାହା ସାଧ୍ୟ ଓ ସାଧନ ମଧ୍ୟରେ ବ୍ୟାପ୍ତି (ନିତ୍ୟସମ୍ବନ୍ଧ)କୁ ନିର୍ଦ୍ଧାରଣ କରେ, ତାହା ଦୃଷ୍ଟାନ୍ତ ।

ବ୍ୟାପ୍ତି ନିର୍ଦ୍ଧାରଣ ପରକ ଏହି ଲକ୍ଷଣ ଜୈନାଚାର୍ଯ୍ୟଙ୍କ ଅଭିମତ ନୁହେ, ଏହା 'କିଳ' ଅବ୍ୟୟରୁ ଧ୍ୱନିତ ।

୨୮) ଅନୁମାନ ବିଷୟକ ଦୋଷର ଉପସଂହାର-- ଅନୁମାନର ଅବୟବ (ହେତୁ ଦୃଷ୍ଟାନ୍ତ)ରେ କୌଣସି ପ୍ରକାର ନ୍ୟୂନତା ବା ତ୍ରୁଟି ରହିଲେ ହେତ୍ୱାଭାସ ବା ଦୃଷ୍ଟାନ୍ତାଭାସ ଦୋଷ ହୋଇଥାଏ । ପ୍ରତିଜ୍ଞା ହେତୁ ଓ ଦୃଷ୍ଟାନ୍ତ ପରାର୍ଥାନୁମାନର ଅଙ୍ଗ ହେଲେ ସୁଦ୍ଧା ତାହାର ନ୍ୟୂନତା ପ୍ରଦର୍ଶନ କରାଯାଇନାହିଁ । କାରଣ ପ୍ରତିଜ୍ଞା ତର୍କର ମୂଳ ଅଟେ । ସେଥିରେ ନ୍ୟୂନତା ରହିବା ଉଚିତ ନୁହେ ।

୨୯) ଜାତି— ଦୋଷାଭାସକୁ ଜାତି କହନ୍ତି । ଏହା ସାଧର୍ମ୍ୟ, ସମ ଆଦି ବହୁ ଭେଦରେ ବିଭକ୍ତ । ତେଣୁ ସେ ସମସ୍ତ ଏଠାରେ ଉଲ୍ଲେଖ କରାଯାଇନାହିଁ ।

ଅପରଂ ବକ୍ଷ୍ୟତେ ନ୍ୟାସ୍ୟଲକ୍ଷଣଂ କାବ୍ୟସନ୍ତ୍ରୟମ୍ ।
ଇଦଂ ତୁ ଶାସ୍ତ୍ରଗର୍ଭେଷୁ କାବ୍ୟେଷ୍ୱଭିହିତଂ ତଥା ॥ ୩୦

ଅଥ ନିତ୍ୟାବିନାଶୀବ ଦୃଷ୍ଟଂ ଜଗତି କାରଣମ୍ ।
କାରଣଂ ଚେନ୍ନ ତର୍ନିତ୍ୟଂ ନିତ୍ୟଂଚେତ୍‌କାରଣଂ ନତତ୍ ॥ ୩୧ ॥

---

ବସ୍ତୁତଃ ଦୋଷ ନଥାଇ ମଧ୍ୟ ଦୋଷ ପରି ପ୍ରତୀତ ହେଲେ ତାହାକୁ ଦୋଷାଭାସ କୁହାଯାଏ । ଦୋଷାଭାସକୁ ହିଁ ନ୍ୟାୟ ଭାଷାରେ ଜାତି କହନ୍ତି ।

ଗୌତମ ଯେଉଁ ଷୋହଳଟି ଜ୍ଞାତବ୍ୟ ପଦାର୍ଥର ନିର୍ଦ୍ଦେଶ ଦେଇଛନ୍ତି, ସେମାନଙ୍କରେ ଏହାକୁ ସ୍ଥାନିତ କରିଛନ୍ତି । ଯଥା— ପ୍ରମାଣ, ପ୍ରମେୟ, ସଂଶୟ, ପ୍ରୟୋଜନ, ଦୃଷ୍ଟାନ୍ତ, ସିଦ୍ଧାନ୍ତ, ଅବୟବ, ତର୍କ, ନିର୍ଣ୍ଣୟ, ବାଦ, ଜଳ୍ପ, ବିତଣ୍ଡା, ହେତ୍ୱାଭାସ, ଛଳ, ଜାତି ଏବଂ ନିଗ୍ରହସ୍ଥାନ ବିଷୟକ ତତ୍ତ୍ୱଜ୍ଞାନ ଦ୍ୱାରା ମୋକ୍ଷ ପ୍ରାପ୍ତି ହୁଏ । [ନ୍ୟାୟ ଦର୍ଶନ] ଏ ମଧ୍ୟରେ ଥିବା 'ଜାତି'ର ୨୪ ପ୍ରକାର ଭେଦ ପ୍ରଦର୍ଶିତ । ଏ ପ୍ରସଙ୍ଗରେ ସେ ସମସ୍ତର ଉଲ୍ଲେଖ ଅନାବଶ୍ୟକ ।

୩୦) ନ୍ୟାୟ ସିଦ୍ଧାନ୍ତର କାବ୍ୟରେ ଉପଯୋଗିତା— କାବ୍ୟ ନିର୍ଦ୍ଦିଷ୍ଟ ନ୍ୟାୟର ସ୍ୱରୂପ ଏହାଠାରୁ ଭିନ୍ନ ଅଟେ । ସେ ସମ୍ବନ୍ଧରେ ପରେ କୁହାଯିବ । ବର୍ତ୍ତମାନ ଯେଉଁସବୁ ଶାସ୍ତ୍ର ବିଷୟକ ନ୍ୟାୟ କୁହାଗଲେ, ତାହା କାବ୍ୟକୁ ଦୃଷ୍ଟିରେ ରଖି କୁହାଯାଇଛି ।

ଭାମହ ପ୍ରଥମ ପରିଚ୍ଛେଦରେ ୧୬ଦଶ କାରିକାରେ କାବ୍ୟଭେଦ ବିଷୟରେ ସୂଚନା ଦେଇଛନ୍ତି । ସେଥିରେ କୁହାଯାଇଛି ଗୋଟିଏ ଶାସ୍ତ୍ରାଶ୍ରିତ କାବ୍ୟ ଅନ୍ୟଟି ଲୋକାଶ୍ରିତ । ଶାସ୍ତ୍ରାଶ୍ରିତ କାବ୍ୟରେ ନ୍ୟାୟ, ବ୍ୟାକରଣ ଆଦି ଉପଯୋଗ କରାଯାଏ । ତେଣୁ ଏ ସମସ୍ତ ଚର୍ଚ୍ଚା ସେଥିପାଇଁ ଉପଯୋଗୀ । ଲୋକାଶ୍ରିତ କାବ୍ୟରେ ଲୋକ ବ୍ୟବହାରର ରମଣୀୟ ଉପସ୍ଥାପନ ରହେ । ତାହା ପରବର୍ତ୍ତୀ ପର୍ଯ୍ୟାୟରେ କରାଯିବ ।

୩୧) ଉଦାହରଣ— ସଂସାରରେ କାରଣକୁ ନିତ୍ୟ ଓ ଅବିନାଶୀ [ନିତ୍ୟ] କୁହାଯାଏ । [କିନ୍ତୁ ଏ କଥନ ଅଗ୍ରାହ୍ୟ] । ଯଦି ଏହା କାରଣ ଅଟେ, ତେବେ ନିତ୍ୟ ନୁହେଁ, ଯଦି ନିତ୍ୟ ଅଟେ, ତେବେ କାରଣ ନୁହେଁ ।

ନ୍ୟାୟ ବିଷୟକ ସଂକ୍ଷିପ୍ତ ଚର୍ଚ୍ଚାର ଉଦ୍ଦେଶ୍ୟ ଏହି କାରିକାରେ ନିହିତ । କାରଣର ଅର୍ଥ ଉତ୍ପନ୍ନ କରିବା ବ୍ୟକ୍ତି ବା ବସ୍ତୁ । କିନ୍ତୁ ଯେ ଅନ୍ୟକୁ ଉତ୍ପନ୍ନ କରେ, ସେ ମଧ୍ୟ କାହାଠାରୁ ଉତ୍ପନ୍ନ ହୋଇଅଛି । ଉତ୍ପନ୍ନ ହେତୁ ସେ ମଧ୍ୟ କାର୍ଯ୍ୟ ଅଟେ । କାର୍ଯ୍ୟ ସର୍ବଦା ବିନାଶଶୀଳ । ତେଣୁ ତାହାକୁ ନିତ୍ୟ କୁହାଯାଇପାରିବ ନାହିଁ । ନିଘ ତାହାକୁ

ଲକ୍ଷ୍ଣ ପ୍ରୟୋଗଦୋଷାଣାଂ ଭେଦେନାନେକ ବର୍ଣ୍ଣନା ।
ସନ୍ଧାଦି ସାଧନାସିଦ୍ଧୌ ଶାସ୍ତ୍ରେଷୂଦିତମନ୍ୟଥା ॥ ୩୨ ॥
ତଜ୍‌ଜ୍ଞୈଃ କାବ୍ୟ ପ୍ରୟୋଗେଷୁ ତତ୍ପ୍ରାଦୁଷ୍ଟ୍ୟ ତମନ୍ୟଥା ।
ଭିନ୍ନ ଲୋକାଶ୍ରୟଂ କାବ୍ୟମାଗମାସ୍ତତ୍ତ୍ୱ ଦର୍ଶନଃ ॥ ୩୩ ॥

---

କହନ୍ତି—ଯେ ସର୍ବଦା ରହେ, ଉତ୍ପନ୍ନ ବା ନଷ୍ଟ ହୁଏ ନାହିଁ । ଅତଏବ ଯଦି କେହି କହେ-କାରଣ ନିତ୍ୟ ଅଟେ, ତେବେ ତାହା ଅଗ୍ରାହ୍ୟ । ତେଣୁ କାରଣ ନିତ୍ୟ ନୁହେ ବା ନିତ୍ୟ କାରଣ ନୁହେ ।

ନ୍ୟାୟ ଶାସ୍ତ୍ର ନଜାଣିଥିବା ବ୍ୟକ୍ତି ଏ କଥା ସହଜରେ ବୁଝିପାରିବ ନାହିଁ । ତେଣୁ ନ୍ୟାୟ ଶାସ୍ତ୍ରର ସଂକ୍ଷିପ୍ତ ଚର୍ଚ୍ଚା ଅନୁପାଦେୟ ନୁହେ ।

୩୨) **ପ୍ରସକ୍ତ ପ୍ରକରଣର ଉପସଂହାର—** ପୂର୍ବୋକ୍ତ ଭାବରେ ପ୍ରୟୋଗ ସମ୍ବନ୍ଧୀ ଦୋଷର ଭେଦ ସହିତ ଲକ୍ଷଣ ନିରୂପଣ କରାଗଲା । ପ୍ରତିଜ୍ଞା ଆଦି ନ୍ୟାୟ ସିଦ୍ଧି ପାଇଁ ଶାସ୍ତ୍ରରେ ଅନ୍ୟ ପ୍ରକାର କୁହାଯାଇଛି ।

ପଞ୍ଚମ ପରିଚ୍ଛେଦର ଆରମ୍ଭରୁ ଏଯାଏଁ ପ୍ରତିଜ୍ଞାହୀନ ଆଦି ଦୋଷ ଗୁଡ଼ିକର ଲକ୍ଷଣ ଓ ପ୍ରକାରଭେଦ ନିରୂପଣ କରାଗଲା । ଉପସଂହାରରେ ଭାମହ କହନ୍ତି—ଏ ପ୍ରକରଣ ଅପ୍ରାସଙ୍ଗିକ ବା ଅନୁପଯୋଗୀ ନୁହେ । ପ୍ରତିଜ୍ଞା ଆଦି ପ୍ରୟୋଗ ଜନିତ ଦୋଷର ପରିଜ୍ଞାନ ନଥିଲେ ତାହାର ବ୍ୟବହାର ଯଥାର୍ଥ ଭାବରେ କରାଯାଇପାରିବ ନାହିଁ ।

କାରିକାର ଅନ୍ୱୟ-ଅନେକ ବର୍ଣ୍ଣନା ପ୍ରୟୋଗଦୋଷଣାଂ ଭେଦେନ (ସହ) ଲକ୍ଷ୍ମ ସନ୍ଧାଦି ସାଧନା ସିଦ୍ଧୌ ଶାସ୍ତ୍ରେଷୁ ଅନ୍ୟଥା ଉଦିତମ୍ । ସନ୍ଧା = ପ୍ରତିଜ୍ଞା, ସାଧନା = ନ୍ୟାୟ, ସିଦ୍ଧି = ବ୍ୟୁତ୍ପତ୍ତି ।

୩୩) **କାବ୍ୟରେ ପ୍ରତିଜ୍ଞା ଆଦି ଦୋଷର ନିରୂପଣ—** ନ୍ୟାୟ ଶାସ୍ତ୍ରଜ୍ଞ ପଣ୍ଡିତବୃନ୍ଦ କାବ୍ୟ ପ୍ରୟୋଗରେ ତାହାକୁ ଭିନ୍ନ ରୂପରେ ଉପସ୍ଥାପନ କରିଛନ୍ତି । ଶାସ୍ତ୍ର ଓ କାବ୍ୟରେ ଭିନ୍ନତା ଏତିକି ଯେ, କାବ୍ୟ ଅଟେ ଲୋକାଶ୍ରିତ ଓ ଆଗମ ତତ୍ତ୍ୱାଶ୍ରିତ ।
ଶାସ୍ତ୍ର ଓ କାବ୍ୟର ସ୍ୱରୂପ ଭିନ୍ନ ହେତୁ ଉପଯୁକ୍ତ ପ୍ରତିଜ୍ଞା ହେତୁ ଆଦି ଦୋଷର ସ୍ଥିତି ଉଭୟରେ ଭିନ୍ନ ଅଟେ ।

ମାଂସାରିକ ବସ୍ତୁ ଆଧାରିତ ଲୋକାଶ୍ରିତ କାବ୍ୟର ଲକ୍ଷ୍ୟ ଚମତ୍କାର ସୃଷ୍ଟି । କିନ୍ତୁ ଶାସ୍ତ୍ର ତତ୍ତ୍ୱଦର୍ଶନରେ ଆଗ୍ରହୀ । କାବ୍ୟ ପରି ଶାସ୍ତ୍ର ଦୃଶ୍ୟମାନ ଜଗତକୁ ଯଥାଯଥ ଗ୍ରହଣ କରେ ନାହିଁ । ତାହାର ଅନ୍ତରାଳରେ ଥିବା ବାସ୍ତବିକତାକୁ ପର୍ଯ୍ୟବେକ୍ଷଣ କରିବା ପ୍ରୟାସ କରେ । ଶାସ୍ତ୍ରର ଲକ୍ଷ୍ୟ ସତ୍ୟ-ଅସତ୍ୟ, ନିତ୍ୟ-ଅନିତ୍ୟ ଆଦି ଅନ୍ୱେଷଣ ଓ ସାଂସାରିକ

ଅମିସଂକାଶମାକାଶଂ ଶବ୍ଦୋ ଦୂରାନୁପାତ୍ୟପୂମ୍ ।
ତଦେବ ବାପୀସିନ୍ଧୁନାମଦ୍ଧୋ ସ୍ଥେମା ମହାଛିଷଃ ।
ରୂପାଦିନାଂ ଯଥା ଦ୍ରବ୍ୟ ମାତ୍ରସ୍ୟା ନଶ୍ୟଶାତ ଚ ॥ ୩୪ ॥

ଇଷ୍ଟକାର୍ଯ୍ୟାଭ୍ୟୁପଗମଂ ପ୍ରତିଜ୍ଞାଂ ପ୍ରତିଜାନତେ ।
ଧର୍ମାର୍ଥକାମ କୋପାନାଂ ସମ୍ବନ୍ଧାତ୍‌ସା ଚତୁର୍ବିଧା ॥ ୩୫ ॥

---

ଦୁଃଖରୁ ମୁକ୍ତ ହେବା ମାର୍ଗ ପ୍ରଦର୍ଶନ । ଲକ୍ଷ୍ୟ ଭିନ୍ନ ହେତୁ ବିଷୟ ଭିନ୍ନ ହେବା ସ୍ୱାଭାବିକ । ଏଣୁ ନ୍ୟାୟଶାସ୍ତ୍ର ନିରୂପିତ ପ୍ରତିଜ୍ଞା ଆଦି କାବ୍ୟ ଉପଯୋଗୀ ପ୍ରତିଜ୍ଞା ଆଦିରୁ ଭିନ୍ନ ।

୩୪) **ଉଦାହରଣ—** ଆକାଶ ଖଣ୍ଡାପରି କୃଷ୍ଣବର୍ଣ୍ଣ ଅଟେ । ଶବ୍ଦ ଦୂରକୁ ଯାଏ । ନଦୀ ପୁଷ୍କରର ଜଳ ସର୍ବଦା ପ୍ରବାହିତ ହୁଏ । ମହାନ୍ ଜ୍ୟୋତି ପୁଞ୍ଜର ସ୍ଥୈର୍ଯ୍ୟ ଅଦ୍ଭୁତ ଅଟେ । ରୂପ ଆଦିର ବୃଦ୍ଧି ଦ୍ରବ୍ୟ ଅନୁସାରେ ହୁଏ ଓ ତାହା ନାଶ ଯାଏ ।

ଲୋକାଶ୍ରିତ କାବ୍ୟ ଓ ଶାସ୍ତ୍ର ମଧ୍ୟରେ ଥିବା ଭେଦ ଦୃଷ୍ଟିର ଉଦାହରଣ— ଲୌକିକ ବ୍ୟବହାରରେ ତତ୍ତ୍ୱ ଭିନ୍ନ ଭ୍ରାନ୍ତବସ୍ତୁ ମଧ୍ୟ ସ୍ୱୀକୃତି ଲାଭ କରେ । କିନ୍ତୁ ଶାସ୍ତ୍ର ତାହାକୁ ଗ୍ରହଣ କରେ ନାହିଁ । ଯଥା-ଆକାଶ ରଙ୍ଗହୀନ । ତଥାପି ସମସ୍ତେ ନୀଳ ବୋଲି କହନ୍ତି । କାବ୍ୟ ସେହି ଭ୍ରାନ୍ତ ନୀଳମାକୁ ତଥ୍ୟ ରୂପେ ଗ୍ରହଣ କରି ବର୍ଣ୍ଣନା କରେ । କିନ୍ତୁ ଶାସ୍ତ୍ର ସର୍ବଦା କହେ ଆକାଶ ବର୍ଣ୍ଣହୀନ । ସେହିପରି ଶବ୍ଦ ଗତି କରେ । ଏହା ତତ୍ତ୍ୱ ଦୃଷ୍ଟିରୁ ଅବାସ୍ତବ । କାରଣ ଶବ୍ଦର କ୍ରିୟାକାରିତା ନାହିଁ । ନଦୀଜଳ ଋତୁ ଅନୁସାରେ ବଢ଼େ ଓ ଝୁଡେ । କିନ୍ତୁ କବି ବର୍ଣ୍ଣନାରେ ନଦୀଜଳ ସର୍ବଦା ପ୍ରବାହିତ । କେବଳ ଏତିକି ନୁହେଁ, ନଦୀ ଜଳରେ ପଦ୍ମ ଫୁଟିବା ମଧ୍ୟ କବି ବର୍ଣ୍ଣନା କରେ । ସେହିପରି ପ୍ରକାଶ ଅସ୍ଥିର ଓ ପରିବର୍ତ୍ତନଶୀଳ । କାରଣ ପ୍ରକାଶର ଆଧାର ଯେପରି ଜଳେ, ସେହିପରି ପ୍ରକାଶରେ ପରିବର୍ତ୍ତନ ଘଟେ । ଅର୍ଥାତ୍ ରୂପକର୍ମିତ୍ୱ ଆଦିର ସ୍ଥିତି ଆଶ୍ରିତ ଦ୍ରବ୍ୟ ଅନୁସାରେ ବଦଳେ—ନାଶ ମଧ୍ୟ ଯାଏ । କିନ୍ତୁ କବି ପ୍ରକାଶକୁ ସ୍ଥିର ରୂପେ ବର୍ଣ୍ଣନା କରେ । ଅତଏବ କାବ୍ୟ ଓ ଶାସ୍ତ୍ରର ଦୃଷ୍ଟି ଭିନ୍ନ । ତେଣୁ ବର୍ଣ୍ଣନୀୟ ବିଷୟ ମଧ୍ୟ ଭିନ୍ନ ।

୩୫) **ପ୍ରତିଜ୍ଞା—** ଅଭିମତ କାର୍ଯ୍ୟକୁ ସମ୍ପନ୍ନ କରିବା ପାଇଁ ଯେଉଁ ସଙ୍କଳ୍ପ କରାଯାଏ, ତାହାକୁ ପ୍ରତିଜ୍ଞା କହନ୍ତି । ଏହି ପ୍ରତିଜ୍ଞା ଧର୍ମ, ଅର୍ଥ, କାମ ଓ କୋପମୂଳକ ହେତୁ ଏହା ଚତୁର୍ବିଧ ।

ଲୋକାଶ୍ରିତ କାବ୍ୟରେ ପ୍ରଯୁକ୍ତ ପ୍ରତିଜ୍ଞା ଅନୁମାନର ପ୍ରତିଜ୍ଞା ଠାରୁ କିପରି ଭିନ୍ନ ତାହା ଏଠାରେ ପ୍ରଦର୍ଶିତ । ଲୋକାଶ୍ରୟୀ ପ୍ରତିଜ୍ଞାର ମୂଳରେ ଧର୍ମ, ଅର୍ଥ, କାମ ବା କୋପ ମଧ୍ୟରୁ କୌଣସି ଗୋଟିଏ କାରଣ ରହିଥାଏ । ତେଣୁ ଲୋକାଶ୍ରୟୀ ପ୍ରତିଜ୍ଞା ଧର୍ମ ମୂଳକ, ଅର୍ଥ ମୂଳକ, କାମ ମୂଳକ ଓ କୋପ ମୂଳକ ରୂପରେ ଚତୁର୍ବିଧ ।

ଜରାମେଷ ବିଭର୍ମୀତି ପ୍ରତିଜ୍ଞାୟ ପିତୁର୍ଯଥା ।
ତଥୈବ ପୂରୁଣାଭୂରି ସା ସ୍ୟାଦ୍ଧର୍ମନିବନ୍ଧନା ॥ ୩୬ ॥
ଉପଲପ୍ସ୍ୟେ ସ୍ୱୟଂ ସୀତାମିତି ଭର୍ତ୍ତୁର୍ନିଦେଶତଃ ।
ହନୂମତା ପ୍ରତିଜ୍ଞାୟ ସା ଜ୍ଞାତେତ୍ୟର୍ଥସଂଶ୍ରୟା ॥ ୩୭ ॥

---

ଧର୍ମ, ଅର୍ଥ ଓ କାମ ପୁରୁଷାର୍ଥ ହେବାରୁ ତାର ପ୍ରାପ୍ତି ପାଇଁ ପ୍ରତିଜ୍ଞା ଆବଶ୍ୟକ । କ୍ରୋଧକାମର ବିକାର ହେଲେ ମଧ୍ୟ କ୍ରୋଧର ଚରମ ଅବସ୍ଥାରେ ବ୍ୟକ୍ତି ଲୌକିକ ଲାଭର ଚିନ୍ତା କରେ ନାହିଁ । ତେଣୁ ତାହାକୁ ଅନ୍ୟତମ ପୁରୁଷାର୍ଥ ଭାବେ ଗ୍ରହଣ କରାଯାଇଛି । ଏହି ପ୍ରତିଜ୍ଞା ସ୍ଥଳ ବିଶେଷରେ ବାଧିତ ହୁଏ ଯଥା—ବେଦୋକ୍ତଧର୍ମ 'ପିତୃଦେବୋ ଭବ' ଏହି ଧର୍ମପାଳନ କରିବାରୁ ଯଯାତିଙ୍କ କାମ ବାଧିତ ହେଲା ।

୩୬) ଧର୍ମମୂଳକ ପ୍ରତିଜ୍ଞା—ମୁଁ ଏହି ବୃଦ୍ଧାବସ୍ଥାକୁ ଗ୍ରହଣ କରୁଅଛି । ପିତାଙ୍କ ନିକଟରେ ଏପରି ପ୍ରତିଜ୍ଞା କରି ପୁରୁ ପିତାଙ୍କ ବୃଦ୍ଧାବସ୍ଥାକୁ ଧାରଣ କଲେ ଏହା ଧର୍ମମୂଳକ ପ୍ରତିଜ୍ଞା ଅଟେ ।

ଶର୍ମିଷ୍ଠା ଗର୍ଭଜାତ ପୁରୁ ରାଜା ଯଯାତିଙ୍କ ପୁତ୍ର ଥିଲେ । ଯଯାତି ବୃଦ୍ଧ ହୋଇଯିବା ପରେ ମଧ୍ୟ ସାଂସାରିକ ସୁଖଭୋଗରେ ତୃପ୍ତ ହୋଇ ନଥିଲେ । ତେଣୁ ସେ ପୁତ୍ର ପୁରୁକୁ ବୃଦ୍ଧ ଅବସ୍ଥା ବଦଳରେ ଯୌବନ ମାଗିଲେ । 'ପିତୃଦେବୋ ଭବ' ଏହି ବଚନରେ ଶ୍ରଦ୍ଧା ରଖି ପିତାଙ୍କ ଅଭିଳାଷ ପୂରଣ ପାଇଁ ସେ ଯୌବନ ପ୍ରଦାନ କରି ପ୍ରଶଂସନୀୟ ଉଦାହରଣ ରଖି ଯାଇଛନ୍ତି । ମହାଭାରତର ଆଦିପର୍ବରେ ଏହି କଥା ସବିସ୍ତୃତ ବର୍ଣ୍ଣିତ ।

ଅନୁରୂପ ନିଦର୍ଶନ—ପିତାଦେଶ ପାଳିବାର ପୁତ୍ରର ଧରମ,
ସର୍ବଦେବତାରୁ ପିତା ଅଟନ୍ତି ପରମ ।
ସେ ମହାତପର ମୋତେ ମିଳିଛି ସମସ୍ତ
ଶୁଭବାଞ୍ଛାକର ମୋର୍ ବର୍ଦ୍ଧ ହେଉ ଅସ୍ତୁ । (ଅଯୋଧ୍ୟାଦୃଶ୍ୟ)

ରାଜ୍ୟତ୍ୟାଗୀ ରାମଙ୍କ ଏହି ଉକ୍ତି ଧର୍ମମୂଳକ ପ୍ରତିଜ୍ଞାର ଅନ୍ୟତମ ଉଦାହରଣ ।

୩୭) ଅର୍ଥମୂଳକ ପ୍ରତିଜ୍ଞା—ମୁଁ ନିଜେ ଅପହୃତା ସୀତାଙ୍କୁ ଠାବ କରିବି । ସ୍ୱାମୀ ରାମ ଓ ସୁଗ୍ରୀବଙ୍କ ନିକଟରେ ଏହିପରି ପ୍ରତିଜ୍ଞା କରି ହନୁମାନ ସୀତାଙ୍କ ସନ୍ଧାନ ପାଇଥିଲେ । ଏହା ଅର୍ଥସଂଶ୍ରୟା ପ୍ରତିଜ୍ଞା ଅଟେ ।

ଅର୍ଥର ତାତ୍ପର୍ଯ୍ୟ କେବଳ ଧନ ନୁହେଁ. ଲୌକିକ ଲାଭ ମଧ୍ୟ । ହନୁମାନଙ୍କ ଏହି ପ୍ରତିଜ୍ଞା ଅନ୍ତରାଳରେ ଥିଲା, ଉପକୃତ ହୋଇ ରାମ ପ୍ରିୟ ସୁଗ୍ରୀବଙ୍କ ମଙ୍ଗଳ କରିବେ । ଅନୁରୂପ ଉଦାହରଣ-ବୋଲେ ରଘୁବୀର ପୁଣି ଉଗ୍ରକେ, ବନ୍ଧ ପକାଇବି କାଲି ବାରିଧେ କୁନ୍ଦୁଳେ ଥିଲେ ସୀତା ଖୋଜାଇ, ବାନର ବଳେ ଆଣିବି ସେ କହି (ବୈଦେହି ୧୮ ୧୬)

ଏଠାରେ ରାମ ଓ ସୁଗ୍ରୀବଙ୍କ ପ୍ରତିଜ୍ଞା ଅର୍ଥସଂଶ୍ରୟା ଅଟେ ।

ଆହବିଷ୍ୟାମ୍ୟମୂନଦ୍ୟ ମହାସେନାତ୍ମଜାମିତ ।
କୃତ୍ୱା ପ୍ରତିଜ୍ଞାଂ ବତ୍ସେନ ହୃତେତ ମଦନାଶ୍ରୟା ॥ ୩୮ ॥

ଭ୍ରାତୃର୍ଭ୍ରାତୃବ୍ୟମୁନ୍ମଥ୍ୟ ପାସ୍ୟାମ୍ୟସ୍ୟାସୃଗାହବେ ।
ପ୍ରତିଜ୍ଞାପୂ ଯଥା ଭୀମସ୍ତଚକାରିବଶୋ ରୁଷା ॥ ୩୯ ॥

---

୩୮) **କାମମୂଳକ ପ୍ରତିଜ୍ଞା**—ମୁଁ ଆଜ ସେହି ମହାସେନାର କନ୍ୟା (ବାସବଦତ୍ତା)କୁ ହରଣ କରିବି । ଏହିପରି ପ୍ରତିଜ୍ଞା କରି ବତ୍ସରାଜ ସେ କନ୍ୟାକୁ ହରଣ କଲେ । ଏହା କାମ ମୂଳକ ପ୍ରତିଜ୍ଞା ଅଟେ ।

ବାସବଦତ୍ତା ପରି ସୁନ୍ଦରୀକୁ ପାଇବା ପାଇଁ ଉଦୟନଙ୍କ ଏହି ପ୍ରତିଜ୍ଞା କାମ ପ୍ରେରିତ ଥିଲା । ତେଣୁ ଏହି ପ୍ରତିଜ୍ଞା କାମ ମୂଳକ ଅଟେ ।

ଅନୁରୂପ ଯଥା— ମାତ୍ର ଜମ୍ବୁମୁଖୀ ପଯ୍ୟଃ ପୁଣି କୃତ ପ୍ରତିଜ୍ଞ ମନ,
ଯେତେ ବାରିଲେ ହେଁ ମାନନ୍ତି ନାହିଁ ସେ କେବେ ବାରଣ ।
ଉଷାଗତ ପ୍ରାଣ, ଉଷା ତାର ଧ୍ୟାନ ଉଷା ସେ ଗତି ।
ଉଷା ନଲଭିଲେ ପାରିବକ ପ୍ରାଣେ ତଳେ ବରତି । (ଉଷା-ଗ୍ରୀଧାନାଥ)

ଜମ୍ବୁନ୍ତର ଉଷା ପ୍ରାପ୍ତି କାମନା, ପ୍ରୟାସ ଓ ଲଭ କାମମୂଳକ ପ୍ରତିଜ୍ଞା ଅଟେ ।

୩୯) **କୋପ ମୂଳକ ପ୍ରତିଜ୍ଞା**—ମୋର ଦଦାପୁଅ ଭାଇ ଶତ୍ରୁ ଦୁଃଶାସନକୁ ମନ୍ଥନ କରି ଯୁଦ୍ଧରେ ତାର ରକ୍ତପାନ କରିବି । କ୍ରୋଧ ବିବଶ ଭୀମ ଏହିପରି ପ୍ରତିଜ୍ଞା କରି ତାକୁ କାର୍ଯ୍ୟରେ ପରିଣତ କଲେ । ଏହା କୋପମୂଳକ ପ୍ରତିଜ୍ଞା ଅଟେ ।

ଭ୍ରାତୃବ୍ୟର ଦୁଇଟି ଅର୍ଥ-ଦଦାପୁଅ ଭାଇ ଓ ଶତ୍ରୁ ।
ଭ୍ରାତୃବ୍ୟୌ ଭ୍ରାତୃଜ ଦ୍ୱିଷୌ । (ଅମରକୋଷ)
ଆହବ=ଯୁଦ୍ଧ, ଅସୃକ=ରକ୍ତ, ଉନ୍ମଥ୍ୟ=ମନ୍ଥନ କରି, ବଧ କରି ।

ଅନୁରୂପ ଯଥା— ଯେ ପାପ ପ୍ରଣୟେ ପାପୀ ଧରିଅଛୁ ଆଶ ।
ସେ ପାପ ପ୍ରଣୟେ ବ୍ୟାଜେ କରିବି ବିନାଶ । (କୀଚକବଧ)

ଏହା ଭୀମର ଉକ୍ତି । ଏଥିରେ ସୈରନ୍ଧ୍ରୀ (ଦ୍ରୌପଦୀ) ପ୍ରତି ଆସକ୍ତ କୀଚକକୁ ମାରିବା ପ୍ରତିଜ୍ଞା କରି ଭୀମ କାର୍ଯ୍ୟରେ ପରିଣତ କରିଥିଲେ । ତେଣୁ କୋପ ମୂଳକ ପ୍ରତିଜ୍ଞାର ଅନ୍ୟତମ ନିଦର୍ଶନ ।

୪୦) **ଅନ୍ୟାୟ ପ୍ରତିଜ୍ଞାର ନିଷେଧ**—ଉପର୍ଯ୍ୟୁକ୍ତ ଚାରି ପ୍ରକାର ପ୍ରତିଜ୍ଞା ବ୍ୟତୀତ ଅନ୍ୟ ପ୍ରତିଜ୍ଞା ପ୍ରୟୋଗ ଯୋଗ୍ୟ ନୁହେଁ । ପୁଣି ଏହି ଚତୁର୍ବିଧ ପ୍ରତିଜ୍ଞା ତ୍ୟାଗ ଯୋଗ୍ୟ ନୁହେଁ ।

କାର୍ଯ୍ୟୋଽନ୍ୟସ୍ତ ପ୍ରତିଜ୍ଞାୟାଃ ପ୍ରୟୋଗୋ ନ କଥଂଚନ ।
ପରିତ୍ୟାଗସ୍ତୁ କର୍ତ୍ତବ୍ୟୋ ନାଽସାଂ ଚତସୃଣାମପି ॥ ୪୦ ॥
ପ୍ରାୟୋପବେଶାୟ ଯଥା ପ୍ରତିଜ୍ଞାୟ ସୁଯୋଧନ ।
ରାଜ୍ୟାୟ ପୁନରୁତ୍ଥାବତି ଧର୍ମ ବିରୋଧିନୀ ॥ ୪୧ ॥
ଆହୂତୋ ନ ନିବର୍ତ୍ତେଽହଂ ଦ୍ୟୂତାୟେତି ଯୁଧିଷ୍ଠିରଃ ।
କୃତ୍ୱା ସନ୍ଧାଂ ଶକୁନିନା ଦଦେବେତ୍ୟର୍ଥବାଧିନୀ ॥ ୪୨ ॥

---

ଯେକୌଣସି ତୁଚ୍ଛ ବସ୍ତୁ ପାଇବା ପାଇଁ ପ୍ରତିଜ୍ଞା କରିବା ଅନୁଚିତ । କାରଣ ଏହାଦ୍ୱାରା ବ୍ୟକ୍ତିକ ଦୁର୍ବଳତା ପ୍ରକାଶ ପାଏ । ଯେଉଁଠି ପୁରୁଷାର୍ଥ ପ୍ରଦର୍ଶନର ଅବସର ଆସେ, ସେଇଠି ପ୍ରତିଜ୍ଞା ଶୋଭନୀୟ । ପ୍ରତିଜ୍ଞା ଭଙ୍ଗ ହେଲେ ପ୍ରତିଜ୍ଞାଭଙ୍ଗ ଦୋଷ ହୁଏ ।

୪୧) ଧର୍ମ ପ୍ରତିଜ୍ଞା ଭଙ୍ଗ—ଯେପରି ଅନଶନ ଦ୍ୱାରା ପ୍ରାଣତ୍ୟାଗ କରିବା ପ୍ରତିଜ୍ଞା କରି ରାଜ୍ୟ ପାଇଁ ଦୁର୍ଯ୍ୟୋଧନ ପ୍ରତିଜ୍ଞା ଭଙ୍ଗ କରିଥିଲେ ତାହା ଧର୍ମ ବିରୋଧିନୀ ପ୍ରତିଜ୍ଞା ଅଟେ ।

ପ୍ରାୟ=ଅନଶନ, ଉପବେଶ=ବସିବା ।

ଏହି କଥା ମହାଭାରତର ବନ ପର୍ବରେ ଲିଖିତ । ଦୁର୍ଯ୍ୟୋଧନ ଗନ୍ଧର୍ବଙ୍କ ସହିତ ଯୁଦ୍ଧରେ ପରାଜିତ ଓ ବନ୍ଦୀ ହେଲେ । ସେଥିରୁ ମୁକ୍ତ ହେବା ପାଇଁ ପାଣ୍ଡବଙ୍କ ସାହାଯ୍ୟ ନେଇଥିଲେ । ଅର୍ଜ୍ଜୁନ ତାହାଙ୍କୁ ମୁକ୍ତ କଲେ । ଦୁର୍ଯ୍ୟୋଧନ ନିଜର ଏହି ଦୁରବସ୍ଥା ଲାଗି ଜୀବନ ପ୍ରତି ବୀତସ୍ପୃହ ହୋଇ ଦୁଃଶାସନଙ୍କୁ ରାଜ୍ୟ ପ୍ରଦାନ କରି ଅନଶନ କଲେ । କିନ୍ତୁ ଆତ୍ମୀୟଙ୍କ ଅନୁରୋଧରେ ଅନଶନ ବ୍ରତ ଭଙ୍ଗକରି ହସ୍ତିନାପୁର ଫେରି ଆସିଲେ ।

ପ୍ରତିଜ୍ଞା ଭଙ୍ଗ କରିବା ଅର୍ଥ ସତ୍ୟ ବା ଧର୍ମରୁ ବିମୁଖ ହେବା । ଏ ଧରଣର ଆଚରଣ ଧର୍ମ ପ୍ରତିଜ୍ଞାଭଙ୍ଗ ନାମରେ ପରିଚିତ ।

ଅନୁରୂପ ଯଥା—ଗଙ୍ଗା ବୋଇଲେ ତୁ ବୋଲିଥିଲୁ ଆଦ୍ୟରେ,
ଗାଙ୍ଗୀ ବୋଇଲେ ନ ଆଇଷି ପୁରୀରେ ମୋର ଦ୍ୱାରେ ।
ଶାନ୍ତନୁ ବୋଇଲେ ଯେ ମୋହର ସତ୍ୟ କଥା,
ଅନେକ ଦୋଷ କଲେ ସହିବି ତୋତେ ହୋଇବି ଭଗତା ।

(ସାରଳା ଆଦିପର୍ବ)

× × × ×

ଗଙ୍ଗାର ହାଥ ଯେ ଧଇଲେ ଶାନ୍ତନୁ,
ଆଲେ ଗାଙ୍ଗୀ କେତେ ପୁତ୍ର ନାଶ କଲୁ କିନୁ (ତତ୍ରୈବ)
ଶାନ୍ତନୁଙ୍କ ସତ୍ୟଭଙ୍ଗ ଧର୍ମ ବିରୋଧିନୀ ପ୍ରତିଜ୍ଞା ଅଟେ ।

ଅଦ୍ୟାରଭ୍ୟ ନବସ୍ୟାମି ମୂନବଦ୍‌ବଚନାଦନ୍ତ ।
ପିତୁଃ ପ୍ରିୟାସ୍ତୁ ଯାଂ ଖ୍ୟାତିଷ୍ଟଭେ ସା କାମବାଧିନୀ ॥ ୪୩ ॥
ଅଦ୍ୟାଜଦ୍ଦ୍ୟଥା ରାମଃ ସତ୍ୱକ୍ଷସବଧ୍ୟାଶ୍ରୟାମ ।
ଜାମଦଗ୍ନ୍ୟଂ ଯୁଧା ଜତ୍ୱା ସା ଜ୍ଞେୟା କୋପବାଧିନୀ ॥ ୪୪ ॥

---

୪୨) **ଅର୍ଥବାଧିନୀ ପ୍ରତିଜ୍ଞା** — ଜୁଆ ଖେଳିବାକୁ ମତେ (ଧୃତରାଷ୍ଟ୍ର) ଡାକିଲେ, ମୁଁ ଅନାଗ୍ରହ ପ୍ରକାଶ କରିବ ନାହିଁ । ଏହିପରି ପ୍ରତିଜ୍ଞା କରି ଯୁଧିଷ୍ଠିର ଶକୁନି ସହିତ ପଶା ଖେଳିଲେ । ଏହା ଅର୍ଥବାଧିନୀ ପ୍ରତିଜ୍ଞା ।

ଏଠାରେ ପ୍ରଶ୍ନ ଉଠିପାରେ - ଯୁଧିଷ୍ଠିର ପ୍ରତିଜ୍ଞା ରକ୍ଷା କରିଛନ୍ତି । ଏହାକୁ କିପରି ଅର୍ଥବାଧିନୀ ପ୍ରତିଜ୍ଞା କୁହାଯିବ ? ଉତ୍ତର - ଯୁଧିଷ୍ଠିରଙ୍କ ଏହି ଅବାଞ୍ଛନୀୟ ପ୍ରତିଜ୍ଞା ଫଳରେ ରାଜ୍ୟ, ଧନାଦି ହରାଇଲେ । ଏକେତ ଜୁଆଖେଳ ଗର୍ହିତ ଦୁର୍ବ୍ୟସନ, ଦ୍ୱିତୀୟରେ ମହନୀୟ ଉଦ୍ଦେଶ୍ୟହୀନ । ପୁଣି କପଟୀ ସହିତ କ୍ରୀଡାରେ ପରାଜୟ ବ୍ୟତୀତ କ'ଣ ଲାଭ ହେବ ? ତେଣୁ ଏହା ଅର୍ଥବାଧିନୀ ପ୍ରତିଜ୍ଞା ।

ଅନୁରୂପ ଯଥା — ମାଗୁଛି ରସିକ ସୁନ୍ଦରୀମଣିକ ଛଳେ ବଳେ କହୁଥିଲେ ।
ବାନ୍ଧି ରଖିଦେବ ପ୍ରଣୟ ଫାଶରେ ଗ୍ରୀମୁଙ୍କ ଚରଣ ତଳେ । (କୀଚକବଧ)
କାମୁକ କୀଚକ ନିକଟରେ ଅର୍ଥଲୋଭୀ ଦାସୀର ଏହି ପ୍ରତିଜ୍ଞା ଅର୍ଥବାଧିନୀ ଅଟେ ।

୪୩) **କାମବାଧିନୀ ପ୍ରତିଜ୍ଞା** — ଆଜିଠାରୁ ମୁଁ ବ୍ରହ୍ମଚାରୀଙ୍କ ପରି ରହିବି । ପିତାଙ୍କ ପ୍ରସନ୍ନତା ପାଇଁ ଭୀଷ୍ମଙ୍କ ଏହି ପ୍ରତିଜ୍ଞା କାମବାଧିନୀ ଅଟେ ।

ଭୀଷ୍ମଙ୍କ ଏହି ପ୍ରତିଜ୍ଞା ଫଳରେ ମନୁଷ୍ୟର ସହଜାତ କାମବୃତ୍ତିରେ ବାଧା ସୃଷ୍ଟି ହେଉଥିବାରୁ ଏହା କାମ ବିରୋଧିନୀ ଅଟେ ।

ନିଜ ପିତା ଶାନ୍ତନୁ ସତ୍ୟବତୀ ସହିତ ବିବାହ କରିବା ଇଚ୍ଛା ବ୍ୟକ୍ତ କରିବାରୁ ଭୀଷ୍ମ ଯେଉଁ ଆଜୀବନ ବ୍ରହ୍ମଚର୍ଯ୍ୟ ପାଳନ ପ୍ରତିଜ୍ଞା କଲେ ତାହା ମହାଭାରତର ଆଦି ପର୍ବରେ ଉଲ୍ଲିଖିତ ।

ଅନୁରୂପ ଯଥା — ନିତ୍ୟେ ତାକୁ ପତ୍ନୀ ରୂପେ ସେବାଇବି ପାଦ ।
କେ ରଖିବ ରକ୍ଷ ଆସି ଲଗାଇ ବିବାଦ ।
କାମ ଯୁଦ୍ଧେ ନକଲେ ମୁଁ ସୈରନ୍ଧ୍ରୀକି ରଥ ।
ନରଖିବ ସ୍ୱୀୟ ପ୍ରାଣ ଏ ଦୃଢ଼ ଶପଥ । (କୀଚକବଧ)

କୀଚକର ଏ ପ୍ରତିଜ୍ଞା ଅପୂର୍ଣ୍ଣ ରହିବା ହେତୁ ଏହା କାମ ବିରୋଧିନୀ ପ୍ରତିଜ୍ଞା ଅଟେ ।

ଅଥାଭ୍ୟୁପଗମପ୍ରାପ୍ତିଃ ସନ୍ଧାଭ୍ୟୁପଗମାଦ୍‌ବିନା ।
ଅନୁକ୍ତମପି ଯତ୍ରାର୍ଥାଦଭ୍ୟୁପେତ ଯଥୋଚ୍ୟତେ ॥ ୪୫ ॥

କମିନ୍ଦ୍ର ପୂର୍ବ୍ବିଷ୍ଟା ଜ୍ଞେୟଂ କୋ ନରଜିତ୍ୟତେଽରିଭିଃ ।
କୋ ବା ତତ୍ତରମର୍ଥ୍ୟଭ୍ୟୋ ନ ଯଚ୍ଛତ ଧନଂ ଲଘୁ ।
କମତ୍ୟସ୍ତୁ ଯଃ କ୍ଷେପଃ ସୌକର୍ଯଂ ଦର୍ଶୟତ୍ୟସୌ ॥ ୪୬ ॥

---

୪୪) **କୋପବାଧିନୀ ପ୍ରତିଜ୍ଞା**— ସମସ୍ତ କ୍ଷତ୍ରିୟଙ୍କୁ ବଧ କରିବ । ଏହି ପ୍ରତିଜ୍ଞା ପରଶୁରାମ କରିଥିଲେ । କିନ୍ତୁ ରାମଚନ୍ଦ୍ର ତାହାଙ୍କୁ ଜିଣିଯିବା ଫଳରେ ତାଙ୍କର ଏ ପ୍ରତିଜ୍ଞା ଭଙ୍ଗ ହୋଇଥିଲା । ଏହା କୋପବାଧିନୀ ପ୍ରତିଜ୍ଞା ଅଟେ ।

ଅନୁରୂପ ନିଦର୍ଶନ - ବାସବାରି, ବେଗେ ଆସି ଆରମ୍ଭି ଗଲେ ।
ବୋଲେ ରହେ ଏ ପଦ ମୃତ୍ୟୁ ସ୍ଥାନକୁ ପଡ, ଜାଣେ ଦୁର୍ଗମ ଦୁର୍ଗ କୋଳ ।
(ବୈ-ବି.୪୬.୯) ଲକ୍ଷ୍ମଣଙ୍କୁ ମାରିବା ପାଇଁ ଇନ୍ଦ୍ରଜିତର ପ୍ରତିଜ୍ଞା ଭଙ୍ଗ ହେତୁ ଏହା କୋପବାଧିନୀ ପ୍ରତିଜ୍ଞା ଅଟେ ।

୪୫) **ଆର୍ଥୀ ପ୍ରତିଜ୍ଞା**— ଏହାପରେ ପ୍ରତିଜ୍ଞା ନଥାଇ ଇଷ୍ଟଲାଭ ବିଷୟ ବୁଝାଯିବ । ଏହା ଶବ୍ଦରେ ଅନୁକ୍ତ ହେଲେ ମଧ୍ୟ ଅର୍ଥରୁ ପ୍ରତିଜ୍ଞାବୋଧ ହେଉଥିବ ।

ଘୃର ପ୍ରକାର ପ୍ରତିଜ୍ଞାର ସ୍ୱରୂପ ନିର୍ଣ୍ଣୟ ପରେ ଭାମହ କହନ୍ତି—ପ୍ରତିଜ୍ଞା ଶବ୍ଦତଃ ଏବଂ ଅର୍ଥତଃ ଏପରି ଦୁଇ ପ୍ରକାର ଅଟେ । ଯେଉଁଠି ସ୍ପଷ୍ଟ ଶବ୍ଦରେ ନିର୍ଦ୍ଦେଶ ଥାଏ, ସେଇଠି ଶାବ୍ଦୀ ପ୍ରତିଜ୍ଞା ହୁଏ । ବିନା କଥନରେ ଅର୍ଥରୁ ପ୍ରତିଜ୍ଞାର ଆକ୍ଷେପ ହେଲେ ତାହା ଆର୍ଥୀ ପ୍ରତିଜ୍ଞା । ଉପର୍ଯ୍ୟୁକ୍ତ ସମସ୍ତ ପ୍ରତିଜ୍ଞା ଶାବ୍ଦୀ ପ୍ରତିଜ୍ଞା ଅଟେ ।

ସନ୍ଧା=ପ୍ରତିଜ୍ଞା, ଅଭ୍ୟୁପଗମ=ସ୍ୱୀକାର ଅର୍ଥାତ୍‌ ଶବ୍ଦ ଦ୍ୱାରା ପ୍ରତିଜ୍ଞା ଗ୍ରହଣ । ଅଭ୍ୟୁପଗମପ୍ରାପ୍ତି=ସ୍ୱୀକୃତ (ସଂକଳ୍ପିତ)ର ପ୍ରାପ୍ତି ।

୪୬) **ଉଦାହରଣ**— ଜିତେନ୍ଦ୍ରିୟ କ'ଣ ଜାଣିବା ଦରକାର ? (ବ୍ରହ୍ମ) ଶତ୍ରୁ ଦ୍ୱାରା କିଏ ପରାଜିତ ହୁଏ । (ଦୁର୍ବଳ) କେଉଁ ଅନୁଦାର ଯାଚକଙ୍କୁ ଶୀଘ୍ର ଧନ ଦିଏ ନାହିଁ ? (କୃପଣ) ଏହି ଯେଉଁ ଆକ୍ଷେପ ତାହା ସୁଗମତାକୁ ହିଁ ବ୍ୟକ୍ତ କରେ ।

ଏଠାରେ ପ୍ରଶ୍ନ ସହାୟତାରେ ପ୍ରତିଜ୍ଞା ପ୍ରତୀତ ହେବାରୁ ଏହା ଆର୍ଥୀ ପ୍ରତିଜ୍ଞା । ଯଥା—ମୁଁ ବ୍ରହ୍ମକୁ ଜାଣିବି । ମୁଁ ଦୁର୍ବଳ ହେବି ନାହିଁ । ଯାଚକକୁ ଅବଶ୍ୟ ଦାନ ଦେବି । ଯେହେତୁ ଏ ସମସ୍ତ ପ୍ରତିଜ୍ଞା ଅର୍ଥରୁ ପ୍ରତୀତ ହୁଏ, ତେଣୁ ଏହା ଆର୍ଥୀ ପ୍ରତିଜ୍ଞା ଅଟେ ।

ହେତୁସ୍ତ୍ରିଲକ୍ଷ୍ଣୈକ ମତଃ କାବ୍ୟେଷ୍ୱପି ସୁମେଧସାମ୍ ।
ଅନ୍ୱୟବ୍ୟତରେକୌହି କେବଲାବର୍ଥସିଦ୍ଧୟେ ॥ ୪୭ ॥

ଯଥାଽଭିତୋ ବନାଭୋଗମେତଦସ୍ତି ମହତ୍ସରଃ ।
କୂଜନାତ୍କୁରରୀଣାଂ ଚ କମଲାନାଂ ଚ ସୌରଭାତ୍ ॥ ୪୮ ॥

ଅନ୍ୟଧର୍ମୋଽପି ତତ୍ସିଦ୍ଧିଂ ସମ୍ବନ୍ଧେନ କରୋତ୍ୟୟମ୍ ।
ଧୂମାଦଭ୍ରଂକଷାଦସାଗ୍ନେଃ ପ୍ରଦେଶସ୍ୟାନୁମାନବ ॥ ୪୯ ॥

---

ଅନୁରୂପ ଯଥା—ହୃଣ୍ଡକରେ କସ ଶୋଭିତ, ଧ୍ୱଜେ କେ ହୁଏ ଭିନ୍ନ ।
କାମେ କାମୁକ କ କରନ୍ତ, ଶ୍ରମ କାହିଁ ଶୋଭନ ।
କେ ବରଜସ୍ତଜ, ସଂସାର କରତା କେ ଅଟଇ ? (ଲ-ବ ୭-୪୯, ୫୦)

ଉତ୍ତର—କେ ଭଜେ କମଲରଥାଙ୍ଗଦର ଗଦାନନ୍ଦକ ।

୪୭) **ହେତୁ**— ଉନ୍ନତ କବିଙ୍କ କାବ୍ୟରେ ତିନି ଲକ୍ଷଣ ଯୁକ୍ତ ହେତୁ ଗ୍ରହଣୀୟ । କାରଣ ଅନ୍ୱୟ, ବ୍ୟତରେକ ଦ୍ୱାରା ହିଁ ଅର୍ଥ (ସାଧ୍ୟ)ର ସିଦ୍ଧି ଘଟେ ।

ବହୁବାର ପ୍ରତିପାଦିତ ହୋଇଅଛି ଯେ, ଅନୁମାନରେ ଯେଉଁ ହେତୁ (ସାଧନ) **ତିନିଗୁଣ ବିଶିଷ୍ଟ** ଅଟେ ଯଥା-ପକ୍ଷଧର୍ମତ୍ୱ, ସପକ୍ଷସତ୍ତ୍ୱ ଓ ବିପକ୍ଷବ୍ୟାବୃତ୍ତି କାବ୍ୟରେ ମଧ୍ୟ **ସେହି ବିଶିଷ୍ଟ** ହେତୁ ରହିବା ଉଚିତ ।

ସାଧ୍ୟକୁ ସିଦ୍ଧ କରିବା ହେତୁର ପ୍ରୟୋଜନ ଅଟେ । ଯଥା ଧୂଆଁ (ହେତୁ) ଦ୍ୱାରା ଅଗ୍ନି (ସାଧ୍ୟ) ରହିବା ସିଦ୍ଧ ହୁଏ । ଯେଉଁଠି ଯେଉଁଠି ଧୂଆଁ ସେଇଠି ସେଇଠି ଅଗ୍ନି ଅବଶ୍ୟ ରହେ । (ଅନ୍ୱୟ) ଏବଂ ଯେଉଁଠି ଧୂଆଁ ନାହିଁ ସେଇଠି ନିଆଁ ରହେ ନାହିଁ । (ବ୍ୟତରେକ) ଶାସ୍ତ୍ରପରି ଲୌକିକ ଦୃଷ୍ଟିରେ ମଧ୍ୟ ଅନ୍ୱୟ ବ୍ୟତିରେକ ଅବଶ୍ୟ ଗ୍ରହଣୀୟ । ତେଣୁ କାବ୍ୟ ହେତୁ ଓ ଶାସ୍ତ୍ର ହେତୁ ମଧ୍ୟରେ କୌଣସି ପ୍ରଭେଦ ନାହିଁ ।

୪୮) **ଉଦାହରଣ**— ଯଥା-କୁରରୀର କୂଜନ ଏବଂ କମଳର ସୌରଭରୁ ଜଣାଯାଏ ଯେ, ଏହି ବନଭୂମିରେ ବିଶାଳ ସରୋବର ଅବସ୍ଥିତ ।

କୁରରୀ ଜଳଚର ପକ୍ଷୀବିଶେଷ ଏବଂ କମଳ ଜଳରୁ ହିଁ ଜନ୍ମ ହୁଏ । କୁରରୀ କୂଜନ ଓ କମଳ ସୌରଭ ହେତୁ ଅଟେ । ଯାହାଦ୍ୱାରା ସରୋବର ସ୍ଥିତିର ଅନୁମାନ ହୁଏ ।

ଆଭୋଗ=ବିସ୍ତାର, ବନାଭୋଗ=ବନର ବିସ୍ତାର ।

୪୯) ଅନ୍ୟ [କୁରରୀ ଓ କମଳ]ର ଧର୍ମ [କୂଜନ ଓ ସୌରଭ] ମଧ୍ୟ ତାହା [ସରୋବର]ର ସମ୍ବନ୍ଧରୁ କରାଏ । ଯେପରି ଆକାଶସ୍ପର୍ଶୀ ଧୂମ ଦ୍ୱାରା ପ୍ରଦେଶଟି ଅଗ୍ନିଯୁକ୍ତ ବୋଲି ଅନୁମାନ କରାଏ ।

ଅପୃଥକ୍‌କୃତସାଧ୍ୟୋଽପି ହେତୁସ୍ତାଦ୍ ପ୍ରଜ୍ୟୁତେ ।
ଅନ୍ୱୟବ୍ୟତିରେକାଭ୍ୟାଂ ବିନେ ବାର୍ଥଗତିର୍ଯଥା ॥ ୫୦ ॥

---

ଅନୁମାନ ସମ୍ବନ୍ଧୀ ଶଙ୍କାର ସମାଧାନ ଏଥିରେ କରାଯାଇଛି । ପ୍ରଶ୍ନ ଉଠେ-ସାଧନ ସାଧ୍ୟର ଧର୍ମ ହେଲେ ଅନୁମାନ ସିଦ୍ଧ ହୁଏ । ଯେପରି ଧୂଆଁ ନିଆଁର ଧର୍ମ ଅଟେ । ତେଣୁ ଧୂଆଁ ଦେଖି ନିଆଁ ଥିବା ଅନୁମାନ କରାଯାଏ । କିନ୍ତୁ ଏଠାରେ କୂଜନ ଓ ସୌରଭ କୁରଙ୍ଗ ଓ କମଳର ଧର୍ମ ଅଟେ, ସରୋବରର ନୁହେଁ । ଅତଏବ ଅନ୍ୟର ଧର୍ମ ଦ୍ୱାରା ଅପରର ଅନୁମାନ କପରି ହେବ ? ଉତ୍ତର-ସରୋବର କୁରଙ୍ଗ ଓ କମଳର ଅଧିକରଣ । ଅର୍ଥାତ୍ ସେମାନେ ସରୋବରରେ ରହନ୍ତି । ବିନା ଜଳରେ କୁରଙ୍ଗ ବା କମଳ ରହିବା ସମ୍ଭବ ନୁହେଁ । ତେଣୁ ଅନାୟାସ ଅନୁମାନ ହୁଏ ଯେ, ଏଠାରେ ଜଳାଶୟ ଅଛି । କୂଜନ ଓ ସୌରଭ କୁରଙ୍ଗ ଓ କମଳର ଧର୍ମ ହେଲେ ମଧ୍ୟ ପରମ୍ପରାରେ ସରୋବରରେ ଆରୋପିତ ହୋଇଯାଏ ।

ଧୂଆଁ ଦେଖି ନିଆଁର ଅନୁମାନ ହୁଏ, ଯେହେତୁ ଧୂଆଁ ନିଆଁର ଧର୍ମ । କିନ୍ତୁ ନିଆଁ ସହିତ ସେହି ସ୍ଥାନର ମଧ୍ୟ ଅନୁମାନ ହୁଏ ନାହିଁକି ? ଉପର ଉଠିବା ଧୂଆଁକୁ ଦେଖି ନିମ୍ନରେ ଥିବା ଅଗ୍ନିଯୁକ୍ତ ସ୍ଥାନର ମଧ୍ୟ ପ୍ରତୀତ ହୁଏ । ତେଣୁ ଉପଯୁକ୍ତ ଅନୁମାନରେ ଅସଗତି ନାହିଁ ।

୫୦) **ବୈୟଧିକରଣରେ ହେତୁ ନିର୍ଦ୍ଦେଶ**— ସାଧ୍ୟର ପୃଥକ ନିର୍ଦ୍ଦେଶ ନଥାଇ ମଧ୍ୟ ହେତୁ ଦେଖାଯାଏ । ଯେପରି ସ୍ଥଳରେ ଅନ୍ୱୟ ବ୍ୟତିରେକ ନଥାଇ ସୁଦ୍ଧା ଅର୍ଥବୋଧ ହୋଇଯାଏ ।

ଶ୍ରୀମଦ୍ ଏହି କାରିକାରେ କହିବାକୁ ଚାହାନ୍ତି-ତର୍କଶାସ୍ତ୍ରୀୟ ଅଭିବ୍ୟଂଜନା ପ୍ରଣାଳୀର ଅକ୍ଷରଶଃ ଅନୁସରଣ କାବ୍ୟ ପାଇଁ ନିତାନ୍ତ ଆବଶ୍ୟକ ନୁହେଁ । କାବ୍ୟର ଅଭିବ୍ୟଂଜନା ଓ ତର୍କଶାସ୍ତ୍ରର ଅଭିବ୍ୟଂଜନା ଭିନ୍ନ ଅଟେ । କବିର ଉକ୍ତି ଯୁକ୍ତିସଂଗତ ହେଲେ ଯଥେଷ୍ଟ ।

ହେତୁ ନିର୍ଦ୍ଦେଶ ସମାନ ବିଭକ୍ତିକ ବା ଭିନ୍ନ ବିଭକ୍ତିକ ହୋଇପାରେ । ଯଥା- ସମାନ ବିଭକ୍ତିକ-ପର୍ବତଃ ବହ୍ନିମାନ ସଧୂମଃ । ଏଥିରେ ପକ୍ଷପର୍ବତ ଓ ହେତୁ ଧୂମ ପ୍ରଥମା ବିଭକ୍ତି । ବୈୟଧିକରଣ ବିଭକ୍ତିକ-ପର୍ବତଃ ବହ୍ନିମାନ୍ ଧୂମବତ୍ତ୍ୱାତ୍ । ଏଥିରେ ପକ୍ଷପର୍ବତ ପ୍ରଥମା ଓ ହେତୁ ଧୂମ ପଞ୍ଚମୀ । କିନ୍ତୁ ହେତୁ ନିର୍ଦ୍ଦେଶର ପ୍ରଚଳିତ ପ୍ରଣାଳୀ ବୈୟଧି-କରଣ୍ୟ ଅଟେ । ଯଦି କେହି ଚାହେଁ ତେବେ ସମାନାଧିକର ଅର୍ଥାତ୍ ଏକ ବିଭକ୍ତିରେ ପ୍ରୟୋଗ କରିପାରେ । ଅନ୍ୱୟ ବ୍ୟତିରେକର ଉପଯୋଗିତା ବିଷୟକୁ ସ୍ପଷ୍ଟ କରିବାରେ ରହିଛି । କିନ୍ତୁ ତାର ଅଭାବରେ ଯେ ଅର୍ଥବୋଧ ହୁଏ ନାହିଁ, ଏପରି ନୁହେଁ । ଏହି କାରିକାରୁ ଦୁଇଟି ବିଷୟ ସ୍ପଷ୍ଟ ହୁଏ ।

ସାପ୍ରସାଗା ନଶା ଜଙ୍କେ ବ୍ୟପଭୂଷ୍ଣଦ୍ଦବାକବ୍ ।
ହେତୁଃ ପ୍ରସାପସାପଭ୍ନମପକୃତୌ ରବେବରଢ ॥ ୫୧ ॥

ତସ୍ୟାପି ସୁଧ୍ୟପ୍ୱାମିଷ୍ଟା ଦୋଷାଃ ପାଗୁଦ୍ଦତାସ୍ତ୍ର ପ୍ୱଃ ।
ଅଜ୍ଞାନସଂଶୟଜ୍ଞାନ ବପର୍ଯ୍ୟୟକୃତୋ ଯଥା ॥ ୫୨ ॥

କାଶା ହରନ୍ତ ହୃଦୟମମୀ କୁସୁମ ସୌରଭାତ୍ ।
ଅପାମଭ୍ୟର୍ଣ୍ଣବର୍ତ୍ତିତା ଦେଚେ ଜ୍ଞେୟାଃ ଶବରବଃ ॥ ୫୩ ॥

---

୧) କବ ଇଚ୍ଛିଲେ, ହେତୁ ନର୍ଦେଶ ସମାନ ବଭକ୍ତି ବା ଅସମବଭକ୍ତିରେ କରପାରନ୍ତି ।

୨) କବଙ୍କ ପକ୍ଷରେ ଦୃଷ୍ଟାନ୍ତ ଦେବା ବେଳେ ଅନ୍ୱୟ ବ୍ୟତିରେକର ପ୍ରୟୋଗ ଅନବାର୍ଯ୍ୟ ନୁହେ ।

୫୧) **ଉଦାହରଣ**—ସର୍ବର ସାପ୍ତ ସାପରୁ ସୂର୍ଯ୍ୟଙ୍କ ଅସ୍ତହେବା ଜ୍ଞାତ ହେଲା । ଏଠାରେ ଜ୍ଞାପକ କାରଣ ଅଟେ ।

ଏହ ଉଦାହରଣ ହେତୁ ନର୍ଦେଶ ସମାନବଭକ୍ତିରେ ରହଛୁ । ପଷ ହେତୁ ପ୍ରଥମା ବଭକ୍ତି ସାପୃସାପ ହେତୁ ଅଟେ ଓ ବ୍ୟପଭୂଷ ଦବାକର ପକ୍ଷ ଅଟେ । ଏଠାରେ ହେତୁ ନର୍ଦେଶ ବ୍ୟାଧିକରଣ ନ ହୋଇଥିଲେ ମଧ୍ୟ କ୍ଷତି ନାହିଁ, ଏହା ଦେଖାଇବା ଗ୍ରନ୍ଥକାରଙ୍କ ଉଦ୍ଦେଶ୍ୟ । ଅସମବଭକ୍ତିକ ହେତୁ ନର୍ଦେଶ ହୋଇଥିଲେ ବାକ୍ୟର ରୂପ ହୁଅନ୍ତା ସାପ୍ତ-ସାପତ୍ୱାତ୍ ନଶା ବ୍ୟପଭୂଷ ଦବାକର୍ବି ଜଙ୍କେ ।

୫୨) **କାବ୍ୟ ହେତୁର ଦୋଷ** — ପଣ୍ଡିତମାନେ କାବ୍ୟହେତୁରେ ମଧ୍ୟ ତିନ ପ୍ରକାର ଦୋଷ ଦର୍ଶନ କରନ୍ତି । ଯଥା-ଅଜ୍ଞାନ, ସଂଶୟ ଜ୍ଞାନ ଓ ବପର୍ଯ୍ୟୟ ।

ଅନୁମାନର ହେତୁରେ ଯେପରି ଦୋଷ ରହଛୁ, ସେହପରି କାବ୍ୟହେତୁରେ ମଧ୍ୟ ନିବଧ ଦୋଷ ଦେଖାଯାଏ । ଯଦ ହେତୁ (ସାଧନ) ପକ୍ଷରେ ନରହେ, ତେବେ ଅଜ୍ଞାନ, ବପକ୍ଷରେ ନରହଲେ ସଂଶୟ ଜ୍ଞାନ ଏବଂ ସପକ୍ଷରେ ନରହଲେ ବପର୍ଯ୍ୟୟ ଦୋଷ ଉତ୍ପନ୍ନ ହୁଏ । ଅଗ୍ରୀମ ଦୁଇଟି କାରକାରେ ଏ ସମସ୍ତ ଦୋଷର ଉଦାହରଣ ପ୍ରଦତ୍ତ ।

୫୩) **ଅଜ୍ଞାନ ଓ ସଂଶୟ ଜ୍ଞାନର ଉଦାହରଣ**— ଏହ କାଶ ଜଳ ପୁଷ୍ପ ସୌରଭରେ ହୃଦୟକୁ ହରଣ କରେ । ଜଳ ନକଟରେ ରହଥିବା ହେତୁ ଜଣାଯାଏ ଯେ, ଏଗୁଡକ ଶବର (ପକ୍ଷୀବଶେଷ) ଅଟନ୍ତି ।

କାରକାର ପୂର୍ବାର୍ଦ୍ଧଟି ଅଜ୍ଞାନର ଉଦାହରଣ ଓ ଉତ୍ତରାର୍ଦ୍ଧଟି ସଂଶୟ ଜ୍ଞାନର ଉଦାହରଣ । କାଶପୁଷ୍ପ ସୁଗନ୍ଧଯୁକ୍ତ ନୁହେ । ତଥାପି ତାର ଉଲ୍ଲେଖ ଅଜ୍ଞାନକୃତ । ଜଳ

ଅସୌ ଶୁକ୍ଳାନ୍ତନେତ୍ରତ୍ୱାଚ୍ଚକୋର ଇତି ଗୃହ୍ୟତାମ୍ ।
ଭୂଲ୍ଲଜାତାବଦୃଷ୍ଟତ୍ୱାତ୍ ସାଧ୍ୟପ୍ରତ୍ୟଚକୋରତାମ୍ ॥ ୫୪ ॥

ଉକ୍ତସ୍ୟାର୍ଥସ୍ୟ ଦୃଷ୍ଟାନ୍ତଂ ପ୍ରତିବସ୍ତୁନିଦର୍ଶନମ୍ ।
ନନୂପମାନୁମୈବାସ୍ତୁ ନ ହେତ୍ୱନଭିଧାନତଃ ॥ ୫୫ ॥

ସାଧ୍ୟସାଧନୟୋରୁକ୍ତିରୁକ୍ତାଦନ୍ୟନ୍ନ ନେଷ୍ୟତେ ।
ମୁଖଂ ପଦ୍ମମିବେତ୍ୟତ୍ର କିଂ ସାଧ୍ୟଂ କିଂଚ ସାଧନମ୍ ॥ ୫୬ ॥

---

ନିକଟରେ ରହିବା ସମସ୍ତ ପକ୍ଷୀ ଶଗୁଣ ନୁହନ୍ତି । ବଗ, ହଂସ ଆଦି ମଧ୍ୟ ରହନ୍ତି । ଜଳ ନିକଟରେ ରହିବା ହେତୁ ପ୍ରଦର୍ଶନ ସଂଶୟ ଜ୍ଞାନ ଜନକ । କାରଣ ଶଗୁଣ ବ୍ୟତୀତ ଅନ୍ୟ ପକ୍ଷୀ ମଧ୍ୟ ବୋଧ ହେବ ।

୫୪) ଵପର୍ଯ୍ୟସ୍ତ — ନେତ୍ରର ପ୍ରାନ୍ତଭାଗଟି ଉଜ୍ଜ୍ୱଳ ହେତୁ ଏହାକୁ ଚକୋର ବୋଲି ଜାଣିବା ଉଚିତ । ଭୂଲ୍ଲଜାତି ଅର୍ଥାତ୍ ଅନ୍ୟ ଚକୋର ଠାରେ ଏହା ଦେଖା ନଯିବାରୁ ଏହି ସାଧନ (ନେତ୍ରପ୍ରାନ୍ତ ଉଜ୍ଜ୍ୱଳ) ଦ୍ୱାରା ଚକୋର ନୁହେ ଏହା ସିଦ୍ଧ ହୁଏ । ଏହା ଵପର୍ଯ୍ୟସ୍ତର ଉଦାହରଣ ।

ନେତ୍ର ପ୍ରାନ୍ତଭାଗର ଶୁକ୍ଲତା [ହେତୁ] ଦ୍ୱାରା ଦୃଶ୍ୟମାନ ପକ୍ଷୀ ଚକୋର [ସାଧ୍ୟ] ହେବା ସିଦ୍ଧ କରାଯାଉଛି । କିନ୍ତୁ ସଜାତୀୟ ଅନ୍ୟ ଚକୋରଙ୍କ ନେତ୍ରପ୍ରାନ୍ତ ଉଜ୍ଜ୍ୱଳ ବା ଶୁକ୍ଳ ନୁହେ । ଯେଉଁ ହେତୁ ଦ୍ୱାରା କଥାଟିକୁ ସିଦ୍ଧ କରିବା ପ୍ରୟାସ ରହିଛି, ତାହା ଅସିଦ୍ଧ ହେତୁ ଵପର୍ଯ୍ୟସ୍ତ [ଓଲଟା] ଅଟେ ।

୫୫) ଦୃଷ୍ଟାନ୍ତ — କଥିତ ବସ୍ତୁର ଅନୁରୂପ ଅନ୍ୟ ବସ୍ତୁର ନିର୍ଦ୍ଦେଶ ହେଲେ ତାହାକୁ ଦୃଷ୍ଟାନ୍ତ କୁହାଯାଏ । ତେବେ ଉପମାକୁ ଅନୁମାନ କାହିଁକି ମନେ କରାନଯିବ ! କାରଣ ଉପମାରେ ହେତୁର କଥନ ହୁଏ ନାହିଁ ।

ଏଠାରେ ପ୍ରଶ୍ନ ଉଠେ — ଦୃଷ୍ଟାନ୍ତ ଅନୁମାନର ଅଙ୍ଗ । ଅନ୍ୱୟ-ବ୍ୟତିରେକ ଭେଦେ ଅନୁମାନରେ ପ୍ରୟୋଗ କରାଯାଏ । ଦୃଷ୍ଟାନ୍ତରେ ଯେପରି ଗୋଟିଏ ବସ୍ତୁ ପରେ ଅନ୍ୟ ବସ୍ତୁର ନିର୍ଦ୍ଦେଶ ରହେ, ଉପମାରେ ମଧ୍ୟ ଅନୁରୂପ ନିର୍ଦ୍ଦେଶ ରହେ । ତେବେ ଉପମା ଦୃଷ୍ଟାନ୍ତ ପରି ଅନୁମାନର ଅଙ୍ଗ ହେବନି କାହିଁକି ? ଉତ୍ତରରେ କୁହାଯିବ ନୁହେ । କାରଣ ଅନୁମାନର ପ୍ରଧାନ ଅଙ୍ଗ ହେତୁ ଅଟେ । ଉପମାରେ ହେତୁର ନିର୍ଦ୍ଦେଶ ଆଦୌ ରହେ ନାହିଁ । ପୁଣି ଅନୁମାନ ପ୍ରକ୍ରିୟାରେ ପ୍ରୋକ୍ତ ସାଧ୍ୟ-ସାଧନର ନିର୍ଦ୍ଦେଶ ଉପମାରେ ଅନ୍ତର୍ନିହିତ ନୁହେ ।

ଇତି ପ୍ରୟୋଗସ୍ୟ ଯଥା କଲାବପି ଭବାନତ୍ର ।
ଶ୍ରେୟାନ୍ ବୃଦ୍ଧାନୁଶିଷ୍ଟତ୍ୱାତ୍ପୂର୍ବେ କାର୍ତ୍ତୟୁଗେ ଯଥା ॥ ୫୭ ॥
ଯତ୍ର ଦୃଷ୍ଟାନ୍ତମାତ୍ରେଣ ବ୍ୟଜ୍ୟେତେ ସାଧ୍ୟସାଧନେ ।
ତମାହୁଃ ଶୁଦ୍ଧଦୃଷ୍ଟାନ୍ତଂ ତନ୍ମାହ୍ଲାଦବସ୍ତୁତେ ଯଥା ॥ ୫୮ ॥

---

୫୬) ସାଧ୍ୟ-ସାଧନର ନିର୍ଦ୍ଦେଶ ନିର୍ଦ୍ଦିଷ୍ଟ ସ୍ଥଳରେ ହୁଏ । ସର୍ବତ୍ର ନୁହେ । ମୁଖ ପଦ୍ମପରି ଏଥିରେ କିଏ ସାଧ୍ୟ କିଏ ସାଧନ ?

ଅନୁମାନ ପ୍ରକ୍ରିୟାରେ ହିଁ ସାଧ୍ୟ-ସାଧନର ନିର୍ଦ୍ଦେଶ ଆବଶ୍ୟକ, ଅନ୍ୟତ୍ର ନୁହେ । ଉପମାରେ ସାଧ୍ୟ-ସାଧନର ନିର୍ଦ୍ଦେଶ ବାଞ୍ଛନୀୟ ବା ଆବଶ୍ୟକ ନୁହେ ।

ଉଦାହରଣ ସ୍ୱରୂପ —ମୁଖଟି କମଳ ପରି ଅଟେ । ଏହି ବାକ୍ୟରେ ମୁଖ ସହିତ କମଳର ତୁଳନା କେବଳ ଅଭୀଷ୍ଟ । ସାଧ୍ୟ-ସାଧନର ବିବକ୍ଷା ନାହିଁ । ଯଦି ସାଧ୍ୟ-ସାଧନ ଭାବ ଗ୍ରହଣ କରାଯାଏ ତେବେ ମୁଖ ବା କମଳ, କିଏ ହେବ ସାଧ୍ୟ କିଏ ସାଧନ ?

ଅତଏବ ସାଦୃଶ୍ୟ ଆଧାରିତ ଉପମା ଅନୁମାନର ଅଙ୍ଗ ହୋଇପାରିବ ନାହିଁ । ଉଭୟର କ୍ଷେତ୍ର ଭିନ୍ନ ।

୫୭) ଉପମାଠାରୁ ଦୃଷ୍ଟାନ୍ତର ପାର୍ଥକ୍ୟ ସମ୍ବନ୍ଧୀୟ ଉଦାହରଣ— ନିମ୍ନୋକ୍ତ ପ୍ରୟୋଗକୁ ଗ୍ରହଣ କରାଯାଉ—ହେ ରାଜନ୍ ! ବୃଦ୍ଧଙ୍କ ଦ୍ୱାରା ଅନୁଶିଷ୍ଟ ହେବା ହେତୁ ସତ୍ୟଯୁଗର ପ୍ରାଚୀନ ପୁରୁଷଙ୍କ ପରି ଏହି କଳିଯୁଗରେ ମଧ୍ୟ ଆପଣ ଶ୍ରେଷ୍ଠ ଅଟନ୍ତି ।

ଏହା ଦୃଷ୍ଟାନ୍ତର ଉଦାହରଣ । ଏଥିରେ ଉପମା ପରି କେବଳ ସାଦୃଶ୍ୟ ନାହିଁ, ବରଂ ସାଧ୍ୟ-ସାଧନର ଭାବ ମଧ୍ୟ ବିଦ୍ୟମାନ । ରାଜାଙ୍କ ଶ୍ରେଷ୍ଠତା ସାଧ୍ୟ ଅଟେ । ବୃଦ୍ଧଙ୍କ ଦ୍ୱାରା ଅନୁଶିଷ୍ଟ ହେବା ସାଧନ [ହେତୁ] ଅଟେ । ସତ୍ୟଯୁଗର ପ୍ରାଚୀନ ପୁରୁଷ ଦୃଷ୍ଟାନ୍ତ ଅଟନ୍ତି । ତେଣୁ ଏ ସ୍ଥଳରେ ସାଧ୍ୟ-ସାଧନର ଯେଉଁ ନିର୍ଦ୍ଦେଶ ରହିଛି । ସେହିପରି ନିର୍ଦ୍ଦେଶ ଉପମାରେ ରହେ ନାହିଁ ।

୫୮) ଶୁଦ୍ଧ ଦୃଷ୍ଟାନ୍ତ —ଯେଉଁଠି ସାଧ୍ୟ-ସାଧନର ବ୍ୟଞ୍ଜନା ରହେ, ତାହାକୁ ଶୁଦ୍ଧ ଦୃଷ୍ଟାନ୍ତ କହନ୍ତି । କାରଣ ସେଠାରେ ଦୃଷ୍ଟାନ୍ତ ହିଁ ପ୍ରତିପାଦିତ ହୁଏ ।

ଶ୍ଳୋକ ୫୭ କାରିକାରେ ଯେଉଁ ଦୃଷ୍ଟାନ୍ତର ଉଦାହରଣ ଦିଆଯାଇଛି । ସେଥିରେ ସାଧ୍ୟ, ସାଧନ ଓ ଦୃଷ୍ଟାନ୍ତ ଏହି ତିନିଗୋଟି ନିର୍ଦ୍ଦେଶିତ । ଏହି କାରିକାରେ କ୍ରମହ କହନ୍ତି ଏହି ତିନିଗୋଟି ପରିବର୍ତ୍ତେ କେବଳ ଦୃଷ୍ଟାନ୍ତର ନିର୍ଦ୍ଦେଶ ରହିଲେ ମଧ୍ୟ ଶୁଦ୍ଧ ଦୃଷ୍ଟାନ୍ତ ହୋଇପାରିବ ।

ଭରତସ୍ତ୍ୱଂ ଦଲିପସ୍ତ୍ୱଂ ତ୍ୱମେବୈଳଃ ପୁରୂରବାଃ ।
ତ୍ୱମେବ ବୀର ପ୍ରଦ୍ୟୁମ୍ନସ୍ତ୍ୱମେବ ନରବାହନଃ ॥ ୫୯ ॥

କଥମେକପଦେନୈବ ବ୍ୟଜ୍ୟେରନ୍ନସ୍ୟ ତେ ଗୁଣାଃ ।
ଇତି ପ୍ରଯୁଂଜତେ ସନ୍ତଃ କେଚଦ୍ବିସ୍ତରଭୀରବଃ ॥ ୬୦ ॥

ପଦମେକଂ ପରଂ ସାଧୁ ନାବାଚୀନନବନ୍ଧନମ୍ ।
ନୈପଶ୍ଚାତ୍ୟାଦ୍ଵିପର୍ଯ୍ୟାସଂ କାର୍ଯ୍ୟୈରପି କଦାଚନ ॥ ୬୧ ॥

---

୫୯) **ଉଦାହରଣ**—ଯଥା ହେ ବୀର ! ତୁମେ ଭରତ ଅଛ, ତୁମେ ଦଲିପ ଅଛ, ତୁମେ ଇଳାପୁତ୍ର ପୁରୂରବା ଅଛ । ତୁମେ ହିଁ ପ୍ରଦ୍ୟୁମ୍ନ ଓ ନରବାହନ ଅଛ ।

ଏଠାରେ ବର୍ଣ୍ଣନୀୟ ରାଜାଙ୍କର ଅନେକ ରାଜାସହିତ ସାଦୃଶ୍ୟ ପ୍ରତିପାଦିତ । ଏଥିରେ କିନ୍ତୁ ସାଧ୍ୟ-ସାଧନର ନିର୍ଦ୍ଦେଶ ନାହିଁ, କେବଳ ଦୃଷ୍ଟାନ୍ତ ପ୍ରଦତ୍ତ । ଅତଏବ ଏହା ଶୁଦ୍ଧ ଦୃଷ୍ଟାନ୍ତ । ଏ ସମସ୍ତ ଦୃଷ୍ଟାନ୍ତ ଅନ୍ତରାଳରେ ରହିଛି । କବିଙ୍କ ଉଦ୍ଦେଶ୍ୟ—ହେ ରାଜା ଭରତ ପରି ଯଶସ୍ୱୀ, ଦଲିପଙ୍କ ପରି ଆତ୍ମର ପରିତ୍ୟକ୍ତ, ପୁରୂରବାଙ୍କ ପରି ଉତ୍ତମଗୁଣଶାଳୀ ପ୍ରଦ୍ୟୁମ୍ନ ପରି ସୁନ୍ଦର ଓ ନରବାହନ, ପରି ଲୌକିକ କ୍ଷେତ୍ରଶାଳୀ ।

୬୦) ଏହି ବର୍ଣ୍ଣନୀୟ ରାଜାଙ୍କଗୁଣ କୌଣସି ପ୍ରକାରେ ଗୋଟିଏ ଗୋଟିଏ ଶବ୍ଦରେ ପ୍ରକାଶିତ ହୋଇଯାଉ, ଏହା ଚିନ୍ତାକରି ବିସ୍ତାର ଭୟରେ କେତେକ ବିଦ୍ୱାନ ଏପରି ପ୍ରୟୋଗ କରିଥାନ୍ତି ।

ଅନୁରୂପ ଯଥା—ବଶିଷ୍ଠ, ଅରୁନ୍ଧତୀ,ଶ୍ରୀରାମସୀତା ପରି ।
ଶିବ-ପାର୍ବତୀ ଏ ଲକ୍ଷ୍ୟ ସମାନଙ୍କୁ କରି । (ଲ-ବ-୩୦-୬୨)

କମ ଶବ୍ଦରେ ଅଧିକ ତାତ୍ପର୍ଯ୍ୟ ପ୍ରକାଶନ କେତେକ କବିଙ୍କ ଲକ୍ଷ୍ୟ ।

୬୧) **ଦୋଷ ପରିହାର**—ଗୋଟିଏ ସୁନ୍ଦର ପଦର ପ୍ରୟୋଗ ପର୍ଯ୍ୟାପ୍ତ ଅଟେ । ଏହାର ବିପରୀତରେ ବୃଦ୍ଧତାଶ୍ରିତ ପ୍ରବନ୍ଧ ମଧ୍ୟ ଶ୍ରେଷ୍ଠ ନୁହେ । ବିପରୀତ ପ୍ରୟୋଗ କବିର ଯଶକୁ ମଧ୍ୟ ବିପର୍ଯ୍ୟସ୍ତ କରିଦିଏ ।

ଶବ୍ଦ ପ୍ରୟୋଗ ସମ୍ବନ୍ଧରେ ଆମହି ଇଙ୍ଗିତ ଦେଇଛନ୍ତି । ଅଶୁଦ୍ଧ, ଅସୁନ୍ଦର ଶବ୍ଦରେ ରଚିତ ମହାନ୍ ଗ୍ରନ୍ଥ ଅପେକ୍ଷା ଗୋଟିଏ ସୁନ୍ଦର ଶୁଦ୍ଧ ପ୍ରୟୋଗ ଉନ୍ନତ ଓ ଗ୍ରାହ୍ୟ ହୋଇ ଥାଏ । ଅରମଣୀୟ ଶବ୍ଦ ପ୍ରୟୋଗ କରି କବି ଯଶ ବଦଳରେ ଅପଯଶ ଲାଭକରେ । ମହାଭାଷ୍ୟକାର ପତଞ୍ଜଳି କହନ୍ତି —

'ଏକଃ-ଶବ୍ଦଃ ସମ୍ୟକ୍ଜ୍ଞାତଃ ସୁପ୍ରଯୁକ୍ତଃ ସ୍ୱର୍ଗେ ଲୋକେ ଚ କାମଧୁକ୍ ଭବତି '

ଅନ୍ବଦ୍ୟମପୂନର୍ଭେଦଂ ରସବତ୍ତ୍ୱେଽପ୍ୟପେଶଲମ୍ ।
କାବ୍ୟଂ କଟିଭ୍ୟମାମ୍ ଯେଭ୍ୟକେଷ୍ଟଂ ଚତୃସବୃଶଂ ଯଥା ॥ ୭୨ ॥
ପ୍ରଜାନନଶ୍ରେଷ୍ଠବରଷ୍ଟଭୂଭ୍ଭୁକ୍ଛିରୋର୍ଚ୍ଚିତାଂଘ୍ରେ ଃ ପୃଥୁକୀର୍ତ୍ତିଧିଷ୍ଣ୍ୟ ।
ଅହିଘ୍ନପଦ୍ମସ୍ୟ ଜଲାରିଧାମ୍ନସ୍ତବୈବ ନାନ୍ୟସ୍ୟ ସୁତସ୍ୟ ବୃତ୍ତମ୍ ॥ ୭୩
ଅଂଶୁମଦଭିଷ୍ଣ ମଣିଭିଃ ଫଳନମ୍ରୈଷ୍ଟ ଶାଖିଭିଃ ।
ଫୁଲ୍ଲୈଷ୍ଟ କୁସୁମୈରନ୍ୟୈର୍ବନ୍ତେଽଲଂକୁରୁତେ ଯଥା ॥ ୭୪ ॥

---

ଅର୍ଥାତ୍ ଗୋଟିଏ ଶବ୍ଦକୁ ମଧ ଠିକ୍ ଭାବରେ ଜାଣି ଯଥାର୍ଥ ସ୍ଥଳରେ ପ୍ରୟୋଗ କରିପାରିଲେ ମନୁଷ୍ୟ ଇହଲୋକରେ କୃତାର୍ଥ ହୋଇଥାଏ ।

୭୨) ଅକବିର କାବ୍ୟ—କେତେକ କବିଙ୍କ କାବ୍ୟ କଷ୍ଟାକଳିଥ ପଣ ଅହୃଦ୍ୟ (ଆସ୍ୱାଦନରେ ଅରୁଚକରେ) ଅଭେଦ୍ୟ (ଅର୍ଥପ୍ରାପ୍ତିରେ ଅତ୍ୟନ୍ତଦୁରୂହ ଓ ରସଯୁକ୍ତ ହୋଇ ମଧ ଅରମଣୀୟ ହୋଇଥାଏ ।

୭୩) ଉଦାହରଣ—ଯଥା ହେ ପ୍ରଜାଜନଙ୍କ ସମ୍ମାନର ପାତ୍ର । ହେ ବିସ୍ତୃତଯଶର ଆଗାର ହେ ବରିଷ୍ଠରାଜାଙ୍କ ମସ୍ତକ ପୂଜିତ ଚରଣ ! ଶତ୍ରୁସେନା ବିନାଶକ ! ସୂର୍ଯ୍ୟଙ୍କ ପରି ତେଜସ୍ୱୀ ! ଏହି ଚରିତ କେବଳ ତୁମର ଓ ତୁମ ପୁତ୍ରର ଅଟେ ଅନ୍ୟ ତାହାର ନୁହେ ।

ଅଙ୍ଘ୍ରି—ଚରଣ, ପୃଥୁ—ବିସ୍ତୃତ, ଧିଷ୍ଣ୍ୟ—ବାସସ୍ଥାନ, ଅହିଘ୍ନ—ଶତ୍ରୁନାଶକ, ପଦ୍ମ—ସେନାସମୂହ, ଜଲାରି—ସୂର୍ଯ୍ୟ ବା ଅଗ୍ନି, ଧାମ—ତେଜ, ଭୂଭୃତ୍—ରାଜା । ଏହି ପଦ୍ୟ ଏକାଧାରରେ ଅହୃଦ୍ୟ, ଅଭେଦ୍ୟ ଓ ଅପେଶଲ ଦୋଷ ଦୁଷ୍ଟ ଅଟେ । ଶ୍ରେଷ୍ଠ ବରିଷ୍ଠ, ଭୂଭୃଚ୍ଛିର,ଧିଷ୍ଣ୍ୟ ଆଦିରେ ଶ୍ରୁତିକଟୁତା ହେତୁ ଅହୃଦ୍ୟ, ଅହିଘ୍ନ, ପଦ୍ମସ୍ୟ, ଜଲାରି ଧାମ୍ନରେ ଅଭେଦ୍ୟ ଦୋଷ, ପିତା ଅନୁରୂପ ପୁତ୍ରର ଚରିତ ବର୍ଣ୍ଣନ ହେଲେ ମଧ ସମୁଚିତ ପ୍ରସ୍ତାବ ଅଭାବରେ ଅପେଶଲ ଦୋଷରେ ଦୂଷିତ ।

ଅନୁରୂପ ଯଥା—ବିଶ୍ବବିକରେ ଖେଦଭେଦ ପବି, ବିପଦଭେଦନ ତାର ପଦବୀ ।
ବିବପର ତାପସ ଦଈହବ, ବିହିତ ଦଶରୂପ ରଖ ଭୁବି ।
(ବୈ-ବି-୨୮-୪୦)

ବିଶ୍ବବିକ—[ବିଶେଷ ସ୍ୱରୂପ,ଭକ୍ତ] ଖେଦ ଭେଦ [ସନ୍ତାପଭେଦନ ବିଷୟରେ] ପବି —ବଜ୍ର, ବିପଦ ଭେଦନ [ବିପଦଭଞ୍ଜନ] ଓ ତାର ପଦବୀ[ଉଦ୍ଧାରମାର୍ଗ]ଅଟି । ବିଜପର [ବିଜ୍ଞାନୀ] ତାପସ [ତପସ୍ୱୀ] ଦଈ [ଦାନକରନ୍ତି] ହବି [ହବିର୍ଭାଗ] ଦଶରୂପ [ଦଶଅବତାର] ବିହି [ବିଧାନ କର] ତ । ଏଣୁ ମୋତେ ଭୁବି [ପୃଥିବୀରେ] ରଖ [ରକ୍ଷାକର] ।

ଶୁଭମରକତପଦ୍ମରାଗଚନ୍ଦ୍ରେ
　　ସଫଳସପଲ୍ଲିବଭୂରିବୃକ୍ଷରୁକ୍ଷେ ।
କହୁକୁସୁମବିଭୂଷିତେ ସ ତସ୍ଥୌ
　　ସୁରମୁନିସିଦ୍ଧଯୁତେ ସୁମେରୁପୃଷ୍ଠେ ॥ ୬୫ ॥

ତଦେଭିରଙ୍ଗୈର୍ଭୂଷ୍ୟନ୍ତେ ଭୂଷଣୋପବନସ୍ରଜଃ ।
ବାଗ୍ମିଂ ବନ୍ଧାର୍ଥଶବ୍ଦୋକ୍ତିରଲଂକାରତ୍ୱ କଲ୍ପତେ ॥ ୬୬ ॥

---

୬୪) ସମୃଦ୍ଧି ବର୍ଣ୍ଣନାରେ ବାଣୀ ଅଳଙ୍କୃତ ହୁଏ ନାହିଁ —କେତେକ କବି ରତ୍ନମଣି, ଫଳନମ୍ର ବୃକ୍ଷ ଓ ବିକଶିତ ପୁଷ୍ପର ବର୍ଣ୍ଣନାରେ ବାଣୀକୁ ଅଳଂକୃତ କରିଥାନ୍ତି ।

କେତେକ କବି ବହୁମୂଲ୍ୟ ବା ସୁନ୍ଦର ବସ୍ତୁ ବର୍ଣ୍ଣନା ମାଧ୍ୟମରେ ନିଜନିଜ କାବ୍ୟକୁ ସଜାଇ ଥାନ୍ତି ।

୬୫) ଉଦାହରଣ—ମଙ୍ଗଳକର ମରକତ ଓ ପଦ୍ମରାଗମଣିରେ ଖଚିତ, ଫଳ ଓ ପଲ୍ଲବପୂର୍ଣ୍ଣ ବହୁ ସୁନ୍ଦର ବୃକ୍ଷ ଯୁକ୍ତ, ଅନେକ କୁସୁମରେ ମଣ୍ଡିତ, ଦେବତା, ମୁନି ଓ ସିଦ୍ଧ ସେବିତ ସୁମେରୁ ପର୍ବତ ପୃଷ୍ଠରେ ସେ ନିବାସ କଲେ ।

୬୪କାରିକାରେ ଅଳଂକୃତ କରିବା ବସ୍ତୁର ନିର୍ଦ୍ଦେଶ କ୍ରମ ଏଠାରେ ପରିଲକ୍ଷିତ କିନ୍ତୁ ପରବର୍ତ୍ତୀ କାରିକାରେ କୁହାଯାଇଛି - ଏସମସ୍ତ ବର୍ଣ୍ଣନା ଦ୍ୱାରା କାବ୍ୟ-ବାଣୀ ସୁନ୍ଦର ହୁଏ ନାହିଁ ।

୬୬) ବକ୍ରୋକ୍ତିର ମହତ୍ତ୍ୱ—ଏ ସମସ୍ତ ଉପାଦାନରେ ଆଭୂଷଣ,ଉପବନ ଓ ମାଳାର ଶୋଭା ବଢ଼େ । କିନ୍ତୁ ବାଣୀର ଶୋଭା ବକ୍ରଶବ୍ଦ ଓ ଅର୍ଥଦ୍ୱାରା କେବଳ ନିଷ୍ପନ୍ନ ହୁଏ ।

ମଣି ଦ୍ୱାରା ଆଭୂଷଣର,ବୃକ୍ଷମାନଙ୍କଦ୍ୱାରା ଉପବନର ଓ ପୁଷ୍ପ ସମୂହ ଦ୍ୱାରାମାଳାର ଶୋଭା ବଢିଥାଏ । କିନ୍ତୁ ବାଣୀ ବା ବାକ୍ୟର ଶୋଭା ଶବ୍ଦ ଓ ଅର୍ଥର ବକ୍ରତା (ବକ୍ରୋକ୍ତି) ଦ୍ୱାରା ବଢିଥାଏ । ଅତଏବ କବି ବାହ୍ୟ ଉପାଦାନ ସଂଗ୍ରହରେ ବ୍ୟସ୍ତ ନରହି କାବ୍ୟ ନିଷ୍ପାଦକ ଆନ୍ତରିକ ତତ୍ତ୍ୱ (ବକ୍ରୋକ୍ତି) ଉପରେ ଧ୍ୟାନ ଦେବା ଉଚିତ । ପରବର୍ତ୍ତୀ କାଳରେ ଏପରି ବର୍ଣ୍ଣନାକୁ ଉଦାତ୍ତ ଅଳଙ୍କାର କୁହାଯାଇଛି ।

୬୭) ରଚନାବ୍ୟାପ୍ତିର ହେୟତା—ଅନ୍ୟ କେତେକ କବି ଅଛନ୍ତି, ଯେଉଁମାନେ ରଚନାକୁ ଅନାବଶ୍ୟକ ବସ୍ତୁରେ ଭରିବାକୁ କରିବା ଇଚ୍ଛା ରଖିଥାନ୍ତି । ଏପରି

ଝରୂଢପଦମସ୍ପର୍ଥଂ ବହୁପୂରଣମାକୁଳମ୍ ।
କୁର୍ବନ୍ତି କାବ୍ୟମପରେ ବ୍ୟାପ୍ତତାମ୍ପିପ୍ସବୋ ଯଥା ।। ୨୨ ।।
ଏଳାଡକେ୍ଳାଳନାଗଷ୍ଟ୍ ଠବକୁଳଲତାଚନ୍ଦନସ୍ପନ୍ଦନାଢ୍ୟଃ ।
ମୂକ୍ତାକର୍ପୂରଚନ୍ଦାଗରୁକମନଃଶିଳାଷ୍ଠାସକବ୍ୟାପ୍ତଶ୍ଚୌରଃ ।
ଶଂଖବ୍ରାତାକୁଳାନ୍ତସ୍ତିମିମକରକୁଳାକୀର୍ଣ୍ଣବୀଚୀପ୍ରତାନୋ ।
ଦଧ୍ରେ ଯସ୍ୟାମ୍ବୁରାଶିଃ ଶଶିକୁମୁଦସୁଧାକ୍ଷୀରଶୁଭ୍ରାଂ ସ୍ଵମୂର୍ତ୍ତିମ୍ ।। ୨୮ ।।
ଇତି ନିଗଦିତାସ୍ତାସ୍ତା ବାଗ୍‌ମଲଂକୃତୟୋ ମୟା ।
ବହୁବିଧକୃତୀ ଦୃଷ୍ଟ୍ୱାନ୍ୟେଷାଂ ସ୍ୱୟଂ ପରିତର୍କ୍ୟ ଚ ।

---

କବି ମଧ୍ୟ ଅଛନ୍ତି, ଯେଉଁମାନେ କାବ୍ୟରେ ପଦବିରୋଧୀ ଅସୁନ୍ଦର ଅର୍ଥ ନୁ, ଙ୍ଖ୍ଲୁ, ରୂ, ହ୍ୟ, ଆଦି ପାଦ ପୂରକ ଅବ୍ୟୟ ତଥା କଠିନ ଶବ୍ଦ ପ୍ରୟୋଗ କରିଥାନ୍ତି ।

ଅନାବଶ୍ୟକ ବସ୍ତୁ ଢଗ୍ଁଥିବା କବିର କୃତିରେ ଏ ସମସ୍ତ ଦୋଷ ଦେଖା ଯିବା ସ୍ୱାଭାବିକ । ଅତଏବ ସୁନ୍ଦର ଶବ୍ଦ ଯୋଜନା ଦ୍ୱାରା ଅର୍ଥଗାମ୍ଭୀର୍ଯ୍ୟ ରକ୍ଷା ପାଇଁ ଯତ୍ନଶୀଳ ହେବା କବିର କର୍ତ୍ତବ୍ୟ ।

୨୮) ଉଦାହରଣ— ଯଥା ଯେଉଁ ସମୁଦ୍ରର ତଟଦେଶ ଅଳେଇଚ, ତକ୍‌କୋଳ, ନାଗେଶ୍ୱର, ବିକଶିତ ମୌଳଶ୍ରୀ ଲତା ମଣ୍ଡିତ, ଚନ୍ଦନର ସ୍ପନ୍ଦନରେ ରଞ୍ଜିତ, ମୁକ୍ତା କର୍ପୂର, ଅଗୁରୁ, ମନଃଶିଳା ଆଦି ସୁଗନ୍ଧ ଦ୍ରବ୍ୟରେ ପରିବ୍ୟାପ୍ତ, ସେହି ସମୁଦ୍ର ଶଙ୍ଖ ସମୂହରେ ପୂର୍ଣ୍ଣ, ତିମି, ମଗର ଆଦି ଜଳଜନ୍ତୁରେ ବ୍ୟାପ୍ତ, ତରଙ୍ଗାଇତ ଲହରୀ ସମ୍ପନ୍ନ ଅଟେ । ତାହାର ଜଳରାଶି ଚନ୍ଦ୍ର, କୁମୁଦ, ଅମୃତ ତଥା ଦୁଗ୍ଧ ପରି ଶୁଭ୍ର କାନ୍ତି ଧାରଣ କରିଅଛି ।

ଏଠାରେ ସମୁଦ୍ରର ସ୍ୱରୂପ ପ୍ରକାଶରେ କୌଣସି ବୈଶିଷ୍ଟ୍ୟ ନାହିଁ । ସମସ୍ତ ପ୍ରକାର ଦୋଷ ଏ ପଦ୍ୟରୁ ଉଦ୍ଧାର କରାଯାଇପାରେ ।

ଅନୁରୂପ ଯଥା— ବୃହଦ୍‌ଭାନୁ ଭାନୁ ଭାନୁ ପ୍ରଖର ତାପ ନାହିଁ,
ବୃତତମାଲମାଳ ମାଳତୀ ଲତା ଯହିଁ ।
ବହଇ ନିର୍ଝର ଝର ଝର ଅବିରତ,
ବିଶେଷ ତରଙ୍ଗ ରଙ୍ଗ ରଙ୍ଗିଣୀ ଶୋଭିତ ।
ବନ୍ଧୁ ଚନ୍ଦ୍ର ଚନ୍ଦ୍ର ଚନ୍ଦ୍ର ଶୀତଳକୁ ବାତ,
ବହେ ମନ୍ଦ ମନ୍ଦ ମନ୍ଦ ସୁଖ କରେ ଗାତ୍ର । (ବୈ-ବି-୧୯-୨)

ଏଠି ବନ ବର୍ଣ୍ଣନାରେ ଯମକ ପ୍ରଦର୍ଶନ ହିଁ କବିଙ୍କର ଲକ୍ଷ୍ୟ । ଅର୍ଥଗାମ୍ଭୀର୍ଯ୍ୟ ନାହିଁ ।

ପ୍ରଥିତବଚସଃ ସନ୍ତୋଽଭଜ୍ଞାଃ ପ୍ରମାଣମିହାପରେ ।
ଗୁରୁତରଧିୟାମସ୍ୱାବୋଧଂ ମନୋଽକୃତବୁଦ୍ଧିଭିଃ ॥ ୬୯ ॥

ଇତି ଶ୍ରୀଭାମହାଲଂକାରେ ପଞ୍ଚମଃ ପରିଚ୍ଛେଦଃ

୬୯) ଉପସଂହାର—ମୁଁ ଅନ୍ୟର ବିବିଧ କୃତି ପରିଦର୍ଶନ କରି ଏବଂ ନିଜେ ବିଗ୍ଭର କରି ବାଣୀର ଅଳଂକାର ବିଷୟ ବର୍ଣ୍ଣନା କରି ଅଛି । ଶବ୍ଦ ପ୍ରୟୋଗରେ ଲବ୍ଧ ପ୍ରତିଷ୍ଠ ସଜ୍ଜନ ବିଦ୍ୱାନ ଏହାର ପ୍ରମାଣ ଅଟନ୍ତି । ସେମାନେ ଯଥାର୍ଥ ରୀତିରେ କହିପାରିବେ, ମୋର ଏହି ପ୍ରୟାସ କେତେଦୂର ସଫଳହୋଇଛି । ସୀମିତ ବୁଦ୍ଧି ସମ୍ପନ୍ନ ବ୍ୟକ୍ତିଙ୍କ ଦ୍ୱାରା ଉତ୍କୃଷ୍ଟ ବୁଦ୍ଧି ସମ୍ପନ୍ନ ବ୍ୟକ୍ତି ସହଜରେ ସନ୍ତୁଷ୍ଟ ହୁଅନ୍ତି ନାହିଁ ।

ଏହି ପଦ୍ୟରେ ଭାମହ ନିଜର ଅଧ୍ୟୟନ ବିବେଚନା ଓ ବିନମ୍ରଭାବ ପ୍ରଦର୍ଶନ କରିଛନ୍ତି ।

ଭାମହଙ୍କ କାବ୍ୟାଲଂକାର ଗ୍ରନ୍ଥର ପଞ୍ଚମ ପରିଚ୍ଛେଦ ସମାପ୍ତ ।

—ঃ୦+୦ঃ—

## ଷଷ୍ଠ ପରିଚ୍ଛେଦ

ସୂତ୍ରାମ୍ଭସଂ ପଦାବର୍ତ୍ତଂ ପାରାୟଣରସାତଳମ୍ ।
ଧାତୂଣାଦିଗଣଗ୍ରାହଂ ଧ୍ୟାନଗ୍ରହବୃହତ୍ପ୍ଳବମ୍ ॥ ୧ ॥
ଧୀରୈରାଲୋକିତ ପ୍ରାନ୍ତମମେଧୋଭିରସୂୟିତମ୍ ।
ସଦୋପଭୁକ୍ତଂ ସର୍ବାଭିରନ୍ୟ ବିଦ୍ୟାକରେଣୁଭିଃ ॥ ୨ ॥
ନାପାରୟିତ୍ୱା ଦୁର୍ଗାଧମମୁଂ ବ୍ୟାକରଣାର୍ଣ୍ଣବମ୍ ।
ଶବ୍ଦରତ୍ନଂ ସ୍ୱୟଂଗମ୍ୟମଲଂ କର୍ତ୍ତୁମୟଂ ଜନଃ ॥ ୩ ॥

---

(୧-୩) **ବ୍ୟାକରଣ ଶାସ୍ତ୍ରର ମହତ୍ତ୍ୱ** — ସୂତ୍ରରୂପୀ ଜଳଯୁକ୍ତ, ବାର୍ତ୍ତିକରୂପୀ ଭଉଁରୀ ସମ୍ପନ୍ନ, ପାରାୟଣ (ଭାଷ୍ୟ) ରୂପ ରସାତଳଗାମୀ, ଧାତୁ, ଉଣାଦି ଗଣପାଠ ରୂପ ମଗର ବେଷ୍ଟିତ, ମନନରୂପ ବିଶାଳ ନୌକାରେ ଧୀର ବ୍ୟକ୍ତି (ବୈୟାକରଣ)ଙ୍କ ଦ୍ୱାରା ପରିଦୃଷ୍ଟ ପ୍ରାନ୍ତ ପ୍ରଦେଶ, ବୁଦ୍ଧିହୀନଙ୍କ ଦ୍ୱାରା ନିନ୍ଦିତ, ଅନ୍ୟ ସମସ୍ତ ବିଦ୍ୟାରୂପୀ କରିଣୀଙ୍କ ଦ୍ୱାରା ଉପଭୁକ୍ତ, ସେହି ଦୁରବଗାହ ବ୍ୟାକରଣ ରୂପ ସମୁଦ୍ରକୁ ପାର ନକରି କେହି ଶବ୍ଦରତ୍ନ ଦ୍ୱାରା ନିଜକୁ ଅଳଂକୃତ କରିବା ପାଇଁ ସମର୍ଥ ନୁହେ ।

ଶବ୍ଦ ହିଁ କାବ୍ୟ । ତେଣୁ କବି ଶବ୍ଦ ପ୍ରୟୋଗ କରିବା ପୂର୍ବରୁ ଶବ୍ଦର ଶୁଦ୍ଧତା, ଅଶୁଦ୍ଧତା ବିଷୟରେ ସମ୍ୟକ ଜ୍ଞାନ ରଖିବା ଆବଶ୍ୟକ । ତାହା କେବଳ ବ୍ୟାକରଣ ଶାସ୍ତ୍ର ଦ୍ୱାରା ଅଧିଗତ ହୁଏ । ତେଣୁ ଏଠାରେ ବ୍ୟାକରଣର ମହତ୍ତ୍ୱ ପ୍ରତିପାଦିତ । ବ୍ୟାକରଣ ଅଗାଧ ହେବାରୁ ତାହା ସମୁଦ୍ର ସହିତ ସମାନ । ଲେଖକ ରୂପକ ଅଳଂକାରରେ ବ୍ୟାକରଣ ଓ ସମୁଦ୍ରକୁ ଏକୀଭୂତ କରି ଦେଇଛନ୍ତି ।

ଧାତୁ ପାଠ, ଉଣାଦି, ଗଣପାଠ ଆଦି ଜଟିଳ ହେବାରୁ ତାହା ଭୟୋତ୍ପାଦକ ଗ୍ରାହ ବୋଲି କୁହାଯାଇଛି । ଏପରି କୌଣସି ବିଦ୍ୟା ନାହିଁ, ଯାହା ବ୍ୟାକରଣ ଭିତ୍ତିକ ନୁହେ । ଭର୍ତ୍ତୃହରି ବ୍ୟାକରଣର ମହତ୍ତ୍ୱ ଗାନ କରି କହନ୍ତି—

ତତ୍ତ୍ୱାବବୋଧଃ ଶବ୍ଦାନାଂ ନାସ୍ତି ବ୍ୟାକରଣାଦୃତେ ।
ତଦ୍ୱାରମପବର୍ଗସ୍ୟ ବାଙ୍ମଳାନାଂ ଚିକିତ୍ସିତମ୍ ।
ପବିତ୍ରଂ ସର୍ବବିଦ୍ୟାନାମଧିବିଦ୍ୟଂ ପ୍ରକାଶତେ । (ବାକ୍ୟ ପଦୀୟ)

ଶବ୍ଦର ତତ୍ତ୍ୱଜ୍ଞାନ ବ୍ୟାକରଣ ବ୍ୟତୀତ ଅନ୍ୟ କୌଣସି ଶାସ୍ତ୍ର ଦ୍ୱାରା ସମ୍ଭବ ନୁହେ । ଏହି ଶାସ୍ତ୍ର ମୋକ୍ଷର ଦ୍ୱାର ଅଟେ । ବାଣୀର ବିକାର ନିବାରକ ଅଟେ । ସମସ୍ତ ବିଦ୍ୟା ମଧ୍ୟରେ ପବିତ୍ର ଓ ସବୁଠାରୁ ଉନ୍ନତ ଅଟେ ।

ତସ୍ୟ ଗ୍ରଧିଗମେ ଯତ୍ନଃ କାର୍ଯ୍ୟଃ କାବ୍ୟଂ ବିଧିତ୍ସତା ।
ପରପ୍ରତ୍ୟୟତୋ ଯତ୍ତୁ କ୍ରିୟତେ ତେନ କା ରତିଃ ॥ ୪ ॥

ନାନ୍ୟପ୍ରତ୍ୟୟତୋ ବାଗାବଭାତି ମୁଦେ ସତାମ୍ ।
ପରେଣ ଧୃତମୁକ୍ତେବ ସରସା କୁସୁମାବଳୀ ॥ ୫ ॥

ମୁଖ୍ୟସ୍ତାବଦୟଂ ନ୍ୟାୟୋ ଯତ୍ସ୍ୱଶକ୍ତ୍ୟା ପ୍ରବର୍ତ୍ତତେ ।
ଅନ୍ୟସାରସ୍ୱତା ନାମ ସନ୍ତ୍ୟନ୍ୟୋକ୍ତ୍ୟନୁବାଦନଃ ॥ ୬ ॥

ପ୍ରଣୀତରର୍ଥେଷୁ ଯତସ୍ତଂ ଶବ୍ଦଂ ବ୍ରୁବତେଽପରେ ।
ଧୂମଭ୍ରଷୋରପି ପ୍ରାପ୍ତା ଶକ୍ତତାଽନ୍ୟାନୁମା ପ୍ରତି ॥ ୭ ॥

---

୪) କାବ୍ୟ ରଚନା ପାଇଁ ଅଭିଳାଷୀ କବି ବ୍ୟାକରଣ ଶାସ୍ତ୍ରକୁ ଆୟତ୍ତ କରିବା ଉଚିତ । ଅନ୍ୟର ରଚନାକୁ ପ୍ରାମାଣିକ ମନେ କରି କାବ୍ୟ ରଚନା କରାଗଲେ, ସେଥିରୁ ତୃପ୍ତି ବା ଆନନ୍ଦ ମିଳେ ନାହିଁ ।

ନିଜେ ବ୍ୟାକରଣ ନପଢ଼ି ଅନ୍ୟର ରଚନାକୁ ଶୁଦ୍ଧ ମନେ କରାଗଲେ, ସେଥିରେ ଭ୍ରାନ୍ତିର ଅବକାଶ ଥାଏ । ଅତଏବ ରଚନାପୂର୍ଣ୍ଣ ସନ୍ତୋଷ ପ୍ରଦାନ କରିପାରେ ନାହିଁ ।

୫) ଅନ୍ୟର ଅନୁଭବରୁ ଆହୃତ ଶବ୍ଦ ରୂପୀ ବାଣୀ ଅନ୍ୟ ଜଣେ ପରିଧାନ କରି ପରିତ୍ୟାଗ କରିଥିବା ସରସ ପୁଷ୍ପମାଳା ପରି ପଣ୍ଡିତଙ୍କୁ ଆନନ୍ଦ ଦିଏ ନାହିଁ ।

ପୂର୍ବୋକ୍ତ ବିଷୟକୁ ଅନ୍ୟ ଭାବରେ ପ୍ରକାଶ କରାଯାଇଛି । ମାଳାଟି ସୁନ୍ଦର, ସରସ ଓ ସୌରଭଯୁକ୍ତ ହୋଇପାରେ । କିନ୍ତୁ ଜଣେ ତାହାକୁ ପିନ୍ଧି ପରିତ୍ୟାଗ କଲା ପରେ ସେ ମାଳା ଆନନ୍ଦ ଦେଇପାରେ ନାହିଁ । ସେହିପରି କାବ୍ୟ ସରସ ହୋଇପାରେ । କିନ୍ତୁ ଲେଖକର ପ୍ରୌଢ଼ି ବଦଳରେ ଅନୁକରଣ ହିଁ ଝଲସି ଉଠିବ । ଏହା ଲେଖକର ଶକ୍ତି ହୀନତା ଅଟେ ।

୬) ମୁଖ୍ୟ ନ୍ୟାୟ ଏହା ଅଟେ ଯେ, କବି ନିଜ ଶକ୍ତି ବଳରେ କାବ୍ୟ ରଚନାରେ ପ୍ରବୃତ୍ତ ହେବା ବିଧେୟ । ଯେଉଁମାନେ ଅନ୍ୟର କଥନକୁ ଅନୁବାଦ କରନ୍ତି, ସେମାନେ 'ଅନ୍ୟ ସାରସ୍ୱତ' ନାମରେ କଥିତ ହୁଅନ୍ତି ।

ଅନ୍ୟର ପ୍ରୟୋଗକୁ ଆଶ୍ରୟ କରି କାବ୍ୟ ରଚନା କରାଯାଇପାରେ । କିନ୍ତୁ ତା' ଅପେକ୍ଷା ନିଜେ ବ୍ୟାକରଣ ଅନୁଶୀଳନ କଲେ ଶବ୍ଦର ଶୁଦ୍ଧତା ବିଷୟରେ ବିବେକ ଜାଗ୍ରତ ହୁଏ । ଅନ୍ୟର ଉକ୍ତିକୁ ଉଦ୍ଧାର କରିବା ଦ୍ୱାରା କବି ନିଜର ମୌଳିକତା ହରାଇ ବସେ । ଅନୁବାଦ ମାତ୍ର କରେ ବୋଲି କହିବାକୁ ହେବ ।

ନନ୍ୱକାରାଦିବର୍ଣ୍ଣାନାଂ ସମୁଦାୟୋଽଭିଧେୟବାନ ।
ଅର୍ଥପ୍ରତୀତୟେ ଗୀତଃ ଶବ୍ଦ ଇତ୍ୟଭିଧୀୟତେ ॥ ୮ ॥

୭) ଶବ୍ଦ କାହାକୁ କହନ୍ତି— କେତେକ କହନ୍ତି-ଯେଉଁଥିରୁ ଅର୍ଥ ପ୍ରତୀତ ହୁଏ, ତାହା ଶବ୍ଦ । ତେବେ ଅଗ୍ନିର ପ୍ରତୀତିରେ ଧୂମ ଓ ପ୍ରକାଶକୁ ମଧ୍ୟ ଶବ୍ଦ କହିବାକୁ ପଡ଼ିବ ।

ଶବ୍ଦର ଲକ୍ଷଣ ପ୍ରସଙ୍ଗରେ କେତେକ ବ୍ୟକ୍ତି କହନ୍ତି-ଯେଉଁଥିରୁ ଅର୍ଥ (ବସ୍ତୁ) ପ୍ରତୀତ ହୁଏ ତାହା ଶବ୍ଦ । କିନ୍ତୁ ଗ୍ରନ୍ଥକାର ଏ ଉକ୍ତିକୁ ଖଣ୍ଡନ କରି କହନ୍ତି-- ଯଦି ଶବ୍ଦର ଏହା ଲକ୍ଷଣ ହୁଏ, ତେବେ ଧୂଆଁ ଓ ଆଲୋକକୁ ମଧ୍ୟ ଶବ୍ଦ କହିବାକୁ ପଡ଼ିବ । କାରଣ ସେଥିରୁ ଅଗ୍ନିରୂପ ଅର୍ଥର ପ୍ରତୀତି ହୁଏ । କିନ୍ତୁ ସମସ୍ତେ ଏଥିରେ ଏକମତ ହେବେ ଯେ, ଧୂଆଁ ବା ଆଲୋକ ଶବ୍ଦ ନୁହେଁ, ଅନୁମାନର ସାଧନ ଅଟେ ।

ପୁଣି ଲୋକ ବ୍ୟବହାରରେ ସାଧାରଣ ଅର୍ଥର ପ୍ରତୀତି ଶବ୍ଦ ବ୍ୟତୀତ ଅନ୍ୟ କେତେକ ମାଧ୍ୟମରେ ମଧ୍ୟ ସମ୍ଭବ ହୁଏ ।

ଯଥା— ଆକାରୈରିଙ୍ଗିତୈର୍ଗତ୍ୟା ଚେଷ୍ଟୟା ଭାଷଣେନ ଚ ।
ନେତ୍ରବକ୍ତ୍ରବିକାରେଣ ଲକ୍ଷ୍ୟତେଽନ୍ତର୍ଗତଂ ମନଃ ॥

ଆକାର, ଇଙ୍ଗିତ, ଗତି, ଚେଷ୍ଟା, ଭାଷଣ ତଥା ମୁଖ ଓ ନେତ୍ରର ଭଙ୍ଗୀ ଆଦିରୁ ମଧ୍ୟ ମନର ଭାବ ବ୍ୟକ୍ତ ହୁଏ । ତେବେ ଶବ୍ଦ କାହାକୁ କହିବା ? ଶବ୍ଦ ବାସ୍ତବରେ ଭାଷିକ ଅଭିବ୍ୟକ୍ତି ଅଟେ । ଯାହା ଉପର୍ଯୁକ୍ତ ସାଧନ ଅପେକ୍ଷା ଲୋକ ବ୍ୟବହାରର ଲଘୁତମ ଉପାୟ ଅଟେ । ତେଣୁ ଯାସ୍କ କହନ୍ତି—

"ଅଣୀୟସ୍ତ୍ୱାଚ୍ଚ ଶବ୍ଦେନ ସଂଜ୍ଞାକରଣଂ ବ୍ୟବହାରାର୍ଥଂ ଲୋକେ ।"

ପୁଣି ଶାସ୍ତ୍ରଚର୍ଚ୍ଚା ଇଙ୍ଗିତ ଦ୍ୱାରା ସମ୍ଭବ ନୁହେଁ । କିନ୍ତୁ ଶବ୍ଦ ଦ୍ୱାରା ପ୍ରସ୍ତୁତ କରାଯାଇପାରେ । ଏହା ହିଁ ଶବ୍ଦର ବ୍ୟାପକତା । ବ୍ୟାପ୍ତିମତ୍ତ୍ୱାତ୍ତୁ ଶବ୍ଦସ୍ୟ (ଯାସ୍କ) ।

୮) ଅନ୍ୟମତ— ତେବେ କ'ଣ ଅର୍ଥର ପ୍ରତୀତି ପାଇଁ ଉଚ୍ଚାରିତ ଅକାର ଆଦି ବର୍ଣ୍ଣ ମାନଙ୍କର ଅର୍ଥଯୁକ୍ତ ସମୁଦାୟକୁ ଶବ୍ଦ ବୁଝାଯିବ ?

ମୂଳତଃ ବର୍ଣ୍ଣ ସମୁଦାୟ ହିଁ ଶବ୍ଦ । କେବଳ ଅତିବ୍ୟାପ୍ତି-ଅବ୍ୟାପ୍ତି ଦୋଷ ନିରାକରଣ ପାଇଁ କେତେକ ବିଶେଷତା ଦିଆଯାଇଛି । କେବଳ ବର୍ଣ୍ଣ ସମୁଦାୟକୁ ଶବ୍ଦ କହିଲେ, ଅର୍ଥହୀନ ବର୍ଣ୍ଣ ସମୁଦାୟ ମଧ୍ୟ ଶବ୍ଦ ହୋଇଯିବ । ଏଥିପାଇଁ ସାର୍ଥକ ବିଶେଷଣ ପ୍ରଯୁକ୍ତ । ବର୍ଣ୍ଣ ସମୁଦାୟ ନକହିଲେ, ଧୂମ ବା ପ୍ରକାଶ ଅର୍ଥ ପ୍ରତୀତି [ଅନୁମାନ]ର ସାଧନ ମଧ୍ୟ ଶବ୍ଦ ହୋଇଯିବ । ଉଚ୍ଚାରିତ ବିଶେଷଣ ଲିପି ଠାରୁ ପାର୍ଥକ୍ୟ ଦେଖାଇବା ପାଇଁ ଅଭିପ୍ରେତ । ତେଣୁ ଶବ୍ଦତ୍ୱ ନିଷ୍ପତ୍ତି ପାଇଁ ଉଚ୍ଚାରିତତା, ବର୍ଣ୍ଣ ସମୁଦାୟତା ଓ ସାର୍ଥକତା ସଯୋଜିତ ।

ପ୍ରତ୍ୟେକମସମର୍ଥାନାଂ ସମୁଦାୟୋଽର୍ଥବାନ୍‌କଥମ୍ ।
ବର୍ଣ୍ଣାନାଂ କ୍ରମବୃତ୍ତିତ୍ତ୍ୱାନନ୍ୟାସ୍ୟା ନାପି ଚ ସହତଃ ॥ ୯ ॥

ନହ୍ୟପି ସମୁଦାୟିଭ୍ୟଃ ସମୁଦାୟୋଽନ୍ତିରଚ୍ୟତେ ।
ଦାରୁଭିତ୍ତିଭୂବୋଽଜ୍ଞାତ୍ୟ କମନ୍ୟତ୍‌ସଦ୍ମ କଲ୍ପତେ ॥ ୧୦ ॥

ତସ୍ମାତ୍‌କୃଟସ୍ଥ ଇତ୍ୟେଷା ଶାବ୍ଦୀ ବଃ କଲ୍ପନା ବୃଥା ।
ପ୍ରତ୍ୟକ୍ଷମନୁମାନଂ ବା ସହତତ୍ ପରମାର୍ଥତଃ ॥ ୧୧ ॥

---

୯-୧୦) **ଏହି ମତରେ ଆପତ୍ତି** — ପ୍ରଶ୍ନ ଉଠେ ପ୍ରତ୍ୟେକ ବର୍ଣ୍ଣ ଅର୍ଥ ପ୍ରକାଶରେ **ଅସମର୍ଥ ହେତୁ** ଅସମର୍ଥ ବର୍ଣ୍ଣର ସମୁଦାୟ କିପରି ଅର୍ଥବାନ ହୋଇପାରିବ ? ପୁଣି ବର୍ଣ୍ଣଗୁଡ଼ିକ କ୍ରମ ଉଚ୍ଚାରିତ ହେତୁ ସେଗୁଡ଼ିକର ସମୁଦାୟ ସଙ୍ଗତ ନୁହେ ।

ଅବୟବୀ ଠାରୁ ଅବୟବ ପୃଥକ୍ ନୁହେ । ଯେପରି କାଠ, କାନ୍ଥ ଓ ଭୂମିକୁ ଛାଡ଼ି ଭବନର କଳ୍ପନା କରାଯାଏନା । ଏହି ଦୁଇକାରିକାରେ ସ୍ଫୋଟବାଦୀଙ୍କ ଦ୍ୱାରା ପ୍ରଦର୍ଶିତ ଦୋଷ ଉପସ୍ଥାପିତ । [ଅଷ୍ଟମ କାରିକାରେ ପ୍ରଦର୍ଶିତ ଶବ୍ଦ ଲକ୍ଷଣ ସମ୍ବନ୍ଧରେ ଆପତ୍ତି] । ଯଦି ସାର୍ଥକ ବର୍ଣ୍ଣ ସମୁଦାୟକୁ ଶବ୍ଦ କୁହାଯାଏ, ତେବେ ଅର୍ଥବୋଧ କରାଇବା ଶକ୍ତି କାହାର ରହିଛି ? ଗୋଟିଏ ଗୋଟିଏ ବର୍ଣ୍ଣରେ ନା ବର୍ଣ୍ଣ ସମଷ୍ଟିରେ ? ଯଦି କୁହାଯାଏ ଗୋଟିଏ ଗୋଟିଏ ବର୍ଣ୍ଣରେ ରହିଛି, ତେବେ ଗୋଟିଏ ବର୍ଣ୍ଣର ଉଚ୍ଚାରଣରେ ଅର୍ଥ ପ୍ରତୀତ ହୋଇଯିବା କଥା, କିନ୍ତୁ ତାହା ହେଉନାହିଁ । ତେବେ ବର୍ଣ୍ଣ ସମୁଦାୟରୁ ଅର୍ଥ ପ୍ରତୀତ ହୁଏ କି ? ତାହା ମଧ୍ୟ ଦୋଷଶୂନ୍ୟ ନୁହେ ।

କାରଣ ଅବୟବର ମିଳନରେ ଅବୟବୀର ନିର୍ମାଣ ହୁଏ । ଯେପରି ଚିନିର ପ୍ରତ୍ୟେକ ଦାନା ମଧୁର ହେତୁ ତାର ସମୂହରେ ନିର୍ମିତ ମିଶ୍ରି ମଧ୍ୟ ମଧୁର । ଯଦି ଚିନି ବଦଳରେ ବାଲି ଦାନାକୁ ଜମା କରାଯାଏ, ତେବେ ମଧୁର ହେବ କି ? ସେହିପରି ଅବୟବ ରୂପ ବର୍ଣ୍ଣ ନିରର୍ଥକ । ସେହି ନିରର୍ଥକ ବର୍ଣ୍ଣ ସମୁଦାୟ କିପରି ସାର୍ଥକ ହେବ । ପୁଣି ଦ୍ୱିତୀୟ ଆପତ୍ତି ରହିଛି-ସମୁଦାୟର ଅର୍ଥ ଅନେକ ସମାନ ବସ୍ତୁର ଏକସ୍ଥାନ ଓ କାଳରେ ରହିବା, କିନ୍ତୁ ଅନେକ ବର୍ଣ୍ଣ ଏକକାଳରେ ଉପସ୍ଥିତ ହୋଇପାରିବେ ନାହିଁ । କାରଣ ବର୍ଣ୍ଣର ଉଚ୍ଚାରଣ ଗୋଟିଏ ପରେ ଅନ୍ୟଟି ହୁଏ । ଯଥା-'କମଲ'ରେ ତିନିଗୋଟି ବର୍ଣ୍ଣ ରହିଛି । 'କ' ଉଚ୍ଚାରଣ ବେଳେ ମ ଓ ଲ ନାହିଁ । ମ ଉଚ୍ଚାରଣ ବେଳେ କ ଓ ଲ ନାହିଁ ଇତ୍ୟାଦି । ଉଚ୍ଚାରଣ ସହିତ ପ୍ରତ୍ୟେକ ବର୍ଣ୍ଣ ଅବିଲମ୍ବେ ନଷ୍ଟ ହେଉଥିବାରୁ କ୍ଷଣିକ ଉଚ୍ଚାରିତ ବର୍ଣ୍ଣ ଗୁଡ଼ିକର ସମୁଦାୟ ସମ୍ଭବ କି ? ତେଣୁ ବର୍ଣ୍ଣ ସମୁଦାୟ ଶବ୍ଦ ଅଟେ କହିବା ଅଯୌକ୍ତିକ ।

ଶପଥୈରପି ଗ୍ରାହ୍ୟମିଦଂ ବଚୋ ନ ସ୍ଫୋଟବାଦିନାମ୍ ।
ନଭଃକୁସୁମମସ୍ତୀତି ଶ୍ରଦ୍ଦଧ୍ୟାତ୍କଃ ସଚେତନଃ ॥ ୧୨ ॥

ଇୟନ୍ତ ଈଦୃଶା ବର୍ଣ୍ଣା ଈଦୃଗର୍ଥାଭିଧାୟିନଃ ।
ବ୍ୟବହାରାୟ ଲୋକସ୍ୟ ପ୍ରାଗିତ୍ଥଂ ସମ୍ମତାଃ କୃତାଃ ॥ ୧୩ ॥

---

୧୧) **ଶବ୍ଦର ସ୍ୱରୂପ**— ଅତଃ ଶବ୍ଦ ନିତ୍ୟ ଅଟେ । (ସ୍ଫୋଟବାଦୀଙ୍କ ମତ) ଗ୍ରନ୍ଥ ଏହି ମତକୁ ଖଣ୍ଡନ କରି କହନ୍ତି-ଶବ୍ଦ ସମ୍ବନ୍ଧୀ ତୁମର ଏ କଳ୍ପନା ଅଗ୍ରାହ୍ୟ ଅଟେ । କାରଣ ପ୍ରତ୍ୟକ୍ଷ ବା ଅନୁମାନ ଦ୍ୱାରା ଯାହା ସିଦ୍ଧ ତାହା ପରମାର୍ଥ ଅଟେ ।

ସ୍ଫୋଟବାଦୀଙ୍କ ମତ-ଉପର୍ଯ୍ୟୁକ୍ତ ଦୋଷ ପରିହାର ପାଇଁ ବୈୟାକରଣମାନେ ସ୍ଫୋଟର କଳ୍ପନା କରିଛନ୍ତି । ସ୍ଫୋଟ ସ୍ଫୁଟ୍ ଧାତୁରୁ ନିଷ୍ପନ୍ନ, ଯାହାର ଅର୍ଥ ବାହାରିବା । ସ୍ଫୁଟତି ଅର୍ଥ ଅସ୍ମାତ୍ ଇତି ସ୍ଫୋଟଃ ଅର୍ଥାତ୍ ଯେଉଁଥିରୁ ଅର୍ଥ ନିର୍ଗତ ହୁଏ ତାହା ସ୍ଫୋଟ । ପୂର୍ବରୁ କୁହାଯାଇଛି-ଅର୍ଥ ପ୍ରତୀତି ଗୋଟିଏ ବର୍ଣ୍ଣରୁ ବା ବର୍ଣ୍ଣ ସମୁଦାୟରୁ ସମ୍ଭବ ନୁହେଁ । ପୁଣି ଉଚ୍ଚାରଣ ସହିତ ବର୍ଣ୍ଣର ବିନାଶ ହେତୁ ସମୁଦାୟ ସମ୍ଭବ ନୁହେଁ । ଏହି କଠିନତା ଦୂର କରିବା ପାଇଁ ସ୍ଫୋଟର କଳ୍ପନା ।

ସ୍ଫୋଟର ଅର୍ଥ-ନିତ୍ୟ ଅଖଣ୍ଡ ଶବ୍ଦ । ଏହି ସିଦ୍ଧାନ୍ତ ଅନୁସାରେ ଶବ୍ଦ ନଷ୍ଟ ହୁଏ ନାହିଁ ବା ଖଣ୍ଡିତ ହୁଏ ନାହିଁ । ଯଥା-କମଳରେ ତିନିଗୋଟି ବର୍ଣ୍ଣଖଣ୍ଡର ମିଳନ ହୋଇଛି । ଆମର ଉଚ୍ଚାରଣ ଅସାମର୍ଥ୍ୟରୁ ଏପରି ବୋଧହୁଏ । ସମ୍ଭବ ହୋଇଥିଲେ ଆମେ ଏ ସମସ୍ତ ଧ୍ୱନିକୁ ଏକସଙ୍ଗରେ ଉଚ୍ଚାରଣ କରିଦେଇଥାନ୍ତେ । ଏହି ଧ୍ୱନି ସମୂହରୁ ଯେଉଁ ଅର୍ଥ (ବସ୍ତୁ)ର ବୋଧହୁଏ ତାହା ଅଖଣ୍ଡ ରୂପରେ ଆମ ବୁଦ୍ଧିରେ ସ୍ଫୁରିତ ହୁଏ ।

ଗ୍ରନ୍ଥାକାର ଦ୍ୱାରା ସ୍ଫୋଟବାଦୀଙ୍କ ମତ ଖଣ୍ଡନ-ଶବ୍ଦ ସମ୍ବନ୍ଧୀ ସ୍ଫୋଟବାଦୀଙ୍କ ଏହି କଳ୍ପନା ନିରାଧାର ଅଟେ । କାରଣ ଏହାର ସିଦ୍ଧି ପ୍ରତ୍ୟକ୍ଷ ବା ଅନୁମାନ ଦ୍ୱାରା ହୁଏ ନାହିଁ । ସେହି ବସ୍ତୁର ଅସ୍ତିତ୍ୱ ସ୍ୱୀକୃତ, ଯାହା ପ୍ରତ୍ୟକ୍ଷ ହୁଏ ବା ଅନୁମାନ ଦ୍ୱାରା ସମର୍ଥିତ ହୁଏ । ବର୍ଣ୍ଣ ପ୍ରତ୍ୟକ୍ଷ ହୁଏ, ସ୍ଫୋଟ ନୁହେଁ । କିନ୍ତୁ ସ୍ଫୋଟବାଦୀ ବର୍ଣ୍ଣଠୁ ଭିନ୍ନ କୌଣସି ତତ୍ତ୍ୱକୁ ଶବ୍ଦ ବୋଲି କହନ୍ତି । ପ୍ରତ୍ୟକ୍ଷ ପ୍ରମାଣରେ ବାଧା ଉପସ୍ଥିତ ହେତୁ ଅନୁମାନର ସାହାଯ୍ୟ ନିଆଯାଇପାରେ । କିନ୍ତୁ ସ୍ଫୋଟ ଅନୁମାନ ପ୍ରମାଣ ଦ୍ୱାରା ମଧ୍ୟ ସିଦ୍ଧ ହୁଏ ନାହିଁ । କାରଣ ଅନୁମାନରେ ସାଧ୍ୟ ଓ ସାଧନର ବ୍ୟାପ୍ତି ଘଟେ । ଏଠାରେ ସେପରି କୌଣସି ବ୍ୟାପ୍ତି ନଥିବାରୁ କୌଣସି ଆଧାରରେ ସ୍ଫୋଟ ସ୍ୱୀକୃତ ନୁହେଁ ।

୧୨) ତେଣୁ ଶପଥ କରି କହିଲେ ମଧ୍ୟ ସ୍ଫୋଟବାଦୀଙ୍କ ସିଦ୍ଧାନ୍ତ ଗ୍ରହଣ ଯୋଗ୍ୟ ନୁହେଁ । ଆକାଶ କୁସୁମ ଅଛି, ଏ କଥାରେ କେଉଁ ସଚେତନ ବିଶ୍ୱାସ କରିବ ?

ସ କୂଟସ୍ଥୋଽନପାୟୀ ଚ ନାଦାଦନ୍ୟଶ୍ଚ କଥ୍ୟତେ ।
ମନ୍ଦାଃ ସାଂକେତିକାନର୍ଥାନ୍‌ମନ୍ୟନ୍ତେ ପାରମାର୍ଥିକାନ୍ ॥ ୧୪ ॥

---

(ଗ) ଗ୍ରନ୍ଥକାରଙ୍କ ମତ— ଅତଏବ ଏହା ଗ୍ରହଣଯୋଗ୍ୟ ଯେ, ନିର୍ଦ୍ଦିଷ୍ଟ ବର୍ଣ୍ଣ ସମୁଦାୟ ନିର୍ଦ୍ଦିଷ୍ଟ ଅର୍ଥର ଅଭିଧାୟକ ଅଟନ୍ତି । ସୃଷ୍ଟି ପ୍ରାରମ୍ଭରୁ ଲୋକ ବ୍ୟବହାର ପାଇଁ ଏହି ପ୍ରକାର ସଙ୍କେତ କରାଯାଇଛି ।

ସ୍ଫୋଟବାଦୀଙ୍କ ମତକୁ ଖଣ୍ଡନ କରି ଗ୍ରନ୍ଥକାର ନିଜ ମତ ପ୍ରସ୍ତୁତ କରିଛନ୍ତି । ସୃଷ୍ଟି ଆରମ୍ଭ କାଳରୁ ଏହି ସଙ୍କେତ ନିଶ୍ଚିତ ହୋଇଛି ଯେ, ଏତେକ ବର୍ଣ୍ଣ ଏହି କ୍ରମରେ ଉଚ୍ଚାରିତ ହେଲେ ଅମୁକ ଅର୍ଥ ପ୍ରକାଶ କରିବ । ଯେପରି କ ପରେ ମ ଓ ମ ପରେ ଲ ରହିଲେ ପୁଷ୍ପ ବିଶେଷ ବୁଝାଇବ । ଏହା ପ୍ରଥମରୁ ହିଁ ନିଶ୍ଚିତ ହୋଇଛି । ଏହିପରି ଅନନ୍ତ ସଙ୍କେତ ଦ୍ୱାରା ଲୋକ ବ୍ୟବହାର ପ୍ରଚଳିତ ।

(ସ୍ୱାମିଙ୍କ ଏହି ମତ ଯେ ଦୋଷଶୂନ୍ୟ ତାହା କୁହାଯାଇପାରିବ ନାହିଁ)

(୧) ଶବ୍ଦର ସ୍ୱରୂପ— ସେହି ଶବ୍ଦ ନିତ୍ୟ ଓ ଅବିନାଶୀ । ତଥା ଧ୍ୱନି ଠାରୁ ଭିନ୍ନ ଅଟେ । ମନ୍ଦବୁଦ୍ଧି ବ୍ୟକ୍ତି ସାଂକେତିକ ଅର୍ଥକୁ ପରମାର୍ଥ ମନେ କରନ୍ତି ।

ଏଥିରେ ପ୍ରତିପକ୍ଷୀଙ୍କ ସନ୍ଦେହକୁ ସ୍ୱାମିଜୀ ଖଣ୍ଡନ କରିଛନ୍ତି । ବିରୁଦ୍ଧବାଦୀ କହନ୍ତି-ଙ୍କ ଜାଣିବାରେ ଯେଉଁ ସଙ୍କେତ ନିର୍ଦ୍ଦେଶିତ ତାହା ବର୍ଣ୍ଣରୁ ନିଷ୍ପନ୍ନ । କିନ୍ତୁ ବର୍ଣ୍ଣ ଅନିତ୍ୟ । କାରଣ ଉଚ୍ଚାରଣ ସହିତ ତାହା ନଷ୍ଟ ହୁଏ । ତେଣୁ ଅନିତ୍ୟ ଅବୟବ (ବର୍ଣ୍ଣ)ରେ ନିଷ୍ପନ୍ନ ସଙ୍କେତ (ଶବ୍ଦ) ମଧ୍ୟ ଅନିତ୍ୟ ହେବ । ଫଳରେ ସେଥିରୁ ଦ୍ୱିତୀୟବାର ଅର୍ଥବୋଧ ହେବ ନାହିଁ । ତେଣୁ ପ୍ରତିଦିନ ନୂଆ ସଙ୍କେତ କରିବା ଅନିବାର୍ଯ୍ୟ ।

ପୁଣି ବର୍ଣ୍ଣ ସମୁଦାୟକୁ ଶବ୍ଦ ବୋଲି ଗ୍ରହଣ କରିବା ପରେ ପ୍ରଜ୍ଞାଗ୍ରନ୍ଥରେ ନାଦ (ଧ୍ୱନି)କୁ ମଧ୍ୟ ଶବ୍ଦ ରୂପେ ସ୍ୱୀକାର କରାଯାଇଛି । ଯେହେତୁ ବର୍ଣ୍ଣ ହିଁ ନାଦ ସ୍ୱରୂପ । ଅର୍ଥାତ୍ ବର୍ଣ୍ଣ ଧ୍ୱନିରୁ ଭିନ୍ନ ନୁହେଁ । ବର୍ଣ୍ଣ ସମୁଦାୟ ଶବ୍ଦ ହେତୁ, ଶବ୍ଦ ମଧ୍ୟ ଧ୍ୱନି ଅଟେ । କିନ୍ତୁ ଧ୍ୱନି ଓ ଶବ୍ଦ ମଧ୍ୟରେ ଅଭିବ୍ୟଞ୍ଜକ-ଅଭିବ୍ୟଂଗ୍ୟ ଭାବ ରହିବା ଉଚିତ । ସ୍ୱାମିଜୀ ଉତ୍ତରରେ କହନ୍ତି-ମୁଁ ଯେଉଁ ସଙ୍କେତର ନିର୍ଦ୍ଦେଶ ଦେଇଛି, ତାହା କୂଟସ୍ଥ (ବିକାର ରହିତ-ନିତ୍ୟ)ଏବଂ ଅନପାୟୀ (ଅବିନାଶି) ଅଟେ । ଅର୍ଥାତ୍ ଶବ୍ଦର ପରିବର୍ତ୍ତନ ବା ବିନାଶ ନାହିଁ । ଯଦି କେହି କମଳ କହେ, ତେବେ ସେଥିରୁ ଯେଉଁ ବସ୍ତୁ ବିଶେଷର ବୋଧ ହେବ, ପରେ ବର୍ଣ୍ଣ ଗୁଡ଼ିକ ସେହି କ୍ରମରେ ଉଚ୍ଚାରିତ ହେଲେ ସେହି ଅର୍ଥ ବାହାରିବ । ତେଣୁ ଶବ୍ଦର ନିତ୍ୟତା ଅଖଣ୍ଡିତ ।

ବିନଶ୍ୱରୋଽସ୍ତୁ ନିତ୍ୟୋ ବା ସମ୍ବନ୍ଧୋଽର୍ଥେନ ବା ସତା ।
ନମୋଽସ୍ତୁ ତେଭ୍ୟୋ ବିଦ୍ୱଦ୍‌ଭ୍ୟୋ ପ୍ରମାଣଂ ଯେଽସ୍ୟ ନିଶ୍ଚିତୌ ॥ ୧୫ ॥
ଅନ୍ୟାପୋହେନ ଶବ୍ଦୋଽର୍ଥମାହେତ୍ୟନ୍ୟେ ପ୍ରଚକ୍ଷତେ ।
ଅନ୍ୟାପୋହଶ୍ଚ ନ.ମାନ୍ୟ ପଦାର୍ଥାପାକୃତିଃ କିଲ ॥ ୧୬ ॥
ଯଦି ଗୌରିତ୍ୟୟଂ ଶବ୍ଦଃ କୃତାର୍ଥୋଽନ୍ୟ ନିରାକୃତୌ ।
ଜନକୋ ଗବି ଗୋବୁଦ୍ଧେ ମୃଗ୍ୟତାମପରୋ ଧ୍ୱନିଃ ॥ ୧୭ ॥

---

ଏହି କାରିକାରେ ଶ୍ରୀମନ୍ତ ପ୍ରତିପକ୍ଷୀଙ୍କ ଦ୍ୱିତୀୟ ଆକ୍ଷେପର ଉତ୍ତର ଦେଇଛନ୍ତି— 'ମୁଁ ଯେଉଁ ବର୍ଣ୍ଣ ସମୂହରେ ଶବ୍ଦର ଅଭିବ୍ୟକ୍ତିକୁ ଗ୍ରହଣ କରେ, ତାହା ନାଦ ସ୍ୱରୂପ ନୁହେଁ, ବରଂ ନାଦ ଦ୍ୱାରା ଅଭିବ୍ୟଂଗ୍ୟ ଅଟେ । ନାଦ ବ୍ୟଞ୍ଜକ ଓ ବର୍ଣ୍ଣ ବ୍ୟଙ୍ଗ । ତେଣୁ ଦୁଇଟି ମଧ୍ୟରେ ଭେଦ ସ୍ପଷ୍ଟ ।

୧୫) ସତ୍ତ୍ୱାତ୍ମକ ଅର୍ଥ ସହିତ ଶବ୍ଦର ସମ୍ବନ୍ଧ ନିତ୍ୟ ହେଉ ବା ଅନିତ୍ୟ ହେଉ, ଯେଉଁ ପଣ୍ଡିତମାନେ ଏହାର ନିଶ୍ଚୟରେ ପ୍ରମାଣଭୂତ ଅଟନ୍ତି, ସେମାନଙ୍କୁ ନମସ୍କାର ।

ଶ୍ରୀମନ୍ତ ଏହି ବିବାଦର ଉପସଂହାର କରି କହନ୍ତି-ଶବ୍ଦ ଓ ଅର୍ଥର ସମ୍ବନ୍ଧକୁ ନେଇ ବିଭିନ୍ନ ପ୍ରକାର ମତ ମିଳେ । କେତେକ କହନ୍ତି ନିତ୍ୟ, କେତେକ କହନ୍ତି ଅନିତ୍ୟ । ଉଭୟ ପକ୍ଷ ତର୍କଯୁକ୍ତ । ସେମାନେ ଶ୍ରଦ୍ଧାର ପାତ୍ର ।

୧୬) **ବୌଦ୍ଧଙ୍କ ମତ—** ଅନ୍ୟ କେତେକ (ବୌଦ୍ଧ) କହନ୍ତି-ଅନ୍ୟ ବସ୍ତୁର ଅପୋହ (ନିରାକରଣ) କରି ଶବ୍ଦ ଅର୍ଥବୋଧ କରାଏ । ଅନ୍ୟର ଅପୋହର ଅର୍ଥ-ଅନ୍ୟ ପଦାର୍ଥର ନିରାକରଣ ।

ଅପୋହ = ଅତଦ୍‌ବ୍ୟାବୃତ୍ତି (ନ ତତ୍ = ଅତତ୍ = ସେ ନୁହେଁ, ଅର୍ଥାତ୍ ତା'ଠାରୁ ଭିନ୍ନର ବ୍ୟାବୃତ୍ତି = ନିବୃତ୍ତି ।

ଯେଉଁ ବସ୍ତୁର ବୋଧ ପାଇଁ ଶବ୍ଦ ପ୍ରୟୋଗ କରାଯାଏ, ତା'ଠାରୁ ଭିନ୍ନ ଯେତେ ସବୁ ବସ୍ତୁ ରହିଛି, ସେସବୁ ଦୂର କରିଦେବା, ଅପୋହବାଦର ଉଦ୍ଦେଶ୍ୟ । ସଂକ୍ଷେପରେ କହିଲେ ବୈୟାକରଣ, ନୈୟାୟିକ ଆଦିଙ୍କ ଅର୍ଥବୋଧ ଭାବାତ୍ମକ ବୌଦ୍ଧଙ୍କ ଅର୍ଥବୋଧ ଅଭାବାତ୍ମକ । ସେମାନେ କହନ୍ତି-କମଳ ଶବ୍ଦ ଉଚ୍ଚାରଣ କରିବା ମାତ୍ରେ କମଳ ଭିନ୍ନ ସମସ୍ତ ବସ୍ତୁକୁ ନିରାକରଣ କରିସାରିବା ପରେ ଯେଉଁ ପୁଷ୍ପବିଶେଷ ପାଇଁ ଶବ୍ଦଟି ପ୍ରଯୁକ୍ତ ତାହା ବୋଧ କରାଏ ।

୧୭) **ଅପୋହବାଦର ଖଣ୍ଡନ—** ଯଦି ଗୋ ଶବ୍ଦ ଗୋ ଭିନ୍ନ ଅନ୍ୟ ପଦାର୍ଥର

ଅର୍ଥଜ୍ଞାନଫଳାଃ ଶବ୍ଦା ନ ଚୈକସ୍ୟ ଫଳଦ୍ୱୟମ୍ ।
ଅପବାଦବିଧିଜ୍ଞାନେ ଫଲେ ଚୈକସ୍ୟ ବଃ କଥମ୍ ॥ ୧୮ ॥

ନିରାକରଣରେ ହିଁ କୃତାର୍ଥ ହୋଇଗଲା, ତେବେ ଗୋ ଅର୍ଥ (ପଶୁ ବିଶେଷ) ବୁଝିବା ପାଇଁ ଅନ୍ୟ ଧ୍ୱନି ଖୋଜିବାକୁ ପଡ଼ିବ ।

କୁମାରିଳଙ୍କ ଯୁକ୍ତି-ଅପୋହବାଦ ଅନୁସାରେ ଶବ୍ଦର ଅର୍ଥବୋଧ ସାକ୍ଷାତ ନୁହେଁ, ଅତଦ୍‌ବ୍ୟାବୃତ୍ତି ବା ଅନ୍ୟର ନିରାକରଣ କରେ । ଗୋ ଭିନ୍ନର ନିରାକରଣରେ ତ ଗୋ ଶବ୍ଦର ଶକ୍ତି ସମାପ୍ତ ହୋଇଯାଇଛି । ସେଥିରୁ ଗାଈ (ଗୋ) ଅର୍ଥ କିପରି ବୋଧ ହେବ ? ବର୍ତ୍ତମାନ ବୌଦ୍ଧଙ୍କ ଅନୁସାରେ ଗୋ ଶବ୍ଦ ଉଚ୍ଚାରଣ କରିବା ମାତ୍ରେ ଦୁଇଟି ଅର୍ଥ ସେଥିରୁ ବାହାରିବା ଉଚିତ । (୧) ଗୋ ଭିନ୍ନର ନିରାକରଣ (୨) ଗୋ ଜ୍ଞାନ । ଏହା କିପରି ସମ୍ଭବ ହେବ । ତେଣୁ ଗୋ ଶବ୍ଦ ଉଚ୍ଚାରଣ କଲେ ଯଦି ପ୍ରଥମେ ଅଗୋବ୍ୟାବୃତ୍ତି ହୁଏ, ତେବେ ଗୋ ଜ୍ଞାନ ପାଇଁ ଅନ୍ୟ ଶବ୍ଦ ଖୋଜିବାକୁ ପଡ଼ିବ । ପୁଣି ଏଥିରେ ଅନ୍ୟ ଅନେକ ଅସୁବିଧା ରହିଛି ।

ପ୍ରଥମ କଥା – ଗୋ ଜ୍ଞାନ ଯେପର୍ଯ୍ୟନ୍ତ ନ ହୋଇଛି, ଗୋ ଭିନ୍ନ ଅନ୍ୟ ଅନେକ ବସ୍ତୁର ନିରାକରଣ କିପରି ହେବ ।

ଦ୍ୱିତୀୟ କଥା—ଗୋଟିଏ ଗୋ ର ଜ୍ଞାନ ସୁଗମ ନା ତଦ୍‌ଭିନ୍ନ ଅନ୍ୟ ଅନେକ ବସ୍ତୁର ଜ୍ଞାନ ? ଇତ୍ୟାଦି ।

୧୮) **ତୃତୀୟ ଯୁକ୍ତି** — ଶବ୍ଦର ଫଳ ଅଟେ ଅର୍ଥବୋଧ । ଗୋଟିଏ ଶବ୍ଦରୁ ଦୁଇ ଭିନ୍ନ ଫଳ ହୁଏ ନାହିଁ । କିନ୍ତୁ ବୌଦ୍ଧଙ୍କ କଥନ ଅନୁସାରେ ନିଷେଧ ଓ ବିଧିଜ୍ଞାନ ରୂପକ ଦୁଇଟି ଫଳ ଗୋଟିଏ ଶବ୍ଦରୁ କିପରି ସମ୍ଭବ ହେବ ?

ବୌଦ୍ଧମତାବଲମ୍ବୀ ରତ୍ନକୀର୍ତ୍ତି କହନ୍ତି-ନାସ୍ମାଭିରପୋହଶବ୍ଦେନ ବିଧିରେବ କେବଲୋଽଭିପ୍ରେତଃ । ନାପ୍ୟନ୍ୟବ୍ୟାବୃତ୍ତିମାତ୍ରମ୍ । କିନ୍ତ୍ୱନ୍ୟାପୋହବିଶିଷ୍ଟୋ ବିଧିଃ ଶବ୍ଦାନାମର୍ଥଃ । (ଅପୋହସିଦ୍ଧି) ଅର୍ଥାତ୍ ଗୋଟିଏ ଶବ୍ଦରୁ ନିଷେଧ (ଅନ୍ୟବ୍ୟାବୃତ୍ତି) ଏବଂ ବିଧି ଦୁଇଟି ପ୍ରୟୋଜନ ସିଦ୍ଧ ହୋଇଯାଏ । ଗୋ ଶବ୍ଦ ଉଚ୍ଚାରଣ କରିବା ମାତ୍ରେ ଗୋ ଭିନ୍ନ ଅନ୍ୟବସ୍ତୁର ବ୍ୟାବୃତ୍ତି (ନିଷେଧ) ହେବା ସଙ୍ଗେ ସଙ୍ଗେ ଗୋର ପ୍ରତୀତି (ବିଧି) ମଧ୍ୟ ହୋଇଯାଏ ।

କୁମାରିଳ ଏ ମତକୁ ଖଣ୍ଡନ କରି କହନ୍ତି-ଗୋଟିଏ ଶବ୍ଦ ବିଧି ଅଥବା ନିଷେଧ ଗୋଟିଏ ଅର୍ଥ ପ୍ରକାଶ କରିପାରେ । ଏକ ସଙ୍ଗେ ଦୁଇ ବିପରୀତ ଅର୍ଥ ପ୍ରକାଶ କରିପାରେ ନାହିଁ । ଏହା ଶବ୍ଦ ପ୍ରୟୋଗର ସ୍ୱୀକୃତ ନିୟମ । ଉକ୍ତ ଅଛି - 'ସକୃତ୍ ପ୍ରଯୁକ୍ତଃ ଶବ୍ଦଃ

ପୂର୍ବ ଗୌରିତ୍ୱ ବିଜ୍ଞାନଂ ଗୋଶବ୍ଦ ଶ୍ରବଣ ଦ୍ଭବେତ୍ ।
ଯେନାଗୋ ପ୍ରତିଷେଧାୟ ପ୍ରବୃତ୍ତୋ ଗୌରିତି ଧ୍ୱନିଃ ॥ ୧୯ ॥

ବର୍ଣ୍ଣଭେଦାଦିଦଂ ଭିନ୍ନଂ ବର୍ଣ୍ଣାଃ ସ୍ୱାଂଶ ବିକଳ୍ପିତାଃ ।
କେଣଦାଃ କଂଚ ତଦିବ ଚ୍ୟମିତ୍ୟତୋ ବର୍ତ୍ମ ଦୁସ୍ତରମ୍ ॥ ୨୦ ॥

---

ସଙ୍କେତାର୍ଥଂ ଗମୟତି' ଅର୍ଥାତ୍ ଅରେ ପ୍ରଯୁକ୍ତ ଶବ୍ଦ ସେହି ଅର୍ଥକୁ ହିଁ ବୋଧ କରାଏ । ଏହାର ବକ୍ତାଙ୍କ ଇଚ୍ଛା ସ୍ୱଚ୍ଛନ୍ଦତା ମାତ୍ର । ଅତଏବ ଅପୋହବାଦ ଅଗ୍ରାହ୍ୟ ।

୧୯) ତୃତୀୟ ଯୁକ୍ତି — ସାଧାରଣତଃ ଗୋ ଶବ୍ଦ ଶ୍ରବଣରେ ପ୍ରଥମେ ଗୋ ପଦାର୍ଥ ଜ୍ଞାନ ହୁଏ । ତା'ପରେ ସେଥିରୁ ଗୋ ଭିନ୍ନର ନିଷେଧ (ବ୍ୟାବୃତ୍ତି) ଜ୍ଞାନ ହେବ ।

ଯେ ପର୍ଯ୍ୟନ୍ତ ଜଣେ ଗାଈକୁ ଚିହ୍ନି ନାହିଁ, ସେ ପର୍ଯ୍ୟନ୍ତ କିପରି ସେ ଜାଣିପାରିବ ଯେ ଅନ୍ୟ ସମସ୍ତ ବସ୍ତୁ ଗାଈ ଠାରୁ ଭିନ୍ନ ? ଯଦି ଗୋ ଶବ୍ଦ ଶୁଣିବା ମାତ୍ରେ ଗାଈ ପଦାର୍ଥ ବୋଧ ହୋଇଗଲା, ସେ କାହିଁକି ଗାଈ ଭିନ୍ନ ଅନ୍ୟ ବସ୍ତୁ କଥା ଭାବିବ ? ଲକ୍ଷ୍ୟ ଅଟେ ଗାଈକୁ ଜାଣିବା । ତାହା ନିଷ୍ପନ୍ନ ହୋଇଯିବା ପରେ ଅନ୍ୟ ସମ୍ବନ୍ଧରେ ଚିନ୍ତା ହୁଏ ନାହିଁ । ତେଣୁ ଶବ୍ଦର ବିଧି ଅର୍ଥ ଗ୍ରହଣ ହିଁ ସୁଗମ ।

୨୦) ବର୍ଣ୍ଣର ଭିନ୍ନତାରେ ଶବ୍ଦ ମଧ୍ୟ ଭିନ୍ନ ହୁଏ । ବର୍ଣ୍ଣ ମଧ୍ୟ ନିଜ ଅଂଶର ଭିନ୍ନତାରେ ଭିନ୍ନ ହୋଇଯାଏ । ତେବେ ଶବ୍ଦ କାହାକୁ କହିବା ? ତାହାର ଅର୍ଥ ବା କ'ଣ ହେବ ? ଏ ସମସ୍ତ ବିବେଚନାର ମାର୍ଗ ଦୁର୍ଗମ ଅଟେ ।

କୁମାର ବୌଦ୍ଧଙ୍କ ଅପୋହବାଦକୁ ଖଣ୍ଡନ କରିବା ପରେ ବୌଦ୍ଧଙ୍କ ମତରେ ଶବ୍ଦରେ ଥିବା ଅନୁପପତ୍ତି ବିଷୟ ଆଲୋଚନା କରୁଛନ୍ତି ।

ବୌଦ୍ଧମାନେ କ୍ଷଣିକବାଦୀ । ତାଙ୍କ ମତରେ କୌଣସି ବସ୍ତୁର ସ୍ଥିତି କ୍ଷଣିକରୁ ବେଶି ନୁହେ । ଅତଏବ ବର୍ଣ୍ଣ ମଧ୍ୟ କ୍ଷଣିକ ଅଟେ । କ୍ଷଣିକ ବର୍ଣ୍ଣରେ ନିଷ୍ପନ୍ନ ଶବ୍ଦ ମଧ୍ୟ କ୍ଷଣିକ ହିଁ ହେବ । ସେହି କ୍ଷଣିକ ଶବ୍ଦରୁ ସ୍ଥାୟୀ ଅର୍ଥ କିପରି ନିର୍ଗତ ହେବ ? ଶବ୍ଦ ଓ ଅର୍ଥର ସମ୍ବନ୍ଧ ସ୍ଥାୟୀ ନହେଲେ କୌଣସି ଶବ୍ଦର ଅର୍ଥ ଜାଣିବା ମାତ୍ରେ ବିନଷ୍ଟ ହୋଇଯିବ । କାଲି ପୁଣି ସେହି ଶବ୍ଦର ଅର୍ଥ ଜାଣିବା ପାଇଁ ପୁନର୍ବାର ପ୍ରୟାସ କରିବାକୁ ପଡ଼ିବ ।

କିନ୍ତୁ ଏହା ଅନୁଭବ ବିରୋଧ ଅଟେ । ଆଜି ଜାଣିଥିବା ଶବ୍ଦର ଅର୍ଥ ଜୀବନସାଧ କାମରେ ଲାଗେ । ଅତଏବ ଶବ୍ଦ ଓ ଅର୍ଥର ସମ୍ବନ୍ଧ କ୍ଷଣିକ ନୁହେ ବରଂ ନିତ୍ୟ ଅଟେ ।

ଦ୍ରବ୍ୟକ୍ରିୟାଜାତିଗୁଣ ଭେଦାତ୍ତେ ଚ ଚତୁର୍ବିଧାଃ ।
ଯଦୃଚ୍ଛାଶବ୍ଦମିତ୍ୟନ୍ୟେ ଡିତ୍ଥଦିଂ ପ୍ରତିଜାନତେ ॥ ୨୧ ॥

ନାନାଭାଷା ବିଷୟିଣାମପର୍ଯ୍ୟନ୍ତାର୍ଥ ବର୍ତ୍ତିନାମ୍ ।
ଇୟତ୍ତ କେନ ବାଙ୍ମୀଷାଂ ବିଶେଷାଦବଧାର୍ଯ୍ୟତେ ॥ ୨୨ ॥

---

୨୧) ଶବ୍ଦ ବିଭାଗ— ଏହି ଶବ୍ଦ ଦ୍ରବ୍ୟ, କ୍ରିୟା, ଜାତି ଓ ଗୁଣ ଭେଦରେ ଚାରିପ୍ରକାର ଅଟେ । ଅନ୍ୟ କେତେକ ବିଦ୍ୱାନ ଡିତ୍ଥ, ଡ଼ବିତ୍ଥ ଆଦି ଯଦୃଚ୍ଛା (ନିରର୍ଥକ) ଶବ୍ଦକୁ ମଧ୍ୟ ସ୍ୱୀକାର କରନ୍ତି ।

ଶବ୍ଦ ଚତୁର୍ବିଧ ଯଥା —୧) ଦ୍ରବ୍ୟବାଚକ-ଜଳ, ପୃଥିବୀ ଆଦି
୨) କ୍ରିୟାବାଚକ-ପଢ଼ିବା, ଖେଳିବା ଆଦି
୩) ଜାତିବାଚକ-ମନୁଷ୍ୟ, ପଶୁ, ପକ୍ଷୀ ଆଦି
୪) ଗୁଣବାଚକ-ଉଜ୍ଜ୍ୱଳ, ଶୁକ୍ଳ, ନୀଳ ଆଦି

ଏହି ଚାରି ପ୍ରକାର ମଧ୍ୟରେ ସମସ୍ତ ଶବ୍ଦ ଅନ୍ତର୍ଭୁକ୍ତ । ଏହାବ୍ୟତୀତ କେତେକ ବ୍ୟକ୍ତି ପଞ୍ଚମ ଭେଦ ସ୍ୱୀକାର କରନ୍ତି । ଯଥା-ଯଦୃଚ୍ଛା ବାଚକ । ଯଦୃଚ୍ଛାର ଅର୍ଥ-ବକ୍ତାର ଇଚ୍ଛା ଅନୁରୂପ । ଯଦୃଚ୍ଛା ଦ୍ୱାରା ସଂଜ୍ଞା ବାଚକ ଶବ୍ଦ ଗ୍ରହଣୀୟ । ଯେପରି ଲୋକେ ପିଲାଙ୍କୁ ସ୍ନେହରେ ଡ଼ାକନ୍ତି-ଟୁଟୁ, ମିଟୁ, ଶନୁ, ଖାଗା, ମୋତି, ରାମଚନ୍ଦ୍ର ଆଦି । ଏ ସମସ୍ତ ନାମ ବକ୍ତାର ଇଚ୍ଛାଧୀନ । ଏହା ପକ୍ଷରେ କୌଣସି ତର୍କ ବା ସାର୍ଥକତା ନାହିଁ । ଯଦୃଚ୍ଛାକୁ ଆମେହି ସ୍ୱୀକାର କରନ୍ତି ନାହିଁ । ତେଣୁ ତାଙ୍କ ମତରେ ଶବ୍ଦ ଚତୁର୍ବିଧ ।

୨୨) ଭାଷା ଅନେକ, ଶବ୍ଦ ଅନେକ । ଅନନ୍ତ ଅର୍ଥବୋଧକ ଏହି ଶବ୍ଦ ଗୁଡ଼ିକର ବୈଶିଷ୍ଟ୍ୟ ସହିତ ସୀମା ନିର୍ଦ୍ଧାରଣ କିଏ ବା କରିପାରିବ ?

ସଂସାରରେ ବ୍ୟବହୃତ ଶବ୍ଦ ଗୁଡ଼ିକର ସୀମା ନିର୍ଦ୍ଧାରଣ ଅସମ୍ଭବ । କାରଣ ଭାଷା ଯେପରି ଅନେକ, ସେହିପରି ପ୍ରତ୍ୟେକ ଭାଷାରେ ବ୍ୟବହୃତ ଶବ୍ଦ ମଧ୍ୟ ଅନନ୍ତ । ସେ ସମସ୍ତ ଶବ୍ଦର ବଶିଷ୍ଟ ଜ୍ଞାନ ତ ଦୂରର କଥା, ପରିଚୟ ମଧ୍ୟ ଅସମ୍ଭବ । ମହାଭାଷ୍ୟର ପସ୍ପଶାହ୍ନିକରେ ଲିଖିତ ମହର୍ଷି ପତଞ୍ଜଳିଙ୍କ ଏ ସମ୍ବନ୍ଧୀୟ ଉକ୍ତି ପ୍ରଣିଧାନଯୋଗ୍ୟ ।

"ମହାନ୍ ହି ଶବ୍ଦସ୍ୟ ପ୍ରୟୋଗ ବିଷୟଃ-ସପ୍ତଦ୍ୱୀପା ବସୁମତୀ, ତ୍ରୟୋଲୋକାଃ, ଚତ୍ୱାରୋବେଦାଃ, ସାଙ୍ଗାଃ ସରହସ୍ୟା ବହୁଧା ବିଭିନ୍ନାଃ, ଏକଶତମ ଅଧ୍ୱର୍ଯୁଶାଖାଃ, ସହସ୍ରବର୍ତ୍ମା ସାମବେଦଃ, ଏକବିଂଶତିଧା ବାହ୍ୱୃଚ୍ୟମ୍, ନବଧାଥର୍ବଣୋ ବେଦଃ, ବାକୋ ବାକ୍ୟମ୍, ଇତିହାସଃ, ପୁରାଣମ୍, ବୈଦ୍ୟକମ୍ ଇତ୍ୟେତାବାନ ଶବ୍ଦସ୍ୟ ପ୍ରୟୋଗ ବିଷୟଃ । ଏତାବନ୍ତଂ ଶବ୍ଦସ୍ୟ ପ୍ରୟୋଗ ବିଷୟମ୍, ଅନନୁନିଶମ୍ୟ ସନ୍ତ୍ୟପ୍ରଯୁକ୍ତା

ବହବ ଗୃଂ କବନାଂ ଯେ ପ୍ରୟୋଗଂ ପ୍ରତି ସାଧବଃ ।
ପ୍ରଯୋକ୍ତୁଂ ଯେ ନ ଯୁକ୍ତାଶ୍ଚ ତର୍ଦ୍ଧିବେକୋଽପ୍ୟୁଚ୍ୟତେ ॥ ୨୩ ॥
ନାପ୍ରଯୁକ୍ତଂ ପ୍ରଯୁଂଜୀତ ଚେତଃପ୍ରମୋହକାରିଣମ୍ ।
ତୁଲ୍ୟାର୍ଥତ୍ୱେଽପି ହି ବ୍ରୂୟାତ୍କୋ ହନ୍ତୁଂ ଗତିକାରିଣମ୍ ॥ ୨୪ ॥

---

ଇତି ବଚନଂ କେବଲଂ ସାହସମାତ୍ରମ୍ ।" ଅର୍ଥାତ୍ ଶବ୍ଦ ପ୍ରୟୋଗର କ୍ଷେତ୍ର ବିସ୍ତୃତ ଅଟେ । ସପ୍ତଦ୍ୱୀପରେ ବିଭକ୍ତ ପୃଥିବୀ, ତ୍ରିଲୋକ, ଅଙ୍ଗ ଓ ରହସ୍ୟ ସମନ୍ୱିତ ବହୁଧା ବିଭକ୍ତ ଋଗ୍‌ବେଦ, ଯଜୁର୍ବେଦର ଶତସଙ୍ଖ୍ୟକ ଶାଖା, ସାମବେଦର ସହସ୍ର ଶାଖା, ଋଗ୍‌ବେଦର ୨୧ ପ୍ରକାର ନବଧା ଅଥର୍ବବେଦ, ତର୍କଶାସ୍ତ୍ର ଇତିହାସ, ପୁରାଣ ଆୟୁର୍ବେଦ ଆଦି ଶବ୍ଦ ପ୍ରୟୋଗର ବହୁକ୍ଷେତ୍ର ବିଦ୍ୟମାନ । ଶବ୍ଦ ପ୍ରୟୋଗର ଏହି ବ୍ୟାପକ କ୍ଷେତ୍ରକୁ ନଦେଖି 'ଏହି ଶବ୍ଦ ଅପ୍ରଯୁକ୍ତ' କହିବା ଧୃଷ୍ଟତା ମାତ୍ର ।

୨୩) **କାବ୍ୟୋପଯୋଗୀ ଶବ୍ଦ** – ଯେଉଁ ଶବ୍ଦ ବକ୍ରୋକ୍ତି ପ୍ରବଣ କବିଙ୍କ ପ୍ରୟୋଗ ଯୋଗ୍ୟ ଏବଂ ଯାହା ପ୍ରୟୋଗଯୋଗ୍ୟ ନୁହେଁ ସେ ସମସ୍ତର ବିଚାର କରାଯାଉଛି ।

ଭାମହ ଶବ୍ଦର ଅନନ୍ତ ବିସ୍ତାର ପ୍ରଦର୍ଶନ କରିବା ପରେ ବର୍ତ୍ତମାନ କାବ୍ୟରେ ପ୍ରଯୁକ୍ତ ଶବ୍ଦର ସାଧୁତ୍ୱ ଓ ଅସାଧୁତ୍ୱ ବିଚାର ଉପସ୍ଥାପନ କରୁଛନ୍ତି । ସାଧାରଣ ଦୈନିକ ବ୍ୟବହାରରେ ଆସିବା ଶବ୍ଦ ଓ କାବ୍ୟ ଉପଯୋଗୀ ଶବ୍ଦ ମଧ୍ୟରେ ପ୍ରଭେଦ ରହିଛି । ଏଠାରେ ବକ୍ରୋକ୍ତି ମୂଳକ କାବ୍ୟ ଉପଯୋଗୀ ଶବ୍ଦ ବିଷୟରେ ଆଲୋଚନା କରାଯାଉଛି ।

୨୪) **ଅପ୍ରଯୁକ୍ତ ଶବ୍ଦ**— ମନରେ ଭ୍ରମ ଉତ୍ପନ୍ନ କରୁଥିବା ଅପ୍ରଯୁକ୍ତ ଶବ୍ଦ ବ୍ୟବହାର କରିବା ଅନୁଚିତ । ସମାନ ଅର୍ଥକ ହେଲେ ମଧ୍ୟ ହନ୍ ଧାତୁକୁ ଗତି ଅଥରେ କିଏ ବ୍ୟବହାର କରିବ ?

ଅପ୍ରଯୁକ୍ତର ଅର୍ଥ-ବ୍ୟାକରଣ ନିୟମରେ ଠିକ ଶବ୍ଦ ମଧ୍ୟ ଯଦି ପୂର୍ବବର୍ତ୍ତୀ ଲେଖକ ମାନେ ପ୍ରୟୋଗ କରିନାହାନ୍ତି ତେବେ ତାହା ପ୍ରୟୋଗ ଯୋଗ୍ୟ ନୁହେ । କାରଣ ସେଥିରୁ ଭ୍ରମ ସୃଷ୍ଟି ହୁଏ । ଯଥା-ହନ୍ ଧାତୁର ଅର୍ଥ ମାରିବା ଓ ଗତି କରିବା (ହନ୍-ହିଂସାଗତ୍ୟୋଃ ପାଣିନି ଧାତୁପାଠ) କିନ୍ତୁ ହନ୍ ଧାତୁର ପ୍ରୟୋଗ କେବଳ ମାରିବା ଅର୍ଥରେ ହୋଇ ଆସିଛି । ବର୍ତ୍ତମାନ ଯଦି କେହି ଗତି କରିବା ଅର୍ଥରେ ପ୍ରୟୋଗ କରେ, ତେବେ ଶ୍ରୋତା ବା ପାଠକ ଭ୍ରମିତ ହେବା ସ୍ୱାଭାବିକ ।

ଅନୁରୂପ ଯଥା—ବିଜ୍ଞାନ କୈବର୍ତ୍ତ ଧୋଇଲା - (ବୈ-ବି. ୯-୩) ବିଜ୍ଞାନ ଶବ୍ଦ ବିଶେଷ ପ୍ରକାର ଜ୍ଞାନ ଅର୍ଥରେ ପ୍ରଯୁକ୍ତ । ଅଜ୍ଞାନ ଅର୍ଥ ମନରେ ଭ୍ରମ ସୃଷ୍ଟି କରେ ।

ଶ୍ରୌତିବାଦଂ ନ ତୁ ଦୁର୍ବୋଧଂ ନ ଦୁଷ୍ଟାଦମପେଶଲମ୍ ।
ଗ୍ରାମ୍ୟଂ ନ ପିଣ୍ଡୀଶୂରଦଂ ନ ତତ୍ତ୍ୱାଦମର୍ଥକମ୍ ॥ ୧୫ ॥

ନାପ୍ରତୀତାନ୍ୟଥାର୍ଥଞ୍ଚ ଧାତୁନେକାର୍ଥଭାବଣାତ୍ ।
ନ ଲେଶଜ୍ଞାପକା କୃଷ୍ଟଂ ସ ହନ୍ତି ଧ୍ୟାତି ବା ଯଥା ॥ ୧୬ ॥

---

୧୫) କେଉଁ ଶବ୍ଦ ପ୍ରୟୋଗଯୋଗ୍ୟ ନୁହେଁ— ଶ୍ରୌତ ଆଉ ଦୁର୍ବୋଧ, ଦୁଷ୍ଟ ଆଉ ଅପେଶଳ, ପିଣ୍ଡୀଶୂର ଆଉ ଗ୍ରାମ୍ୟ ଏବଂ ତତ୍ତ୍ୱ ଆଉ ନିରର୍ଥକ ଶବ୍ଦ କାବ୍ୟରେ ପ୍ରଯୁକ୍ତ ହେବା ଅନୁଚିତ ।

ଶ୍ରୋତ୍ର+ଘନ୍, ଚଦଧୀତେ ଅର୍ଥରେ ନିପାତ ହୋଇ ଶ୍ରୋତ୍ରୀୟ ଶବ୍ଦ ନିଷ୍ପନ୍ନ । ଶ୍ରୋତ୍ରୀୟସ୍ୟ ଯଲୋପଶ୍ଚ ବାର୍ତ୍ତିକ ଦ୍ୱାରା ଅଣ୍ ପ୍ରତ୍ୟୟ ଓ ଯ ଲୋପ ପରେ ଶ୍ରୌତ ଶବ୍ଦର ନିଷ୍ପନ୍ନ । ଏହି ଶବ୍ଦ ବ୍ୟାକରଣ ଦୃଷ୍ଟିରୁ ସାଧୁ ହେଲେ ମଧ୍ୟ ଅତି ଅପ୍ରଚଳିତ ହେତୁ ବ୍ୟବହାର ଅଯୋଗ୍ୟ । ଦୁଷ୍ଟ ଶବ୍ଦ କଠିନ ହେତୁ ଅବ୍ୟବହାର୍ଯ୍ୟ । ପିଣ୍ଡୀଶୂର ଅର୍ଥାତ୍ ଗେହେଶୂର ବା ଭୋଜନ ଭଟ୍ଟ । ଏହା ଗ୍ରାମ୍ୟ ଅଟେ । ଏଣୁ ପ୍ରୟୋଗ ଯୋଗ୍ୟ ନୁହେ । ତତ୍ତ୍ୱ, ତତ୍ତତ୍ତ୍ୱ ଆଦି ଅର୍ଥହୀନ ଯୋଗୁଁ ରମଣୀୟ ନୁହେ । ଏ ଧରଣର ଶବ୍ଦ ବ୍ୟବହାର ପ୍ରତି କବି ଅବହିତ ହେବା ବାଞ୍ଛନୀୟ ।

୧୬) ଅପ୍ରତୀତ— ଧାତୁ ଅନେକାର୍ଥକ ଅଟେ । ଯେଉଁ ଅର୍ଥଟି ଅପ୍ରଚଳିତ ବା ଅପ୍ରସିଦ୍ଧ ସେହି ଅର୍ଥରେ ପ୍ରୟୋଗ କରିବା ସମୀଚୀନ ନୁହେ । ସେହିପରି ଲେଶ ମାତ୍ର ଜ୍ଞାପକ ଦ୍ୱାରା ନିଷ୍ପନ୍ନ ଶବ୍ଦ ଅପ୍ରଯୁକ୍ତ ଅଟେ । ଯଥା - ସ ହନ୍ତି ସ ଧ୍ୟାତି ଇତ୍ୟାଦି ।

୧୪ କାରିକାର ବୃତ୍ତିକୁ ପ୍ରକାରାନ୍ତରରେ ଏଥିରେ କୁହାଯାଇଛି । ଅନେକାର୍ଥକ ଧାତୁଗୁଡ଼ିକ ବିଶେଷ ଅର୍ଥରେ ପ୍ରଯୁକ୍ତ ହୋଇ ଆସୁଛନ୍ତି । ଅନ୍ୟ ଅର୍ଥ ଉପେକ୍ଷିତ ହୋଇଛି । ଯେପରି ହରି ଶବ୍ଦ ବହୁ ଅର୍ଥକ । କିନ୍ତୁ ବିଷ୍ଣୁ ଅର୍ଥରେ ପ୍ରଯୁକ୍ତ ଓ ଅଗ୍ନି ଅର୍ଥରେ ଅପ୍ରଚଳିତ ।

ଜ୍ଞାପକର ଅର୍ଥ ଜାଣିବା ବ୍ୟକ୍ତି । ଯଦି କୌଣସି ଶବ୍ଦ ବ୍ୟାକରଣ ନିୟମରେ ଅସିଦ୍ଧ କିନ୍ତୁ ଅନ୍ୟର ପ୍ରୟୋଗରେ ସ୍ୱଳ୍ପ ସାମ୍ୟ ଦେଖି ଟଣାଓଟରାରେ ସିଦ୍ଧ ମନେ କରାଯାଏ, ତେବେ ତାହାକୁ ତାହାର ଜ୍ଞାପକ ବୋଲି କହନ୍ତି । ଭାମହ ଜ୍ଞାପକ ନିଷ୍ପାଦିତ ଶବ୍ଦକୁ ହେୟ ମନେ କରନ୍ତି । କାରଣ ତାହା ନିୟମତଃ ସିଦ୍ଧ ନୁହେ ।

ପ୍ରଥମ ଦୋଷର ଉଦାହରଣ ସ ହନ୍ତି (ସେ ଯାଏ) ହନ୍ ଧାତୁ ହିଂସା ଅର୍ଥରେ ପ୍ରଯୁକ୍ତ ଗମନାର୍ଥରେ ନୁହେ । ଅତଏବ ଗମନ ଅର୍ଥରେ ହନ୍ ଧାତୁର ବ୍ୟବହାର ଅନୁଚିତ । ଦ୍ୱିତୀୟ ଦୋଷର ଉଦାହରଣ ସ ଧ୍ୟାତି (ସେ ଧ୍ୟାନ କରେ) । ଧ୍ୟା ଧାତୁର ଲଟ୍

ନ ଶିଷ୍ଟୈରୁକ୍ତମିତ୍ୟେବ ନ ତନ୍ତ୍ରାନ୍ତରସାଧିତଂ ।
ଛନ୍ଦୋବଦ୍ଧମ ଶ୍ରେସର୍ଗାନ୍ନ ଗୃପି ଛାନ୍ଦସଂ ବଦେତ୍ ॥ ୨୭ ॥

ସମାଗତେଂ ଶ୍ରୁତିସୁଖଂ ଶବ୍ଦମର୍ଥ୍ୟମୁଦାହରେତ୍ ।
ଅତଃପରଂ ସ୍ୟାଲଂକାରମନ୍ୟଂ ବ୍ୟଂଜନସୁନ୍ଦରମ୍ ॥ ୨୮ ॥

---

ପ୍ରଥମ ପୁରୁଷ ଏକବଚନରେ ଝ ଯୁକ୍ତ ରୂପ ହୁଏ । ଯଦି କେହି ଗଣ କାର୍ଯ୍ୟକୁ ଅନ୍ୟଥା ମନେ କରି ଝ ଧ୍ୱନି ବଦଳରେ ଲୁକ୍ କରି ଧାତୁ ରୂପ ଗ୍ରହଣ କରେ ତେବେ ତାହାକୁ ଛାଦସ (ଗଣକାର୍ଯ୍ୟର ଅନ୍ୟଥା) ବୁଝାଯିବ । ଏହି ପ୍ରୟୋଗ ବେଦରେ ହୋଇଛି, ନିୟମ ଅନୁସାରେ ନୁହେଁ । ତେଣୁ ଅବ୍ୟବହାର୍ଯ୍ୟ ଅଟେ ।

୨୭) ଶିଷ୍ଟ ବ୍ୟକ୍ତି ପ୍ରୟୋଗ କରିଛନ୍ତି, ସେହି ଅସାଧୁ ଶବ୍ଦ ପ୍ରୟୋଗ କରିବା ଅନୁଚିତ । ପୁଣି ଅନ୍ୟ ଶାସ୍ତ୍ରରେ ପ୍ରୟୋଗ ପାଇଁ ଯେଉଁ ଶବ୍ଦ ଯଥାର୍ଥ ତାହା କାବ୍ୟରେ ପ୍ରୟୋଗ କରିବା ଗ୍ରହଣୀୟ ନୁହେଁ ।

କୌଣସି ସମ୍ମାନିତ ଲେଖକ ଅସାଧୁ ଶବ୍ଦ ପ୍ରୟୋଗ କରିଥିବା ଦେଖି ସେହି ଭୁଲଟି କଦାପି ଅନୁକରଣୀୟ ନୁହେଁ । ତନ୍ତ୍ରାନ୍ତରର ଅର୍ଥ-ବ୍ୟାକରଣାଦିକ ଶାସ୍ତ୍ର । ଶବ୍ଦର ଶୁଦ୍ଧତା ବ୍ୟାକରଣ ଶାସ୍ତ୍ର ନିର୍ଣ୍ଣୟ କରେ । ତେଣୁ ବ୍ୟାକରଣ ଶାସ୍ତ୍ର ନିୟମକୁ ମାନି ଚଳିବା ଉଚିତ । ବୈଦିକ ପ୍ରୟୋଗ ପ୍ରଚଳିତ ସଂସ୍କୃତରେ ଅଗ୍ରାହ୍ୟ ଅଟେ । ଯଥା- ଅକାରାନ୍ତ ପୁଂଲିଂଗ ଦେବ ଶବ୍ଦର ତୃତୀୟା ବହୁବଚନରେ ବୈଦିକ ପ୍ରୟୋଗ ଦେବୈଃ ଓ ଦେବେଭିଃ ହୁଏ । ସଂସ୍କୃତରେ ଦେବୈଃ ପ୍ରଚଳିତ ଦେବେଭିଃ ନୁହେଁ ।

୨୮) ପ୍ରଯୋଜ୍ୟ ଶବ୍ଦ— ପରଂପରାଗତ, ଶ୍ରୁତି ସୁଖଦ ଓ ଅର୍ଥଯୁକ୍ତ ଶବ୍ଦ କାବ୍ୟରେ ପ୍ରୟୋଗ କରିବା ବିଧେୟ । ଅନ୍ୟ ସମସ୍ତ ଅଳଂକାର ଠାରୁ ବର୍ଣ୍ଣସୌନ୍ଦର୍ଯ୍ୟ ଉତ୍କୃଷ୍ଟ ଅଟେ ।

୨୪ ଠାରୁ ୨୭ କାରିକା ମଧ୍ୟରେ ଯେଉଁସବୁ ଦୋଷ ନିରୂପିତ ତାହା ନିଷେଧ ମୁଖରେ କଥିତ । ବର୍ତ୍ତମାନ ବିଧିମୁଖରେ ପ୍ରଯୋଜ୍ୟ ଶବ୍ଦର ବିବେଚନା କରାଯାଉଛି । ପରମ୍ପରାଗତ କହିବା ଦ୍ୱାରା ଅପ୍ରଯୁକ୍ତ, ଦୁର୍ବୋଧ, ଅପ୍ରତୀତ, ଅନ୍ୟାର୍ଥକ ଓ ଗୂଢାର୍ଥକ କ୍ଲିଷ୍ଟ ନିରାକୃତ । ଶ୍ରବଣ ସୁଖଦ ଦ୍ୱାରା ଗ୍ରାମ୍ୟ ଓ ଅପେଶଳ ପରିହୃତ । ଅର୍ଥଯୁକ୍ତ କହିବା ଦ୍ୱାରା ଅପାର୍ଥକର ନିଷେଧ ହୋଇଛି ।

କବି ଅଳଙ୍କାର ଯୋଜନା ପ୍ରତି ଧ୍ୟାନ ଦେବା ଅପେକ୍ଷା ଶବ୍ଦ ସାଧୁତ୍ୱ ପ୍ରତି ଅଧିକ ମନୋଯୋଗୀ ହେବା ଶ୍ରେୟସ୍କର । ଅଳଙ୍କାର ଚମତ୍କାର ଉତ୍ପନ୍ନ କରେ ସତ, କିନ୍ତୁ ସଦୋଷ ଶବ୍ଦରେ ନିର୍ମିତ ଅଳଙ୍କାର ପାଠକ ମନରେ ଉଦ୍‌ବେଗ ସୃଷ୍ଟି କରେ ।

ସିଦ୍ଧା ଯଦସ୍ତି ଉପସଂଖ୍ୟାନାଦିଷ୍ଟ୍ୟା ଯଦସ୍ତି ପଦାଦିତଃ ।
ତମବ୍ରୂୟେତ ପ୍ରୟତ୍ନେନ ନ ତୁ ଯୋଗବିଭାଗଜମ୍ ॥ ୨୯ ॥

ଇୟଂ ଚନ୍ଦ୍ରମୁଖୀ କନ୍ୟା ପ୍ରକୃତ୍ୟୈବ ମନୋହରା ।
ଅସ୍ୟାଂ ସୁବର୍ଣ୍ଣାଳଂକାରାଃ ପୁଷ୍ଣନ୍ତି ନିତରାଂ ଶ୍ରିୟମ୍ ॥ ୩୦ ॥

ବୃଦ୍ଧିପକ୍ଷଂ ପ୍ରୟୁଂଜୀତ ସଜ୍ଜନୋଽପି ମୁନେର୍ଯଥା ।
ମାର୍ଜନ୍ତ୍ୟଧରବିରାଗଂ ତେ ଚପଟନ୍ତୋ ବାଷ୍ପବିନ୍ଦବଃ ॥ ୩୧ ॥

---

୨୯) ଯେଉଁ ଶବ୍ଦ ବାର୍ତ୍ତିକ ଦ୍ୱାରା ସିଦ୍ଧ ଏବଂ ମହାଭାଷ୍ୟ ଦ୍ୱାରା ପ୍ରମାଣିତ, ତାହାକୁ ହିଁ ଗ୍ରହଣ କରିବା ଉଚିତ । କିନ୍ତୁ ଯୋଗ ବିଭାଗରେ ନିଷ୍ପନ୍ନ ଶବ୍ଦ ନୁହେଁ ।

ଉପସଂଖ୍ୟାନ (କହିବା ଉଚିତ) ବାର୍ତ୍ତିକ ବୋଧକ । କାରଣ ବହୁ ବାର୍ତ୍ତିକରେ କାତ୍ୟାୟନ 'ଉପସଂଖ୍ୟାନ' ଶବ୍ଦଟି ପ୍ରୟୋଗ କରିଥିବାରୁ ଏ ଶବ୍ଦଟି ବାର୍ତ୍ତିକ ବାଚକ ହୋଇଯାଇଛି । ସେହିପରି ଇଷ୍ଟି ମହାଭାଷ୍ୟ ବୋଧକ । ଟୀକାକାରମାନେ ଭାମହ କହନ୍ତି— ପାଣିନି, କାତ୍ୟାୟନ ଓ ପତଞ୍ଜଳି ଏହି ତିନିମୁନିଙ୍କ ଦ୍ୱାରା ନିଷ୍ପନ୍ନ ଶବ୍ଦ ପ୍ରୟୋଗ ଯୋଗ୍ୟ ଅଟେ । କିନ୍ତୁ କେତେକ ପ୍ରୟୋଗ ପାଣିନିଙ୍କ ସୂତ୍ର ଦ୍ୱାରା ସିଦ୍ଧ ହୁଏ ନାହିଁ । ତେଣୁ ପାଣିନିଙ୍କ ସୂତ୍ରକୁ ଭାଙ୍ଗି ଅନ୍ୟ ସୂତ୍ର ସହିତ ଅନ୍ୱୟ କରି କେତେକ ବ୍ୟକ୍ତି ଅଭିମତ ଶବ୍ଦକୁ ସିଦ୍ଧ କରିବା ଅପଚେଷ୍ଟା କରନ୍ତି । ଏହି ପ୍ରଣାଳୀର ନାମ ଯୋଗ ବିଭାଗ । ଯୋଗ ବିଭାଗ ଏକ ପ୍ରକାର ଟଣାଓଟରା । ତେଣୁ ଭାମହ ଯୋଗ ବିଭାଗ ସିଦ୍ଧ ଶବ୍ଦକୁ ସ୍ୱୀକାର କରନ୍ତି ନାହିଁ ।

୩୦) ଉଦାହରଣ— ଏହି ଚନ୍ଦ୍ରପରି ମୁଖ ବିଶିଷ୍ଟା କନ୍ୟା ସ୍ୱଭାବତଃ ସୁନ୍ଦରୀ ଅଟେ । ସୁବର୍ଣ୍ଣ ଆଭୂଷଣ ଏହାର ସୌନ୍ଦର୍ଯ୍ୟକୁ ଅତ୍ୟଧିକ ବର୍ଦ୍ଧନ କରେ ।

ବାର୍ତ୍ତିକ ସିଦ୍ଧ ପ୍ରୟୋଗର ଏହା ଉଦାହରଣ । ପାଣିନିଙ୍କ ସୂତ୍ର 'କର୍ତ୍ତୃକରଣୟୋସ୍ତୃତୀୟା' ଅନୁସାରେ ଅନଭିହିତ କର୍ତ୍ତା ଓ କରଣରେ ତୃତୀୟା ବିଭକ୍ତି ହୁଏ । ଯଥା— ରାମେଣ ପଠିତମ୍ ଏଠାରେ ଅନଭିହିତ କର୍ତ୍ତାରେ ତୃତୀୟା ପୁଣି 'ରାମଃ ବାଣେନ ରାବଣଂ ହତବାନ୍' ଏଠାରେ ବାଣେନ କରଣେ ତୃତୀୟା । ଏହି ପ୍ରସଙ୍ଗରେ ବାର୍ତ୍ତିକ ଅଛି— 'ପ୍ରକୃତ୍ୟାଦିଭ୍ୟଃ ଉପସଂଖ୍ୟାନମ୍' ପ୍ରକୃତି ଆଦି ଶବ୍ଦରେ ମଧ୍ୟ ତୃତୀୟା ହୁଏ । ଯଥା ପ୍ରକୃତ୍ୟା ସୁନ୍ଦରଃ । ସ୍ୱଭାବେନ କୃପଣଃ ଆଦି । ପ୍ରସ୍ତୁତ ଉଦାହରଣ 'ପ୍ରକୃତ୍ୟା ଏବ ମନୋହରା'ରେ ପ୍ରକୃତି ଶବ୍ଦରେ ତୃତୀୟା ବିଭକ୍ତି ହୋଇଛି । ୨୯ କାରିକାରେ ଭାମହ କହିଛନ୍ତି ସୂତ୍ର, ବାର୍ତ୍ତିକ ଓ ଭାଷ୍ୟ ଦ୍ୱାରା ନିଷ୍ପନ୍ନ ଶବ୍ଦ ଗ୍ରାହ୍ୟ ଅଟେ । ଏଠାରେ ବାର୍ତ୍ତିକ ଦ୍ୱାରା ନିଷ୍ପନ୍ନ ଶବ୍ଦ ଉଦାହୃତ ।

ସରୂପଶେଷଂ ତୁ ପୁମାନ୍ ସ୍ତ୍ରିୟା ଯତ୍ର ଚ ଶିଷ୍ୟତେ ।
ଯଥାହ ବରୁଣାବଚ୍ଛ୍ରୌ ଭବୌ ଶର୍ବୌ ମୃଡ଼ାବତ ॥ ୩୨ ॥

ଯଥା ଘଟଦ୍ଵୟଙ୍ଗାତ୍ଵ ଦ ଶିଚ୍ ପ୍ରାନ୍ତପଦକାଉଚଃ ।
ଣାବକ୍ଷ୍ମବଦଙ୍ଗାଷ୍ଟ୍ୟା ଚ ତଥା ହଂସପୃଜାଦ୍ୟପି ॥ ୩୩ ॥

---

୩୧) ବୃଦ୍ଧି ଏବଂ ବୃଦ୍ଧି ଅଭାବ ପ୍ରାପ୍ତ ହେଲେ ବୃଦ୍ଧି ପକ୍ଷର ପ୍ରୟୋଗ ଗ୍ରହଣୀୟ ।
ଯେପରି ମୃଜ୍ ଧାତୁର ପ୍ରୟୋଗ ମାର୍ଜନ୍ତି । ମୃଜ୍—ମାଜିବା, ଧୋଇବା,

ପଟଳ ଅରୁନ୍ଧତୀ ଭୂମର ଅଧର ଗଣ୍ଡମାଳକୁ ଧୋଇଦେଉଛୁ । ମୃଜ୍ ଧାତୁର ଲଟ୍ ପ୍ରଥମ ପୁରୁଷ ଏକ ବଚନରେ ବିକଳ୍ପରେ ବୃଦ୍ଧି ହୁଏ । ବୃଦ୍ଧି ହେଲେ ମାର୍ଜନ୍ତି । ବୃଦ୍ଧି ନହେଲେ ମୃଜନ୍ତି ରୂପ ହୁଏ । ବାମନ କହନ୍ତି ବୃଦ୍ଧି ହୋଇଥିବା ଶବ୍ଦ ପ୍ରୟୋଗାର୍ହ ବୋଧହୁଏ ଶୁଣିବାକୁ ସୁନ୍ଦର ଲାଗେ । ବାମନ ପାଣିନିଙ୍କ କେତେକ ସୂତ୍ରକୁ ଦୃଷ୍ଟିରେ ରଖି ଏଠାରୁ ଏହି ପରିଚ୍ଛେଦର ଶେଷଯାଏ ପ୍ରୟୋଗର ଗ୍ରାହ୍ୟତା ଓ ଅଗ୍ରାହ୍ୟତା ବିଚାର କରିଛନ୍ତି ।

୩୨) ସରୂପ ଶେଷ ହୋଇଥିଲେ ପୁମାନ୍ ସ୍ତ୍ରିୟା ସୂତ୍ର ଅନୁସାରେ ଅବଶିଷ୍ଟର ପ୍ରୟୋଗ ହେବା ଉଚିତ । ଯଥା ବରୁଣୌ, ଇନ୍ଦ୍ରୌ, ଭବୌ, ଶର୍ବୌ, ମୃଡ଼ୌ ଇତ୍ୟାଦି ।

ବ୍ୟାକରଣରେ ଗୋଟିଏ ପ୍ରକରଣର ନାମ ଏକ ଶେଷ । ସମରୂପ ଅନେକ ଶବ୍ଦ ମଧ୍ୟରୁ ଗୋଟି ଶେଷ ରହେ, ବାକି ସମସ୍ତ ଲୋପ ହୁଏ । ପାଣିନିଙ୍କ ସୂତ୍ର ସରୂପାଣାମେକଶେଷ ଏକ ବିଭକ୍ତୌ (୧-୨-୬୪) ଏକ ବିଭକ୍ତିକ ହୋଇଥିଲେ ସମାସରେ ସମରୂପ ବିଶିଷ୍ଟ ଶବ୍ଦ ମଧ୍ୟରୁ ଗୋଟିଏ ଶେଷ ରହେ । ପୁଣି ଦ୍ଵିତୀୟ ସୂତ୍ର ରହିଛି—ପୁମାନ୍ ସ୍ତ୍ରିୟା (୧-୨-୬୭) ସ୍ତ୍ରୀବାଚକ ଓ ପୁରୁଷ ବାଚକ ଶବ୍ଦ ରହିଥିଲେ ସ୍ତ୍ରୀ ବାଚକ ଶବ୍ଦ ଲୋପ ହୋଇ ପୁଂବାଚକ ଶବ୍ଦ ରହିବ । ଯଥା—ବ୍ରାହ୍ମଣୀ ଚ ବ୍ରାହ୍ମଣଶ୍ଚ=ବ୍ରାହ୍ମଣୌ ଦୁଇଟିର ସୂଚକ ଦ୍ଵିବଚନ । କାରଣ ପୁଂଃ ଶିଷ୍ୟତେ ସ ଲୁପ୍ତମାନାର୍ଥାଭିଧାୟୀ । ଅର୍ଥାତ୍ ଯାହା ଶେଷ ରହେ ସେ ଲୁପ୍ତ-ଅର୍ଥକୁ ମଧ୍ୟ ପ୍ରକାଶ କରେ । ସେହିପରି ବରୁଣ-ବରୁଣାନୀ, ଇନ୍ଦ୍ର-ଇନ୍ଦ୍ରାଣୀ, ଭବ-ଭବାନୀ, ଶର୍ବ-ଶର୍ବାଣୀ, ମୃଡ-ମୃଡ଼ାନୀ, ଏକ ଶେଷ ସମାସରେ ପୁଂବାଚକ ଶବ୍ଦ ଦ୍ଵିବଚନ ହୋଇ ରହେ । ଯଥା—ବରୁଣୌ, ଇନ୍ଦ୍ରୌ, ଭବୌ, ଶର୍ବୌ, ମୃଡ଼ୌ ଇତ୍ୟାଦି ।

ବାମନ ଏ କ୍ଷେତ୍ରରେ ବାମନଙ୍କୁ ସ୍ଵୀକାର କରନ୍ତି ନାହିଁ । ସେ କହନ୍ତି । ପୁରୁଷ ସ୍ତ୍ରୀ ଶବ୍ଦ ଏକତ୍ର ସମାସ ହେଲେ ପୁରୁଷ ବାଚକ ଶବ୍ଦ ଅବଶିଷ୍ଟ ରହେ ସତ, କିନ୍ତୁ ତାହା ଦାମ୍ପତ୍ୟ ବୋଧକ ନୁହେ ସ୍ତ୍ରୀ ପୁରୁଷ ବୋଧକ ମାତ୍ର ।

ପ୍ରଯୁଂକ୍ତାବ୍ୟୟୀଭାବମପଦନ୍ତଂ ନାପ୍ୟପଞ୍ଚମୀ ।
ତୃତୀୟାସପ୍ତମୀପକ୍ଷେ ନାଲୁକ୍ ବିଷୟମନ୍ୟେଷୁ ॥ ୩୪ ॥
ତିଷ୍ଠଦ୍‌ଗୁପ୍ରଭୃତୌ ବାଚ୍ୟୌ ନକ୍ତଂଦିବସଗୋଚରୌ ।
ଯଥା ବିଦ୍ୱାନଧୀତେଽସୌ ତିଷ୍ଠଦ୍‌ଗୁ ଚ ବହଦ୍‌ଗୁ ଚ ॥ ୩୫ ॥

---

୩୩) ଯେପରି ପ୍ରାତିପଦିକରେ 'ଣିଚ୍' ପ୍ରତ୍ୟୟ ଯୋଗରେ ପଟୟତି ପ୍ରୟୋଗ ସିଦ୍ଧ ହୁଏ । ସେହିପରି 'ତାକ୍ଷସ୍ୟତି' ଏହି ଇଷ୍ଟି ଦ୍ୱାରା କଣୟତି ଆଦି ମଧ୍ୟ ପ୍ରୟୋଗ ଗ୍ରାହ୍ୟ ଅଟେ ।

'ତତ୍କରୋତି ତଦାଚଷ୍ଟେ' ବାର୍ତ୍ତିକ ଅନୁସାରେ କରିବା କହିବା ଅର୍ଥରେ ଦ୍ୱିତୀୟାନ୍ତ ପଦରୁ 'ଣିଚ୍' ପ୍ରତ୍ୟୟ ହୁଏ । ଯଥା ଘଟଂକରୋତି-ଘଟୟତି(ମାଠିଆ ତିଆରି କରୁଅଛି ସେହିପରି ପଟୁମ ଆଚଷ୍ଟେ -ପଟୟତି (ତାହାକୁ ପଟୁ କହୁଅଛି ) । ଏଠାରେ କରିବା ଓ କହିବା ଅର୍ଥରେ ଘଟ ଓ ପଟୁ ଶବ୍ଦରୁ ଣିଚ୍ ପ୍ରତ୍ୟୟ ହୋଇ ପ୍ରଥମ ପୁରୁଷ ଏକ ବଚନରେ ରୂପ ହୋଇଛି ଘଟୟତି ପଟୟତି ।

ଏହା ସହିତ ସମ୍ବନ୍ଧିତ ଅନ୍ୟ ଏକ ନିୟମ ରହିଛି -ପ୍ରାତିପଦିକାଦ୍ଧାତ୍ୱର୍ଥେ ବହୁଳମିଷ୍ଟ ବଚ୍ଚ ଅର୍ଥାତ୍ ପ୍ରାତିପଦିକରୁ ଧାତୁ ଅର୍ଥରେ ଣିଚ୍ ପ୍ରତ୍ୟୟ ହୁଏ । ଯଥା- କୃଷ୍ଣଂ କରୋତି=କଣୟତି ( ପତଳା କରୁଅଛି) ଏଠାରେ କରିବା ଅର୍ଥରେ କୃଶ୍ ଶବ୍ଦରୁ ଣିଚ ହୋଇ ର ସ୍ଥାନରେ 'ର' ହୋଇ କଣୟତି କ୍ରିୟା ନିର୍ମିତ । ଏହିପରି ଣିଜନ୍ତ ପ୍ରତ୍ୟୟ ସମ୍ପନ୍ନ ଶବ୍ଦର ପ୍ରୟୋଗ କାବ୍ୟରେ ହେବା ଉଚିତ ।

୩୪) ଅଜନ୍ତ ଅବ୍ୟୟୀଭାବ ପ୍ରୟୋଗାର୍ହ । କିନ୍ତୁ ପଞ୍ଚମ୍ୟନ୍ତ ନୁହେଁ । ତୃତୀୟା ଓ ସପ୍ତମୀରେ ଅଲୁକ ବିଷୟ ପ୍ରୟୋଗ ଯୋଗ୍ୟ ନୁହେଁ ।

ସାଧାରଣତଃ ଅବ୍ୟୟୀଭାବ ସମାସରେ ସୁପ ବିଭକ୍ତି ଲୋପ ହୁଏ । କିନ୍ତୁ ଅବ୍ୟୟୀଭାବ ଅକାରାନ୍ତ ହୋଇଥିଲେ ସୁପର ଲୋପ ନହୋଇ ତାହାର 'ଅମ' ହୋଇଯାଏ । କିନ୍ତୁ ଏହି ଅମ ପଞ୍ଚମୀ ବିଭକ୍ତି ବ୍ୟତୀତ ଅନ୍ୟ ସମସ୍ତ ବିଭକ୍ତିରେ ହୁଏ ।

ପାଣିନି ସୂତ୍ର-ନାବ୍ୟୟୀଭାବାଦତୋଽମ୍ତ୍ୱପଞ୍ଚମ୍ୟାଃ( ୨-୪-୮୩) ପୁଣି ଏହି ସହିତ ଅନ୍ୟ ଏକ ସୂତ୍ର କହେ -ତୃତୀୟାସପ୍ତମ୍ୟୋର୍ବହୁଲମ୍ (୨-୪-୮୪) । ଯଥା –କୃଷ୍ଣସ୍ୟ ସମୀପଂ =ଉପକୃଷ୍ଣଂ (ପ୍ରଥମା,ଦ୍ୱିତୀୟା,ଚତୁର୍ଥୀ, ଓ ଷଷ୍ଠୀ ବିଭକ୍ତିରେ ହେବ । ପଞ୍ଚମୀରେ ଆଦୌ ଅମ ହେବନାହିଁ —କୃଷ୍ଣସ୍ୟ ସମୀପାତ୍=ଉପକୃଷ୍ଣାତ୍ ତୃତୀୟା —କୃଷ୍ଣସ୍ୟ ସମୀପେନ = ଉପକୃଷ୍ଣଂ — ଉପକୃଷ୍ଣେନ । ସପ୍ତମୀରେ—କୃଷ୍ଣସ୍ୟ ସମୀପେ= ଉପକୃଷ୍ଣଂ—ଉପକୃଷ୍ଣେ । କ୍ରମକ୍ର କବିନ୍ତ ସାମାନ୍ୟତଃ (ଅମଯୁକ୍ତଂ) ପ୍ରୟୋଗ କରିବା ଉଚିତ ।

ଶିଷ୍ଟ ପ୍ରୟୋଗମାତ୍ରେଣ ନ୍ୟାସକାରମତେନ ବା ।
ତୃଚ୍ ସମସ୍ତଷଷ୍ଠୀକଂ ନ କଥଂ ଶବ୍ଦୁଦାହରେତ୍ ॥ ୩୬ ॥
ସୂତ୍ର ଜ୍ଞାପକମାତ୍ରେଣ ବୃତ୍ରହନ୍ତା ଯଥୋଦିତଃ ।
ଅକେନ ଚ ନ କୁର୍ବୀତ ବୃତ୍ତିଂ ତଦଗମକୋ ଯଥା ॥ ୩୭ ॥

୩୫) ଗୋଧୂଳି ପ୍ରସଙ୍ଗରେ ରାତ୍ରି ଓ ଦିବସ ବାଚକ (ଗୋଧୂଳି-ଦିନାନ୍ତ) ଶବ୍ଦର ପ୍ରୟୋଗ କରିବା ଉଚିତ । ଯଥା- ଏହି ବିଦ୍ୱାନ ରାତ୍ରି ଓ ଦିନ ପଢ଼ୁଛନ୍ତି । (ଏହି ପଣ୍ଡିତ ଯେତେବେଳେ ଗାଈ ଠିଆ ହୋଇଥାଏ ସେତେବେଳେ ପଢ଼ନ୍ତି ଓ ଯେତେବେଳେ ଗାଈ ଚରୁଥାଏ, ସେତେବେଳେ ମଧ୍ୟ ପଢ଼ନ୍ତି)

ପାଣିନିଙ୍କ ସୂତ୍ର ତିଷ୍ଠଦ୍ଗୁ ପ୍ରଭୃତୀନି ଚ (୨-୧-୧୭) ଅନୁସାରେ ତିଷ୍ଠଦ୍ଗୁ ଗଣୀୟ ଶବ୍ଦ ଅବ୍ୟୟୀଭାବ ସମାସ ରୂପରେ ନିପାତନ ସିଦ୍ଧ ଓ ଏହାର ପ୍ରୟୋଗ କ୍ରିୟା ବିଶେଷଣ ରୂପରେ ହୁଏ । ତିଷ୍ଠଦ୍ଗୁ ଗଣରେ ତିନି ଗୋଟି ଶବ୍ଦ ରହିଛି । ସେ ମଧ୍ୟରୁ ତିଷ୍ଠଦ୍ଗୁ ଓ ବହଦ୍ଗୁ ରାତ୍ରି ଓ ଦିବସ ବାଚକ । ତିଷ୍ଠଦ୍ଗୁର ଅର୍ଥ ଦୋହନକାଳ । ତିଷ୍ଠନ୍ତି ଗାବୋ ଯସ୍ମିନ୍ କାଲେ ଏହି ଅର୍ଥରେ ସନ୍ଧ୍ୟାକୁ ତିଷ୍ଠଦ୍ଗୁ କହନ୍ତି । ବହଦ୍ଗୁ ଦିବସ ବାଚକ । ବହନ୍ତି ଗାବୋ ଯସ୍ମିନ୍ କାଲେ ଅର୍ଥାତ୍ ଯେଉଁ ସମୟରେ [ଦିନସାରା] ଗାଈ ଚରନ୍ତି ବା ଚାଲନ୍ତି । ଏହି ଅର୍ଥରେ ତିଷ୍ଠଦ୍ଗୁ ରାତ୍ରି ବାଚକ ଓ ବହଦ୍ଗୁ ଦିବସବାଚକ ।

୩୬-୩୭) ଶିଷ୍ଟ ବ୍ୟକ୍ତିଙ୍କ ପ୍ରୟୋଗକୁ ଆଧାର କରି ବା ନ୍ୟାସକାରଙ୍କ ମତକୁ ଗ୍ରହଣ କରି ତୃଚ୍ ପ୍ରତ୍ୟୟାନ୍ତ ଶବ୍ଦ ସହିତ ଷଷ୍ଠୀ ସମାସ କରିବା ଉଚିତ ନୁହେଁ । ଯେପରି ସୂତ୍ର ଜ୍ଞାପକ ଆଧାରରେ 'ବୃତ୍ରହନ୍ତା' କୁହାଯାଇଛି । ଅକ ପ୍ରତ୍ୟୟାନ୍ତ ପଦ ସହିତ ବୃତ୍ତି (ସମାସ) କରିବା ଉଚିତ ନୁହେଁ । ଯେପରି ତଦ୍ଗମକଃ ।

ପାଣିନିଙ୍କ ସୂତ୍ର ଣ୍ୱୁଲ୍ତୃଚୌ (୩-୧-୧୩୩) ଅନୁସାରେ କର୍ତ୍ତା ଅର୍ଥରେ ଣ୍ୱୁଲ୍ ଓ ତୃଚ୍ ଦୁଇଟି ପ୍ରତ୍ୟୟ ହୁଏ । ଣ୍ୱୁଲର ଅକ ହୁଏ । ଯଥା କାରକ (କୃ + ଣ୍ୱୁଲ୍(ଅକ) ସେହିପରି ଧାରକ, ତାରକ ଇତ୍ୟାଦି । ତୃଚ୍ ପ୍ରତ୍ୟୟ ହୋଇ କର୍ତ୍ତା = (କୃ + ତୃଚ୍) ହର୍ତ୍ତା, ଧର୍ତ୍ତା ଇତ୍ୟାଦି ନିଷ୍ପନ୍ନ ହୁଏ । ପାଣିନିଙ୍କ ଅନ୍ୟ ଏକ ସୂତ୍ର ତୃଜକାଭ୍ୟାଂ କର୍ତ୍ତରି (୨-୨-୧୫) ଅନୁସାରେ ତୃଚ୍ ଓ ଅକ ପ୍ରତ୍ୟୟାନ୍ତ ଶବ୍ଦ ସହିତ ଷଷ୍ଠୀ ତତ୍ପୁରୁଷ ନିଷେଧ କରାଯାଇଛି । ଯଥା-ଘଟସ୍ୟ କର୍ତ୍ତା, ଏଠାରେ ସମାସ ହୋଇ ଘଟକର୍ତ୍ତା ହେବ ନାହିଁ ଓଦନସ୍ୟ ପାଚକଃର ଓଦନପାଚକଃ ହେବନାହିଁ । ଅସମସ୍ତ ହୋଇ ରହିବ ।

ଏହି ନିୟମ ଅନୁସାରେ ବୃତ୍ରସ୍ୟ ହନ୍ତା ସମସ ନ ହେବା କଥା କିନ୍ତୁ ଷଷ୍ଠୀ ତତ୍ପୁରୁଷ ସମାସ ହୋଇ ବୃତ୍ରହନ୍ତା କିପରି ହୋଇଛି ? ଏହାର ଉତ୍ତର ଜ୍ଞାପକ ଆଧାରରେ ହୋଇଛି

ପଞ୍ଚରାଜୀତ ଚ ଯଥା ପ୍ରଯୁଂଜୀତ ଦ୍ଵିଗୁଂ ସ୍ତ୍ରିୟାମ୍ ।
ନପୁଂସକଂ ତତ୍ପୁରୁଷଂ ପୂରୁଦ୍ଭୂତସଭଂ ଯଥା ॥ ୩୮ ॥
ସର୍ବେଭ୍ୟଶ୍ଚ ଭୃଶାଦିଭ୍ୟୋ ବଦେକ୍କ୍ପ୍ରତ୍ୟୟଂ ଯଥା ।
ପ୍ରିୟୋତ୍କନାୟତେ ସା ତେ କଂ ଶଠାଭିମନାୟସେ ॥ ୩୯ ॥

---

ପାଣିନିଙ୍କ ଅନ୍ୟ ଏକ ସୂତ୍ର ଅଛି । ଜନିକର୍ତ୍ତୁଃ ପ୍ରକୃତିଃ (୧-୪-୩୦) ଏଥିରେ ଜନେଃ କର୍ତ୍ତାକୁ ସମାସ କରାଯାଇଛି ଷଷ୍ଠୀ ଏକବଚନ ରୂପ ଜନିକର୍ତ୍ତୁଃ ପ୍ରୟୋଗ କରାଯାଇଛି । ଏହା ହିଁ ଜ୍ଞାପକତା । ତେବେ ପାଣିନିସୂତ୍ର ନିର୍ମାଣରେ ଲାଘବକୁ ଦୃଷ୍ଟିରେ ରଖି କରିଛନ୍ତି । ଭ୍ରମବଶ କହନ୍ତି ଏପରି ଜ୍ଞାପକତାକୁ ପ୍ରମାଣ ମନେ କରିବା ଅନୁଚିତ । ପୁଣି ପାଣିନିଙ୍କ ଅନ୍ୟ ଏକ ସୂତ୍ର ତତ୍ପ୍ରୟୋଜକୋ ହେତୁଶ୍ଚ (୧-୪-୫୫) ଅନୁସାରେ ଜ୍ଞାପକ ମନେ କରି ଅକ ପ୍ରତ୍ୟୟାନ୍ତ ତସ୍ୟପ୍ରୟୋଜକଃର ସମାସରେ ତତ୍ପ୍ରୟୋଜକ ଦେଖି ତସଂଗମକଃ ସ୍ଥାନରେ ତଦ୍‌ଗମକ ପ୍ରୟୋଗ କରିବା ଅନୁଚିତ । ଏହାକୁ ଅସାଧୁ ମନେ କରାଯିବ । ନ୍ୟାସକାର ମଧ୍ୟ ଏହି ଜ୍ଞାପକତା (ଉଦାହରଣ)କୁ ଆଧାର କରି ତୃଚ ଓ ଅକ ପ୍ରତ୍ୟୟାନ୍ତ ସହିତ ଷଷ୍ଠୀ ସମାସ ସ୍ୱୀକାର କରିଛନ୍ତି । ତାହା କିନ୍ତୁ ଯୁକ୍ତିଯୁକ୍ତ ନୁହେଁ । କାରଣ ଜ୍ଞାପକ ଅପେକ୍ଷା ନିଷେଧ ସୂତ୍ର ବଳବାନ୍ ।

୩୮) ଦ୍ଵିଗୁ ସମାସାନ୍ତ ପଦକୁ ସ୍ତ୍ରୀ ଲିଙ୍ଗରେ ପ୍ରୟୋଗ କରିବା ବିଧେୟ । ଯଥା — ପଞ୍ଚରାଜୀ ତତ୍ପୁରୁଷାନ୍ତ ପଦକୁ ନପୁଂସକରେ ପ୍ରୟୋଗ କରିବା ଉଚିତ । ଯଥା —ପୁରୁହୂତସଭମ୍ ।

ପଞ୍ଚାନାଂ ରାଜ୍ଞାଂ ସମାହାରଃ (ପାଞ୍ଚଗୋଟି ରାଜାଙ୍କର ସମୂହ) ଏହି ବିଗ୍ରହରେ ସମାସାନ୍ତ ପଦ ହୁଏ ପଞ୍ଚରାଜ । ଅକାରାନ୍ତୋତ୍ତରପଦୋ ଦ୍ଵିଗୁଃ ସ୍ତ୍ରିୟାମିଷ୍ଟଃ ଏହି ବାର୍ତ୍ତିକ ଅନୁସାରେ ସ୍ତ୍ରୀ ଲିଙ୍ଗ ବିଧାନ କରାଯାଇ ଙୀପ [ଈ] ସ୍ତ୍ରୀ ପ୍ରତ୍ୟୟ ଯୋଗରେ ହୁଏ ପଞ୍ଚରାଜୀ । ସେହିପରି ତ୍ରୟାଣାଂ ଲୋକାନାଂ ସମାହାରଃ = ତ୍ରିଲୋକୀ । ଏପରି ବାକ୍ୟରେ ପ୍ରଯୋଜ୍ୟ । ସେହିପରି ତତ୍ପୁରୁଷ ସମାସରେ ନପୁଂସକ ପ୍ରୟୋଗ ଗ୍ରାହ୍ୟ ଅଟେ । ପୁରୁହୂତ [ଇନ୍ଦ୍ର] ସ୍ୟ ସଭା ଏହି ବିଗ୍ରହରେ ସଭାରାଜ ମନୁଷ୍ୟ ପୂର୍ବା [୨-୪-୨୩] ପାଣିନି ସୂତ୍ର ଅନୁସାରେ ନପୁଂସକ ହୋଇ ପୁରୁହୂତସଭଂ ହୁଏ । ଏହି ସୂତ୍ରର ଅର୍ଥ — ଯେଉଁ ତତ୍ପୁରୁଷରେ ଶେଷରେ ସଭା ଥିବ ଓ ପୂର୍ବରେ ରାଜବାଚକ ଶବ୍ଦ ଥିବ, ତେବେ ନପୁଂସକ ହେବ ।

ସ ନପୁଂସକମ୍ (୨-୪-୧୭) ସୂତ୍ର ଅନୁସାରେ ଦ୍ଵିଗୁ ସମାସ ସମାନ୍ୟତଃ ନପୁଂସକ ପୁଣି 'ପର ବଲ୍ଲିଙ୍ଗଂ ଦ୍ଵନ୍ଦ୍ୱ ତତ୍ପୁରୁଷୟୋଃ (୨-୪-୨୬) ସୂତ୍ର ଅନୁସାରେ ଦ୍ଵନ୍ଦ୍ୱ ଓ ତତ୍ପୁରୁଷର ଉତ୍ତର ପଦର ଲିଙ୍ଗ ଅନୁସାରେ ପଦର ଲିଙ୍ଗ ନିର୍ଦ୍ଧାରିତ ହୁଏ ।

ତୃଣପ୍ରୈକବଚଃ ଶ୍ରେୟାନ୍ମନ୍ତ୍ରଂ ଚ ବଦେଦ୍ଭୁକ୍ପି ।
ଯଥୋଦିତଂ ବଳଭିଦା ସୁରୁଚଂ ବଦ୍ୟୁତାମିବ ॥ ୪୦ ॥
ଅସନ୍ତମପି ସଦ୍ବାକ୍ୟଂ ତଦ୍ଵର୍ଥୈବଂ ପ୍ରଯୋଜୟେତ୍ ।
ଯଥେ ୟତେଽମ୍ଭସା ଭାସା ଯଶସାମପ୍ସୁସମିତି ॥ ୪୧ ॥

---

୩୯) ଭୃଶାଦିଗଣୀୟ ସମସ୍ତ ଶବ୍ଦରୁ ହଲ୍ ଲୋପ କରିବା ଉଚିତ । ଯେପରି ସେହି ଭ୍ରମର ପ୍ରିୟା ଉନ୍ମତ୍ତା [ଉନ୍ମନାୟତେ] ହେଉଅଛି । ରେ ଶଠ ! କାହିଁକି ତୁ ଅଭିମାନ [ଅଭିମନାୟତେ] କରୁଅଛୁ ।

ପାଣିନି ସୂତ୍ର ଭୃଶାଦିଭ୍ୟୋ ଭୁବ୍ୟଚ୍ଵେର୍ଲୋପଶ୍ଚ ହଲଃ [୩-୧-୧୨] । ଏହାର ଅର୍ଥ ଅଭୂତତଦ୍ଭାବ ବିଷୟକ ଭୃଶାଦି ଶବ୍ଦରେ ହେବା ଅର୍ଥରେ କ୍ୟଙ୍ ପ୍ରତ୍ୟୟ ହୁଏ । ଅଭୂତତଦ୍ଭାବ ( ଯାହା ନଥିଲା-ଅଭୂତ-ତାହା ହେବ-ତଦ୍ଭାବ ) ଭୃଶ୍ ଆଦି ଗଣରେ ପଠିତ ଶବ୍ଦରୁ କ୍ୟଙ୍ ହେଲେ ଭୃଶାୟତେ, ମନ୍ଦାୟତେ ଇତ୍ୟାଦି ରୂପ ହୁଏ । ଯଦି ସେହି ଶବ୍ଦ ହଲନ୍ତ ହୋଇଥାଏ ଯଥା ସୁମନସ୍, ଉନ୍ମନସ୍, ଅଭିମନସ ଇତ୍ୟାଦି ସେଥିରୁ କ୍ୟଙ୍ ପ୍ରତ୍ୟୟ ହେଲେ ହଲ୍ (ସ)ର ଲୋପ ହେବ । ତେଣୁ ସୁମନସ୍‌ରୁ ସୁମନାୟତେ, ଉନ୍ମନସ ରୁ ଉନ୍ମନାୟତେ, ଅଭିମନସରୁ ଅଭିମନାୟତେ ଆଦି ପ୍ରୟୋଗ ସିଦ୍ଧ ଅଟେ । ଏଗୁଡ଼ିକ କାବ୍ୟରେ ପ୍ରଯୁକ୍ତ ହେଲେ ସୁନ୍ଦର ହୁଏ ।

୪୦) କ୍ୱିପ୍ ପ୍ରତ୍ୟୟରେ ତୃତୀୟା ଏକ ବଚନ ଓ ଷଷ୍ଠୀଆମନ୍ତ (ବହୁବଚନ)ର ପ୍ରୟୋଗ ପ୍ରଶଂସନୀୟ । ଯେପରି କୁହାଯାଏ-ବଳଭିଦା(ଇନ୍ଦ୍ରଦ୍ୱାରା) ସୁରୁଚଂ ବଦ୍ୟୁତାମିବ(ସୁନ୍ଦର ଚମକପ୍ରଦ ବିଜୁଳି ସମୂହ ପରି) ।

ଧାତୁରେ କ୍ୱିପ ପ୍ରତ୍ୟୟ ଯୋଗ କରି ସଜ୍ଞା କରାଯାଏ । କ୍ୱିପ୍ ପ୍ରତ୍ୟୟର କୌଣସି ଅବଶିଷ୍ଟ ରହେନାହିଁ । କ୍ୱିପ ପ୍ରତ୍ୟୟ ଯୁକ୍ତ ପଦଟି ସ୍ତ୍ରୀଲିଙ୍ଗ ହୁଏ । ଉଦାହରଣ ବଳଭିଦ୍ ବଳ ନାମକ ଅସୁର ଭେଦନ (ବଧ) କରିବା ବ୍ୟକ୍ତି ଅର୍ଥାତ୍ ଇନ୍ଦ୍ର ଏଠାରେ ଭିଦ ଧାତୁରୁ କ୍ୱିପ ହୋଇ ଭିଦ ରୂପ ହୋଇଛି । ତାହାର ତୃତୀୟା ଏକବଚନରେ ଭିଦା ରୂପ ହୁଏ । ବଳ + ଭିଦା । ସେହିପରି ସୁରୁଚ ଓ ବିଦ୍ୟୁତ୍‌ରୁ କ୍ୱିପ ହୋଇ ଷଷ୍ଠୀ ବହୁବଚନରେ ସୁରୁଚଂ, ବଦ୍ୟୁତାଂ ରୂପ ହୋଇଛି ।

ବାମନଙ୍କ ମତରେ କ୍ୱିପ ପ୍ରତ୍ୟୟାନ୍ତ ସଜ୍ଞାର ପ୍ରୟୋଗ କେବଳ ଦୁଇଟି ବିଭକ୍ତିରେ କରିବା ଉଚିତ । ସମ୍ଭବତଃ ଶୁଣିବାକୁ ସୁନ୍ଦର ଲାଗୁଥିବାରୁ ତୃତୀୟା ଓ ଷଷ୍ଠୀ କଥା କୁହାଯାଇଛି ।

୪୧) ଅସ୍ ଅନ୍ତରେ ଥିବା ଶବ୍ଦ ଗୁଡିକର ମଧ୍ୟ ତୃତୀୟା ଏକବଚନ ଓ ଷଷ୍ଠୀବହୁବଚନର ପ୍ରୟୋଗ ପ୍ରଶଂସନୀୟ । ଯଥା ଅମ୍ଭସା (ଜଳଦ୍ୱାରା) ଭାସା (ତେଜଦ୍ୱାରା) ଯଶସାଂ (କୀର୍ତ୍ତିସମୂହର) ଅମ୍ଭସାଂ (ଜଳସମୂହର) ।

ପୁଂସି ସ୍ତ୍ରିୟାଂ ଚ କ୍ବସୁନ୍ମିଛନ୍ତ୍ୟଛାନ୍ଦସଂ କଳ ।
ଉପେୟୁଷାମପି ଦିବଂ ଯଥା ନ ବ୍ୟେତ ସ୍ମୃତଃ ॥ ୪୨ ॥

ଇଭକୁମ୍ଭନିଭେ ବାଳା ଦଧୁଷୀ କଞ୍ଚୁକଂ ସ୍ତନେ ।
ଉତ୍ଖେଦପରିଶ୍ରାନ୍ତା ଜହାର ହୃଦୟଂ ନୃଣାମ୍ ॥ ୪୩ ॥

ଶବଳାଦିଭ୍ୟୋଽତତିଚରଂ ଭାତି ଟିଜବନ୍ଧିତୋ ଯଥା ।
ବଳାକାଃ ପଶ୍ୟ ସୁଶ୍ରୋଣି ଘନାଂଛବଳୟନ୍ତ୍ୟମୂଃ ॥ ୪୪ ॥

---

କ୍ବସୁ ପ୍ରତ୍ୟୟାନ୍ତ ଶବ୍ଦ ପର ଅସ୍ ଶେଷରେ ଥିବା ପଦମାନଙ୍କର ଚତୁର୍ଥୀ ଏକ ବଚନ ଓ ଷଷ୍ଠୀ ବହୁବଚନରେ ପ୍ରୟୋଗ ସୁନ୍ଦର । ଅମୁସ୍ (ଅଯନ୍ତ)ର ଚତୁର୍ଥୀ ଏକ ବଚନ ଅମୁଷା ଓ ଷଷ୍ଠୀ ବହୁବଚନ ଅମୁଷାଂ ସେହିପରି ଯଶସ୍ ଯଶସା ଓ ଯଶସାଂ ଷ୍ଟସ୍ର ଚତୁର୍ଥୀ ଏକବଚନ ଷ୍ଟସା, କ୍ଷେମେନ୍ଦ୍ର [୩-୧] ଓ [୬-୩] କାରିକାରେ ଏହାର ନମୁନା ଉପସ୍ଥାପନ କରିଛନ୍ତି ।

୪୨) ଅଛାନ୍ଦସ [ଲୌକିକସଂସ୍କୃତ]ରେ କ୍ବସୁ ପ୍ରତ୍ୟୟାନ୍ତ ଶବ୍ଦର ପୁଂଲିଙ୍ଗ ଓ ସ୍ତ୍ରୀଲିଙ୍ଗ ପ୍ରୟୋଗ ସୁନ୍ଦର ଓ ଅଭିଳଷିତ । ଯେପରି ସ୍ୱର୍ଗଗାମୀ ବ୍ୟକ୍ତିର [ଦିବମଉପେୟୁଷାଂ] ସୌନ୍ଦର୍ଯ୍ୟଶେଷ ହୁଏ ନାହିଁ ।

ପାଣିନିଙ୍କ କ୍ବସୁଶ୍ଚ [୩-୨-୧୦୭] ସୂତ୍ର ଅନୁସାରେ ବେଦରେ ଲିଟ ଲକାର ପରିବର୍ତ୍ତେ ଭୂତକାଳ ବାଚକ କ୍ବସ ପ୍ରତ୍ୟୟ ହୁଏ । ଏହା ବୈଦିକ ପ୍ରୟୋଗ ହେଲେ ମଧ୍ୟ ଲୌକିକ ସଂସ୍କୃତରେ ପ୍ରୟୋଗ ରହିଛି । କ୍ଷେମେନ୍ଦ୍ର ମଧ୍ୟ ଏହାକୁ ସମର୍ଥନ କରନ୍ତି । ଯଥା— ଉପପୂର୍ବକ ଇଣ ଗତୌ ଧାତୁରୁ କ୍ବସୁ ପ୍ରତ୍ୟୟ ହେଲେ ଉପେୟିବସ ରୂପ ହୁଏ । ଷଷ୍ଠୀ ବହୁବଚନରେ 'ଉପେୟୁଷାମ' । ଏହା ପୁଂଲିଙ୍ଗ ପ୍ରୟୋଗ । ପରବର୍ତ୍ତୀ କାରିକାରେ ସ୍ତ୍ରୀ ଲିଙ୍ଗର ଉଦାହରଣ ପ୍ରଦତ୍ତ ।

୪୩) ଉଦାହରଣ - ଗଜକୁମ୍ଭ ସଦୃଶ କୁଚରେ କଞ୍ଚୁକ ପରିହିତା ଉତ୍ଖେଦକ୍ଳାନ୍ତା ଏହି ବାଳା ଯୁବକଙ୍କ ହୃଦୟକୁ ହରଣ କରୁଅଛି ।

ଏହା ସମ୍ଭୋଗ ଦ୍ୱାରା ପରିଶ୍ରାନ୍ତା କୌଣସି ନବତରୁଣୀର ବର୍ଣ୍ଣନା । ଏଥିରେ ଥିବା ଦଧୁଷୀ (ଧାରଣ କରିବା) ଶବ୍ଦ ଧା + କ୍ବସୁ ର ସ୍ତ୍ରୀଲିଙ୍ଗ ରୂପ ।

୪୪) ଶବଳ ଆଦି ଶବ୍ଦମାନଙ୍କରେ ବହିତ ଣିଚ୍ ପ୍ରତ୍ୟୟ ଅତ୍ୟନ୍ତ ସୁନ୍ଦର ଲାଗେ । ଉଦାହରଣ ହେ ସୁଶ୍ରୋଣି ! ଦେଖ, ଏହି ବଗୁଳା ଗୁଡ଼ିକ କଳାମେଘକୁ ରଙ୍ଗ-ବେରଙ୍ଗ କରୁଅଛନ୍ତି ।

ଶିଶିରସୀକରକଣିକାସଦୃଶଃ ସେବ୍ୟଗନ୍ଧବାତ୍ ।
ତ୍ୱାଂ ଶୀକରପୃକ୍ତ ସୁଶ୍ରୋଣି ଉତ୍କଣ୍ଠୋଦାଳୟେ କ୍ଷଣାମ୍ ॥ [illegible] ॥

ଏବଂ ଣିଚଃ ପ୍ରୟୋଗସ୍ତୁ ସର୍ବସାଲଂକୃତଃ ପରା ।
ଲଙ୍ଘସପ୍ରୋପପନ୍ନଂ ଚ ତାଚ୍ଛୀଲ୍ୟବିଷୟଂ ଣିନମ୍ ॥ ୪୬ ॥

ତସ୍ୟା ହାସ୍ୟ ସ୍ତନାବେଗୋ ବଦନଂ ହାରି ସୁନ୍ଦରମ୍ ।
ହାରିଣୀ ତନୂରତ୍ୟନ୍ତଂ କସ୍ୟନ୍ନ ହରତେ ମନଃ ॥ ୪୭ ॥

ତାଚ୍ଛୀଲ୍ୟାଦ୍ୱିଷୁ ବେଷ୍ୟନ୍ତେ ସର୍ବ ଏକ ତୃନାଦୟଃ ।
କ୍ଵଚେବେଷଣ୍ଣ ଚ ତଦେଷ୍ଟା ଯୂହକୁରଜ୍ଵରକଷ୍ଟୁଚ ॥ ୪୮ ॥

---

କୌଣସି ପ୍ରେମିକ ନିଜ ପ୍ରେୟସୀକୁ ସୁଶ୍ରୋଣୀ (ନିତମ୍ବବତୀ) ସମ୍ବୋଧନ କରି କଳାମେଘ ତଳେ ଉଡ଼ୁଥିବା ଫକ୍ତବଦ୍ଧ ଧଳା-ବଗୁଲିଙ୍କ ଦୃଶ୍ୟ ଦେଖାଉଅଛି । କଳା ସହିତ ଧଳା ରଙ୍ଗର ମିଶ୍ରଣ ଦର୍ଶନୀୟ ହୋଇଛି । ଶବଳ ରୁ ଣିଚ୍ ପ୍ରତ୍ୟୟ ହୋଇ ଶବଳୟନ୍ତି । ପ୍ରଥମପୁରୁଷ ବହୁବଚନରେ ଶବଳୟନ୍ତି ଅର୍ଥ ରଙ୍ଗୀନ କରୁଅଛନ୍ତି । ବାମନଙ୍କ ଦୃଷ୍ଟିରେ ଏପରି ଣିଜନ୍ତ ପ୍ରୟୋଗ ସୁନ୍ଦର ।

୪୫) ହେ ସୁଶ୍ରୋଣି ଶୀତଳ ବର୍ଷାଜଳର ପ୍ରବାହ ପରି ମଳୟ ପବନ ଉତ୍କଣ୍ଠୋଦାଳୟ ଦୃଷ୍ଟି ସମ୍ପନ୍ନ ତୁମକୁ ବ୍ୟଜନ ଚାଳନ କରୁଅଛି । ନାୟକ ପ୍ରତି ନାୟିକର ଉକ୍ତି ।

ଶୀକରୟତି(ଶୀକର୍ + ଣିଚ )ପ୍ରଥମ ପୁରୁଷ ଏକବଚନ। ଏଥିରେ ଣିଜନ୍ତ ପ୍ରୟୋଗର ରମଣୀୟତା ପ୍ରଦର୍ଶିତ । ଶବଳୟତି ପରି ଶୀକରୟତି ମଧ୍ୟ ସୁନ୍ଦର ଓ ଗ୍ରାହ୍ୟ ।

୪୬) ଏହି ସୂତ୍ରରେ 'ଣିଚ'ର ପ୍ରୟୋଗ ସର୍ବତ୍ର ପରମ ଶୋଭା ବିଧାୟକ ହୋଇଥାଏ । ତାଚ୍ଛୀଲ୍ୟ ବିଷୟକ 'ଣିନ' ଉପଲକ୍ଷରେ ପ୍ରଯୁକ୍ତ ହେବା ବିଧେୟ ।

ଏହି କାରିକାର ପୂର୍ବାର୍ଦ୍ଧରେ ଣିଚ ପ୍ରୟୋଗର ସୌନ୍ଦର୍ଯ୍ୟ ଦର୍ଶନକୁ ଉପସଂହାର କରି ଉତ୍ତରାର୍ଦ୍ଧରେ ଣିନ ପ୍ରତ୍ୟୟାନ୍ତ ଶବ୍ଦର ମହତ୍ତ୍ୱ ନିର୍ଦ୍ଦେଶିତ । ତାଚ୍ଛୀଲ୍ୟର ଅର୍ଥ କୌଣସି ବସ୍ତୁର ସ୍ୱଭାବ । ତତ୍ ଶୀଳଂ [ସ୍ୱଭାବ] ଯସ୍ୟ ସଃ ତଚ୍ଛୀଳଃ ତସ୍ୟ ଭାବ ତାଚ୍ଛୀଲ୍ୟ । ଏହି ତାଚ୍ଛୀଲ୍ୟ ବୋଧ ପାଇଁ ଣିନ ପ୍ରତ୍ୟୟ ବିଧାନ ରହିଛି । ତାଚ୍ଛୀଲ୍ୟ ବୋଧକ ଣିନ ପ୍ରତ୍ୟୟାନ୍ତ ଶବ୍ଦ ଉପଲକ୍ଷରେ ପ୍ରଯୁକ୍ତ ହେଲେ କାବ୍ୟକୁ ସୁନ୍ଦର ଓ ମନୋଜ୍ଞ କରେ ବୋଲି ବାମନ କହନ୍ତି । ପରବର୍ତ୍ତୀ କାରିକାରେ ଉଦାହରଣ ପ୍ରଦତ୍ତ ।

୪୭] ତାହାର ମନୋହର ସ୍ତନଆବେଗ, କମନୀୟ ସୁନ୍ଦର ମୁଖ ଏବଂ ଅତ୍ୟନ୍ତ ମନୋହର ଶରୀର କାହାର ମନକୁ ବା ହରଣ କରେ ନାହିଁ ?

କ୍ରିନ୍ନନ୍ତଂ ପ୍ରଯୁଂଜୀତ ସଂଗତଃ ସଦ୍ଗତଂଯଥା ।
ଶାକାରୌ ଜାଗୃଣଶ୍ଚୈୖ ଚ ଜାଗର୍ଯା ଜାଗରା ଯଥା ॥ ୪୯ ॥

ଉପାସନେତି ଚାଂସ୍ତୁଚ୍ଚ ନିତ୍ୟମାସେଃ ପ୍ରୟୋଜୟେତ୍ ।
ଲ୍ୟୁଟଶ୍ଚ କର୍ତ୍ତୁବିଷୟେ ଦେବନୋ ରମଣୋ ଯଥା ॥ ୫୦ ॥

ଅଣନ୍ତାଦପି ଜୀବସ୍ତ୍ୟୋ ଲକ୍ଷ୍ମୀଃ ସୌରିନ୍ଦ୍ରୀ ଯଥା ।
ଅଜ୍ଞମହୋରଜନାକ୍ଷ ଷାଦେଚନାଭ୍ୟାଂ ତଥା ଚ ଠଜ ॥ ୫୧ ॥

---

ହୃ+ଣିନ ପୁଂଲିଙ୍ଗରେ ହାରୀ [ପ୍ରଜାରେଖଗର ବିଶେଷଣ] ସ୍ତ୍ରୀଲିଙ୍ଗରେ ହାରିଣୀ] [ତନୁର ବିଶେଷଣ] କ୍ଲୀବଲିଙ୍ଗରେ ହାରି [ବଦନର ବିଶେଷଣ] । ହରଣ କରିବା ସ୍ୱଭାବ ଅଟେ ଯାହାର ସେ ହାରୀ, ଏହି ଣିନ ପ୍ରତ୍ୟୟ ନିଷ୍ପନ୍ନ ହାରୀ ମୁଖ କାରିକାରେ ନିର୍ଦ୍ଦିଷ୍ଟ ପ୍ରକାରେ ତିନିଲିଙ୍ଗରେ ପ୍ରଦର୍ଶିତ ।

୪୮) ତାଚ୍ଛୀଲ୍ୟ ଅର୍ଥରେ ତୃନ୍ ଆଦି ସମସ୍ତ ପ୍ରତ୍ୟୟ ଯୁକ୍ତ ପଦ ସୁନ୍ଦର ଓ ଅଭିଳଷିତ ସେ ମଧ୍ୟରେ ଯୁଚ୍, କୁରଚ୍ ଓ ଇଷ୍ଣୁଚ ବିଶେଷ ରୂପରେ ଗ୍ରାହ୍ୟ ।

ଯୁଚ୍ ପ୍ରତ୍ୟୟାନ୍ତ ଶବ୍ଦ ଯଥା – ଚନ୍ଦନ, କମ୍ପନ,ଜବନ, କ୍ରୋଧନ, ମଣ୍ଡନ,ଭୂଷଣ ରବଣ ଆଦି କୁରଚ୍ ପ୍ରତ୍ୟୟାନ୍ତ ଶବ୍ଦ ଯଥା ବିଦୁର, ଭିଦୁର, ଛିଦୁର ଆଦି । ବରଚ୍ ପ୍ରତ୍ୟୟାନ୍ତ ଶବ୍ଦ ଯଥା ସ୍ଥାବର, ଈଶ୍ୱର, ବିକସ୍ୱର, ଭାସ୍ୱର ଆଦି । ଇଷ୍ଣୁଚ ପ୍ରତ୍ୟୟାନ୍ତ ଶବ୍ଦ ଯଥା ଅଳଂକରିଷ୍ଣୁ, ନିରାକରିଷ୍ଣୁ, ପ୍ରଜନିଷ୍ଣୁ, ବର୍ଦ୍ଧିଷ୍ଣୁ, ରୋଚିଷ୍ଣୁ ଆଦି । ଗ୍ରନ୍ଥକାର ଏ ସମସ୍ତ ପ୍ରତ୍ୟୟାନ୍ତ ପଦର ଉଦାହରଣ ନଦେଇ ସୂଚନା ମାତ୍ର ଦେଇଛନ୍ତି ।

୪୯) କ୍ତିନ୍ ଅନ୍ତକ ପଦ ପ୍ରୟୋଗ କରଣୀୟ । ଯଥା-ସଂଗତି,ସଦ୍ଗତି ଇତ୍ୟାଦି । ଜାଗୃ ଧାତୁରୁ 'ଶ' ଓ 'ଅ' ପ୍ରତ୍ୟୟ ଯୁକ୍ତ ପଦ ଇଷ୍ଟ ଅଟେ । ଅତଏବ ଜାଗର୍ଯା, ଜାଗରା ପ୍ରୟୋଗ ସୁନ୍ଦର ।

ଜାଗ୍ରଃ [ଜାଗୃ ଧାତୁର ପଞ୍ଚମୀ ଏକବଚନ ରୂପ] ଶାକାରୌ ଶଶ୍ଚ ଅକାରଶ୍ଚ [ଦ୍ୱନ୍ଦ୍ୱ] ଅର୍ଥାତ୍ ଶ ଓ ଅ ପ୍ରତ୍ୟୟ ]

୫୦] ଆସ ଧାତୁରୁ ନିତ୍ୟ ଯୁଚ୍ ପ୍ରୟୋଗ କରିବା ଉଚିତ । ଯଥା -ଉପାସନା । ପୁଣି କର୍ତ୍ତୃର ଲ୍ୟୁଟ୍‌ର ପ୍ରୟୋଗ ମଧ୍ୟ କରଣୀୟ । ଯଥା-ଦେବନ, ରମଣ ଆଦି ।

ଆସ-ଉପବେଶନେ [ବସିବା] ଉପପୂର୍ବକ ଆସ୍‌ରୁ ଯୁଚ୍ ପ୍ରତ୍ୟୟ ହେଲେ ଉପାସନ ହୁଏ । ସ୍ତ୍ରୀପ୍ରତ୍ୟୟ ଟାପ୍=ଉପାସନା । ଲ୍ୟୁଟ ପ୍ରତ୍ୟୟ ଭାବ ଅର୍ଥରେ, କରଣ ଅର୍ଥରେ ଓ ଅଧିକରଣ ଅର୍ଥରେ ହୁଏ । ଭାବ ଅର୍ଥରେ ଯଥା —ହସ୍+ଲ୍ୟୁଟ୍ = ହସନଂ, ସେହି ପରି ପଠନଂ, ଗମନଂ ଆଦି । କରଣ ଅର୍ଥରେ [ କ୍ରିୟାତେ ଅନେନ , ଯାହା ଦ୍ୱାରା କିଛି

ଡ଼ମତୁବିଷ୍ଟଂ ଚ କୁମୁଦାଦ୍ୟଥେଯୁଂ ଭୂଃ କୁମୁଦ୍‌ବତୀ ।
ଠକ ବୃଟି ତେନ ଜୟୁଖାତ୍ୟାକ୍ଷିକଃ ଶାସ୍ତ୍ରିକୋ ଯଥା ॥ ୫୨ ॥
ହିତ ପ୍ରକରଣେ ଣଂଚ ସବଂଶଦ୍ଧ ତ୍ଵତ୍ପୁଂଜତେ ।
ତସ୍ମୈମିଷ୍ଟ୍ୟା ଚ ଯଥା ସାଵଃ ସର୍ବୀୟ ଇତ୍ୟପି ॥ ୫୩ ॥
ବଦେଦ୍ଧମକଜନ୍ତଂଚ ପଟିମା ଲଘିମା ଯଥା ।
ବର୍ଣ୍ଣଦୃଢାଦିଭ୍ୟଃ ଷ୍ୟଞ୍ଚ କର୍ମଣି ଚ ଜ୍ୟୟାନପ କଣାପୂର୍ବୀମ୍ ॥ ୫୪ ॥

---

ଦଗ୍ଧଯାଏ] ଯଥା ଯାନମ୍ ଯାହା ଦ୍ଵାରା ଗମନ କରାଯାଏ । ଅଧିକରଣ ଅର୍ଥରେ ଆସନଂ [ଆସ୍ୟତେ ଅସ୍ମିନ ଯାହା ଉପରେ ବସାଯାଏ] ସେହିପରି କର୍ତ୍ତାର ଲ୍ୟୁଟ ମଧ୍ୟ ହୁଏ ଯଥା ଦେବନ [କ୍ରୀଡ଼ା ଆନନ୍ଦୋଲ] ଦିବ୍+ଲ୍ୟୁଟ୍ ରମଣ [ରମଣ କରିବା ବ୍ୟକ୍ତି] । ମନେ ହୁଏ ଭାବାର୍ଥକ, କରଣାର୍ଥକ ଓ ଅଧିକରଣାର୍ଥକ ଲ୍ୟୁଟ ଅପେକ୍ଷା କର୍ତ୍ତୃବାଚ୍ୟ ଲ୍ୟୁଟ ପ୍ରୟୋଗ ସ୍ଵାମୀଙ୍କ ଅଧିକପ୍ରିୟ । ଯେହେତୁ କର୍ତ୍ତୃବାଚ୍ୟ ଲ୍ୟୁଟର ଉଦାହରଣ ଦେଇଛନ୍ତି ।

୫୧) ଅଣନ୍ତରୁ [ସ୍ତ୍ରୀତ୍ଵ ବିବକ୍ଷାରେ] ଙୀପ୍ ଇଷ୍ଟ ଅଟେ । ଯଥା-ଲକ୍ଷ୍ମୀ, ପୌରନ୍ଦରୀ । ସେହିପରି ମହାରଜନରୁ ଅଣ୍ ଓ ଲକ୍ଷା ତଥା ରୋଚନାରୁ ଠକ୍ ପ୍ରତ୍ୟୟ ହୁଏ ।

ପୁରନ୍ଦର [ଇନ୍ଦ୍ର]ରେ ପାଣିନି ସୂତ୍ର ତସ୍ୟେଦଂ [୪-୩-୧୨୦] ଅନୁସାରେ ଅଣ୍ ପ୍ରତ୍ୟୟ ହୋଇ ପୌରନ୍ଦର ଶବ୍ଦ ହୁଏ । ପୁଣି ଅଣ୍ ପ୍ରତ୍ୟୟାନ୍ତ ଙୀପ୍ ବିଧାୟକ ପାଣିନି ସୂତ୍ର ଟିଡ୍ଢାଣ୍ଞ୍—ଇତ୍ୟାଦି [୪-୧-୧୫] ଅନୁସାରେ ଙୀପ୍ ପୌରନ୍ଦରୀ ଶବ୍ଦ ତିଆରି ହୁଏ । ମହାରଜନ ଶବ୍ଦରୁ ଅଣ୍ ନହୋଇ 'ହରିଦ୍ରାମହାରଜନାଭ୍ୟାଂ ଅଞ୍' ବାର୍ତ୍ତିକ ଅନୁସାରେ ଅଞ୍ ହୁଏ । ପୁଣି ଲାକ୍ଷାରୋଚନାଟ୍ଠକ୍ [୪-୨-୨] ସୂତ୍ର ଅନୁସାରେ ଲାକ୍ଷା (ଲାଖ) ଏବଂ ରୋଚନ [ରକ୍ତକ ଦ୍ରବ୍ୟ ବିଶେଷ] ଶବ୍ଦରୁ ଠକ୍ ପ୍ରତ୍ୟୟ ହୋଇ ଲାକ୍ଷିକ ଓ ରୌଚନିକ ଶବ୍ଦ ନିର୍ମିତ ହୁଏ । କାବ୍ୟରେ ଏ ଧରଣର ଶବ୍ଦ ପ୍ରୟୋଗକୁ ସ୍ଵାମୀ ପସନ୍ଦ କରନ୍ତି ।

୫୨) କୁମୁଦ ଶବ୍ଦରୁ 'ଡମତୁପ୍' ପ୍ରତ୍ୟୟ ଯୁକ୍ତ ଶବ୍ଦ ସୁନ୍ଦର । ଯଥା-ଏହି ଭୂମି କୁମୁଦ୍‌ବତୀ ଅଟେ । ତେନ ଜୟତି [ତାହା ଦ୍ଵାରା ଜୟ କରେ] ଏହି ଅର୍ଥରେ ଅକ୍ଷ ଓ ଶାସ୍ତ୍ର ଶବ୍ଦରୁ ଠକ୍ ପ୍ରତ୍ୟୟ ଯୁକ୍ତ ଶବ୍ଦ ପ୍ରୟୋଗ ଯୋଗ୍ୟ -ଯଥା ଆକ୍ଷିକଃ,ଶାସ୍ତ୍ରିକଃ ଇତ୍ୟାଦି ।

ପାଣିନି ସୂତ୍ର କୁମୁଦନଡ଼ବେତସେଭ୍ୟୋ ଡ୍ମତୁପ୍ (୪-୨-୮୭) ଅନୁସାରେ କୁମୁଦ ନଡ଼ବେତସ୍‌ରୁ , ଡ୍ମତୁପ୍ ପ୍ରତ୍ୟୟ ହୋଇ କୁମୁଦବତ୍,ନଡ଼ବତ୍, ବେତସ୍ଵତ୍ ଶବ୍ଦ ତିଆରି ହୁଏ । ସ୍ତ୍ରୀଲିଙ୍ଗରେ କୁମୁଦ୍‌ବତୀ, ଅନ୍ୟ ଏକ ପାଣିନି ସୂତ୍ର-ତେନ ଦୀବ୍ୟତିଖନତିଜୟତିଜିତମ୍ (୪-୪-୨) ଏ ମଧ୍ୟରୁ ତେନ ଜୟତି ଅଂଶ ସ୍ଵାମୀଙ୍କ ପ୍ରିୟ । ଯେଉଁ ବସ୍ତୁ ଦ୍ଵାରା ଜୟ

ଦ୍ୱୟସଜ୍‌ଦଘ୍ନଶ୍ଚବଷ୍ଟୌ ପ୍ରମାଣ ବଷଟ୍ସୌ ଯଥା ।
ଜାନୁଦଘ୍ନୀ ସରନ୍ମାତ୍ରୀନୀତମ୍ବଦ୍ୱୟସଂ ସରଃ ॥ ୫୫ ॥
ମତୁପ୍ ପ୍ରକରଣେ ଜ୍ୟେଷ୍ଠ ତମିସ୍ରାଶ୍ଚୈଙ୍ଗିଣାଦୟଃ ।
ଇନଚ ଫଳବର୍ହାଭ୍ୟାଂ ଫଳିନୋ ବର୍ହିଣୋ ଯଥା ॥ ୫୬ ॥

---

ଖେଳେ, ଖୋଳେ ତା କଲେ ସେହି ବସ୍ତୁବାଚକ ଶବ୍ଦରୁ ଠକ୍ ପ୍ରତ୍ୟୟ ହୁଏ । ଯଥା — ଅକ୍ଷ+ଠକ୍=ଆକ୍ଷିକ (ପଶାକାଠିରେ ଜୁଆ ଖେଳିବା ବ୍ୟକ୍ତି) ଅଭ୍ରି [କୁଦାଳ] ଠକ୍ =ଆଭ୍ରିକ , ଶସ୍ତ୍ର+ଠକ୍=ଶାସ୍ତ୍ରିକ (ଶାସ୍ତ୍ରଦ୍ୱାରା ଜୀବୀ କରିବା ବ୍ୟକ୍ତି] ।

୫୩) ହିତ ପ୍ରକରଣରେ ଯବ ଶବ୍ଦରୁ 'ଢ' ପ୍ରତ୍ୟୟ ହୋଇ ଯବ୍ୟ ହୁଏ । (ଯବ+ଢ) ସେଥିର ଇଷ୍ଟି [ବାର୍ତ୍ତିକ] ଦ୍ୱାରା 'ଛ' ପ୍ରତ୍ୟୟ ହୋଇ ଯବୀୟ ଶବ୍ଦ ତିଆରି ହୁଏ ।

ଅଷ୍ଟାଧ୍ୟାୟୀରେ ତସ୍ମୈ ହିତଂ [୫-୧-୫] ସୂତ୍ରରୁ ହିତ ପ୍ରକରଣ ଆରମ୍ଭ ହୁଏ । ହିତ [ଭଲ] ଅର୍ଥରେ ବହୁ ବର୍ଣ୍ଣିତ ପ୍ରତ୍ୟୟ ହେବା ଉଲ୍ଲିଖିତ । ଭଟ୍ଟିଦ୍ଧ [୧+୧] କାରକାରେ ଯବ୍ୟ [ଯବ+ଢ] ଶବ୍ଦ ବ୍ୟବହାର କରିଛନ୍ତି ।

୫୪) ଇମନିଚ ପ୍ରତ୍ୟୟାନ୍ତ ଶବ୍ଦ ପ୍ରୟୋଗ ଯୋଗ୍ୟ । ଯଥା — ପଟିମା, ଲଘିମା, ଆଦି । ଇୟସୁନ୍ ପ୍ରତ୍ୟୟାନ୍ତ ଶବ୍ଦ ମଧ୍ୟ ଅଭିଳଷିତ । ଯଥା—ଜ୍ୟାୟାନ,କନୀୟାନ ଆଦି । [ବୟସ୍କ ବ୍ୟକ୍ତି ନିଜଠାରୁ କମ ବୟସର କନ୍ୟା ଲଭ କଲେ] ।

ତଦ୍ଧିତରେ ଭାବ ଅର୍ଥରେ ତ୍ୱ,ତଲ୍,ଇମନିଚ୍ ଆଦି ପ୍ରତ୍ୟୟ ହୁଏ । ଯଥା— ପଟୁ+ତ୍ୱ=ପଟୁତ୍ୱ, ପଟୁ+ତଲ୍=ପଟୁତା, ପଟୁ+ଇମନିଚ = ପଟିମା, ଲଘିମା ଆଦି । ତ୍ୱ ଏବଂ ତଲ୍ ପ୍ରତ୍ୟୟାନ୍ତ ଶବ୍ଦ ଅପେକ୍ଷା ଇମନିଚ୍ ପ୍ରତ୍ୟୟାନ୍ତ ଶବ୍ଦକୁ ଭଟ୍ଟିଦ୍ଧ ଅଧିକ ସୁନ୍ଦର ମନେକରନ୍ତି ।ପୁଣି ଦୁଇଟି ମଧ୍ୟରୁ ଏକର ଆଧିକ୍ୟ ପ୍ରକାଶ ପାଇଁ ତରପ୍ ଓ ଇୟସୁନ ପ୍ରତ୍ୟୟ ହୁଏ । ଯଥା ଦୁଇଟି ମଧ୍ୟରୁ ଅଧିକ ଲଘୁ ଲଘୁତର ବା ଲଘୀୟାନ ସେହିପରି ପଟୁତର ବା ପଟୀୟାନ ଏଥିପାଇଁ ପାଣିନି ସୂତ୍ର ରହିଛି—ଦ୍ୱିବଚନ ବିଭଜ୍ୟୋପପଦେ ତରବୀୟସୁନୌ [୫-୩-୫୭] ଭଟ୍ଟିଦ୍ଧ ତରପ ଓ ଇୟସୁନ ମଧ୍ୟରୁ ଇୟସୁନ ପ୍ରତ୍ୟୟାନ୍ତ ଶବ୍ଦକୁ ଅଧିକ ସୁନ୍ଦର ମନେ କରନ୍ତି । ଜ୍ୟାୟାନ ଓ କନୀୟାନରେ ଇୟସୁନ ପ୍ରତ୍ୟୟ ହୋଇଛି ।

୫୫) ପ୍ରମାଣ ବୋଧକ ଦ୍ୱୟସଜ ଓ ଦଘ୍ନଚ ପ୍ରତ୍ୟୟାନ୍ତ ପଦ ଅଧିକ ସୁନ୍ଦର । ଯଥା— ନଦୀ ଜାଣୁର ଅଣ୍ଟୁଏ ଯାଏ [ଜାନୁଦଘ୍ନୀ] ଓ ସରୋବର ନିତମ୍ବ ଯାଏ [ନିତମ୍ବଦ୍ୱୟସ ଗଭୀର ଅଟେ ।

ପାଣିନି ସୂତ୍ର । ପ୍ରମାଣେ ଦ୍ୱୟସ ଜଦଘ୍ନଞ୍ମାତ୍ରଚଃ [୫-୨-୩୭] ଅନୁସାରେ ପ୍ରମାଣ ବାଚକ ଉନୋକ୍ତି ପ୍ରତ୍ୟୟ ସୂଚିତ । ଯଥା ଦ୍ୱୟସଜ, ଦଘ୍ନଚ, ମାତ୍ରଚ, । ଏ ମଧ୍ୟରୁ

ଇନଃ ପ୍ରଯୁକ୍ତଃ ପ୍ରାୟେଣ ତଥା ଠଂଶ୍ଚ ମନୀଷିଭିଃ ।
ତତ୍ରାପି ମେଖଳ-ମାଲ-ମାୟାନାଂ ସୁନ୍ଦରଂ ମତା ॥ ୫୭ ॥
ଅଭ୍ୟସ୍ତ ଚ୍ ନ୍ଝେରଦାଦେଶେ ଦଧତିତ୍ୟାଦୟୋଽପି ଚ ।
ରୋଦନ୍ତି ସ୍ୱପିତୀତ୍ୟାଦି ସନ୍ତୋଷ୍ଟା ସାର୍ବଧାତୁକମ ॥ ୫୮ ॥

---

ପ୍ରଥମ ଦୁଇଟି ପ୍ରତ୍ୟୟ ଯୁକ୍ତ ଶବ୍ଦ ଗ୍ରନ୍ଥକାରଙ୍କ ପ୍ରିୟ ଅଟେ । ଉପର୍ଯୁକ୍ତ ଉଦାହରଣରେ ଜାନୁ +ଦଘ୍ନଚ ଓ ନିତମ୍ବ +ଦ୍ୱୟସଚ ପଦ ପ୍ରୟୋଗ ଦର୍ଶିତ ।

୫୬) ମତୁପ ପ୍ରକରଣରେ ଜ୍ୟୋତ୍ସ୍ନା, ତମିସ୍ରା, ଶୃଙ୍ଗିଣ ଆଦି ନିପାତନ ସିଦ୍ଧ ଶବ୍ଦ ପ୍ରୟୋଗ ଯୋଗ୍ୟ । ଫଲ ଓ ବର୍ହ ଶବ୍ଦରୁ ଇନଚ ପ୍ରତ୍ୟୟ ମଧ୍ୟ ପ୍ରୟୋଗାର୍ହ । ଯଥା ଫଳିନ -ବର୍ହିଣ

ଅସ୍ତି ଅର୍ଥରେ ମତୁପ ପ୍ରତ୍ୟୟ ହୁଏ । ମତୁପରୁ ଉପ ଲୋପ ହୋଇ ମତ ରହେ ଯଥା—ଶ୍ରୀ + ମତୁପ = ଶ୍ରୀମତ୍ = ଶ୍ରୀମାନ ଏହି ପ୍ରକରଣରେ ମତୁପ ଅର୍ଥକ ବହୁ ପ୍ରତ୍ୟୟ ହୁଏ । ମତ୍ୱର୍ଥକ ଜ୍ୟୋତ୍ସ୍ନା, ତମିସ୍ରା ଆଦି ନିପାତନ ସିଦ୍ଧ । ଅନିୟମିତ ସିଦ୍ଧକୁ ନିପାତନ କହନ୍ତି । ସୂତ୍ର ଅଟେ-ଜ୍ୟୋତ୍ସ୍ନାତମିସ୍ରାଶୃଙ୍ଗିଣୋର୍ଜସ୍ୱିନ୍ନୂର୍ଜସ୍ୱଲଗୋମିନ୍ମଳିନମଲୀମସାଃ [୫-୨-୧୧୪] ଜ୍ୟୋତ୍ସ୍ନା, ତମିସ୍ରା ଆଦି ଶବ୍ଦ ଗ୍ରନ୍ଥକାରଙ୍କ ପ୍ରିୟ ଅଟେ । ପୁଣି ଫଲବର୍ହାଭ୍ୟା-ମିନଚ" ବାର୍ତ୍ତିକ ଦ୍ୱାରା ଫଲ ଓ ବର୍ହରୁ ଇନଚ ପ୍ରତ୍ୟୟ ହୋଇ ଫଳିନ ବର୍ହିଣ ଶବ୍ଦ ନିଷ୍ପନ୍ନ ହୁଏ । ଫଳିନ = ବହୁ ଫଳଥିବା, ବର୍ହିଣ = ବର୍ହି [ପୁଚ୍ଛ] ଥିବା ମୟୂର ।

୫୭) ପଣ୍ଡିତମାନେ ଇନି ଓ ଠନ ପ୍ରତ୍ୟୟାନ୍ତ ଶବ୍ଦ ପ୍ରାୟଶଃ ପ୍ରୟୋଗ କରିଥାନ୍ତି । ସେ ମଧ୍ୟରୁ ମେଖଳା, ମାଳା, ମାୟା ଆଦି ଅଧିକ ସୁନ୍ଦର ଓ ଗ୍ରାହ୍ୟ ଅଟେ ।

ମେଖଳା, ମାଳା, ଓ ମାୟା ରୁ 'ଇନି' ପ୍ରତ୍ୟୟ ହେଲେ ମେଖଳୀ, ମାଳୀ, ମାୟୀ ହୁଏ ଠନ୍ ପ୍ରତ୍ୟୟ କଲେ ମେଖଳିକ ମାଳିକ, ମାୟିକ ହୁଏ । ଠନ୍ ର ନ ଲୋପ ହୋଇ ଠ'ର ଇକ ହୁଏ । ଏହି ପ୍ରକାର ଶବ୍ଦ କାବ୍ୟରେ ପ୍ରଯୋଜ୍ୟ ।

୫୮] ଅଭ୍ୟସ୍ତ ଅର୍ଥକ 'ଝି' ର ଅଦ ଆଦେଶ ହେଲେ ଦଧତି ଏବଂ ଇଟ ପ୍ରତ୍ୟୟ ଯୁକ୍ତ ସାର୍ବଧାତୁକ ରୋଦିତି (କାନ୍ଦୁଅଛି) ସ୍ୱପିତି (ଶୋଇଛି] ଇତ୍ୟାଦି ପଦ ମଧ୍ୟ ପ୍ରୟୋଗ ଯୋଗ୍ୟ ।

ଅଭ୍ୟସ୍ତର ଅର୍ଥ ପୁନରାବୃତ୍ତି । କେତେକ ଧାତୁ ଅଭ୍ୟସ୍ତ ସଂଜ୍ଞକ । ତେଣୁ ସେ ଗୁଡ଼ିକର ପୂର୍ବବର୍ତ୍ତୀ ଦ୍ୱିତ୍ୱ ହୁଏ । ଯଥା ଦା (ଦୁଦାଙ) ଧାତୁର ରୂପ ହୁଏ ଦଦାତି । କିନ୍ତୁ ଦାତି ହେବାକଥା । ଏଠାରେ ଦର ଆବୃତ୍ତିକୁ (ଅଭ୍ୟସ୍ତ) ବୁଝାଯାଏ । ଅଭ୍ୟସ୍ତ ସଂଜ୍ଞକ ଧାତୁମାନଙ୍କରୁ ଝି [ଲଟ ପ୍ରଥମ ପୁରୁଷ ବହୁବଚନ] ପ୍ରତ୍ୟୟ ହେବାକୁ ଝିର ଅନ୍ତ ନ ହୋଇ ଅତ ହୁଏ ଅଦଭ୍ୟସ୍ତାତ୍ (୭-୧-୪) ସୂତ୍ର ଅନୁସାରେ ଦଧତି-ଦଦତି (ପ୍ରଥମ ପୁରୁଷ ବହୁବଚନ ) ହୁଏ । ଏହି ଶବ୍ଦ ଗୁଡ଼ିକ ସୁନ୍ଦର ।

ଅଭ୍ୟସ୍ତେଷୁ ପ୍ରୟୋକ୍ତବ୍ୟମଦନ୍ତଂ ଘୁଭୃଞ୍ଜୋଃ ଶତୃଃ ।
ଅସୌ ଦଧଦଲଂକାରଂ ସ୍ରଜଂ ବଭ୍ରତ ଶୋଭତେ ॥ ୫୯ ॥

ନ ଚବର୍ଗଂ ଶକାରେଣ କ୍ୱଚତ୍ ସଂଯୋଗିନଂ ବଦେତ୍ ।
ଯଥୈତଚ୍ଛ୍ୟାମମାଭାତି ବନଂ ବନଜଲୋଚନେ ॥ ୬୦ ॥

ନୈକତ୍ରୌକାରଭୂୟସ୍ତ୍ୱଂ ଗତୋଯାତୋ ହତୋ ଯଥା ।
ସାବର୍ଣ୍ଣ୍ୟବର୍ଜ୍ୟନୟୋ ହସ୍ୟ ବ୍ରୂୟାନ୍ନାନ୍ୟସ ପଦ୍ଧତେଃ ॥ ୬୧ ॥

---

ସଂସ୍କୃତ ଭାଷାରେ କେତେକ ଧାତୁରେ ତଙ୍ଗ ପ୍ରତ୍ୟୟ ପୂର୍ବରୁ ଇଟ (ଇ) ଲଗେ । କେତେକରେ ଲଗେନାହିଁ । ଯେଉଁ ଥରେ ଲଗେ ତାହାକୁ ସେଟ (ଇଟ ସହିତ ଯେଉଁ ଥରେ ଲାଗେନାହିଁ ତାହାକୁ ଅନଟ (ଇଟ ବନା] କହନ୍ତି । ଲଟ୍, ବଧିଲଙ, ଲୋଟ୍, ଓ ଲୁଙ ଏହି ସ୍ୱର ଲକାରକୁ ସାର୍ବଧାତୁକ କହନ୍ତି ସର୍ବଧାତୁକରେ ଭୁଦ, ସ୍ୱପ ଅନ,ଶ୍ୱସ, ଯକ୍ଷ ଏହି ପାଞ୍ଚ ଗୋଟି ଧାତୁରୁ ଇଟ ହୁଏ । ପାଣିନ ସୂତ୍ର ରୁଦାଦଭ୍ୟଃ ସାଧାତୁକେ (୭-୨-୭୬) ଇଟ ହେବା ପରେ ରୂପ ହୁଏ । ରୋଦତି, ସ୍ୱପିତି,ଅନିତି,ଶ୍ୱସିତି,ଯକ୍ଷିତି । (ପ୍ରଥମ ପୁରୁଷ ଏକବଚନ) ଇଟ ଯୁକ୍ତ ଧାତୁର ପ୍ରୟୋଗ ଭାମହଙ୍କ ପ୍ରିୟ ଅଟେ ।

୫୯) ଅଭ୍ୟସ୍ତ, ଘୁସଂଜ୍ଞକ ଓ ଭୃଧାତୁରୁ ଶତୃର ଅଦନ୍ତ ପ୍ରୟୋଗ କରିବା ଉଚିତ । ଯଥା ଏହି ବ୍ୟକ୍ତି ଅଲଙ୍କାର ଧାରଣ କରି (ଦଧତ୍) ଏବଂ ମାଳା ପରିଧାନ କରି [ବିଭ୍ରତ୍] ଶୋଭାପାଏ ।

ଅଭ୍ୟସ୍ତ କଥା ପୂର୍ବରୁ କୁହାଯାଇଛି । ଘୁସଂଜ୍ଞକ ଦୁଇଟି ଧାତୁ ରହିଛି । ଯଥା- ଦା ଓ ଧା ଏଦୁଇଟିର ଘୁସଂଜ୍ଞା ଦାଧାଘ୍ୱଦାପ (୧-୧-୨୦) ସୂତ୍ର ଅନୁସାରେ କରାଯାଇଛି । ଭୃ (ଡୁଭୃଞ୍) ଧାତୁ ଧାରଣ ଓ ପୋଷଣ ଅର୍ଥରେ ବ୍ୟବହୃତ । ଶତୃ ପ୍ରତ୍ୟୟ ହେଲେ ପଠ୍+ଶତୃ=ପଠନ (ପଠନ୍ତ) ହସନ (ହସନ୍ତ) ହୁଏ । କିନ୍ତୁ ଅଭ୍ୟସ୍ତ ସଂଜ୍ଞକ ଧାତୁମାନଙ୍କରେ ଶତୃ ପ୍ରତ୍ୟୟ ହେଲେ ମଧ୍ୟ ନୁମ ଲଗେ ନାହିଁ । ଯଥା—ଦା+ଶତୃ= ଦଦତ୍, ଧା+ଶତୃ=ଦଧତ୍, ଭୃ+ଶତୃ=ବିଭ୍ରତ୍ ହୁଏ । ଭାମହ ଏହି କାରଣରେ କହିବାକୁ ଚାହାନ୍ତି ଏହି ଧାତୁ ଗୁଡ଼ିକରୁ ଶତୃ ପ୍ରତ୍ୟୟ ହେଲେ ଅତ୍ ରହିବ । ସେ ଗୁଡ଼ିକର ପ୍ରୟୋଗ କାବ୍ୟକୁ ସୁନ୍ଦର କରେ ।

୬୦) ଶ' କାର ସହିତ ଚବର୍ଗ ସଂଯୋଗ(ସନ୍ଧି) କରି ପ୍ରୟୋଗ କରିବା ଅନୁଚିତ । ଯଥା ହେ କମଳଲୋଚନେ ! ଏହି ଶ୍ୟାମଳ (ଏତଚ୍ଛ୍ୟାମଂ) ବନଭୂମି ଶୋଭାପାଉଅଛି ।

ତ ବର୍ଗ ର ଶ ସହିତ ସନ୍ଧି ହେଲେ ତ'ଚ ହୁଏ ଓ ଶ 'ଛ ହୁଏ । ଶଶଛୋଽଟି [୮-୪-୬୩] ସୂତ୍ର ଅନୁସାରେ ଛଧ୍ୱନି ଉତ୍ପନ୍ନ ହୁଏ । ଯଥା ଏତତ୍+ଶ୍ୟାମଂ=ଏତଚ୍ଛ୍ୟାମଂ ଏହି ଧ୍ୱନି ଶ୍ରୁତିସୁଖଦ ନୁହେଁ । ତେଣୁ ଏ ଧରଣର ପ୍ରୟୋଗ ପରିତ୍ୟାଜ୍ୟ ଅଟେ ।

ଶାଲାତୁରୀୟମତମେତଦନୁକ୍ରମେଣ
କୋ ବର୍ଣ୍ଣୟିତୁ ବିରତୋଽସ୍ମି ମହାନ୍ତବାନ୍ ।
ଯୋଽକ୍ଷୁଣ୍ଣବିଷ୍ଣୁପଦପୈଶୁନିମ୍ବପୋତମାରଂ
ପାଣିନ୍ଦ୍ରୀୟକାଳଜଳଧେଃ ସ ବିଷ୍ଣୁପୋଽଯଂ ॥ ୭୨ ॥

ବିଦ୍ୟାନାଂ ସତତମପାଶ୍ରୟୋଽପରାସାଂ
ତାସାଂ କୃତାନ୍ତ ଚ ବିରୁଦ୍ଧେପି କାଂସ୍ତ୍ୱଦର୍ଥାନ୍ ।
ତ୍ରୈଲୋକ୍ୟଂ ଜଗତି ମତଂ ହି ପାଣିନୀୟଂ
ମାଧ୍ୟସ୍ଥାଦଭିବତି ନ କସ୍ୟଚିତ୍ ପ୍ରମାଣମ୍ ॥ ୭୩ ॥

---

୭୧) ଗୋଟିଏ ସ୍ଥାନରେ ଓ'କାର ବାହୁଲ୍ୟ ଅଶୋଭନୀୟ । ଯଥା—ଗତୋଯାତୋଽପଦ ପଦ୍ଧତି (ପଦ+ହତି) ବ୍ୟତୀତ ଯଂଶୁ ପରବର୍ତ୍ତୀ ହକାରର ପୂର୍ବ ସାବର୍ଣ୍ଣ୍ୟ ଭାବ ଗ୍ରହଣୀୟ ନୁହେ ।

୭୦ ଏବଂ ୭୧ କାରିକାରେ ସନ୍ଧି ବିଷୟ ଆଲୋଚିତ । ସନ୍ଧି ନିୟମ ଅନୁସାରେ ବହୁସ୍ଥଳରେ ବିସର୍ଗ (ଃ) ର ଓ ହୋଇଯାଏ । ଯଥା—ମନଃ+ରଥ=ମନୋରଥ, ମନଃ +ହର—ମନୋହର, । ଏମନ୍ତ କହନ୍ତି ଗୋଟିଏ ପଦ୍ୟରେ ଏପରି ବହୁ ପଦ ରହିଲେ ଶ୍ରୁତିକଟୁ ଜାତ ହୁଏ । ଯେପରି ଗତଃ, ଯାତଃ, ହତଃ—ଗତୋ, ଯାତୋ, ହତୋ ଯାଏ ହୋଇଯାଏ । ଯଂଶୁ କହନ୍ତି-ପାଞ୍ଚ ଗୋଟି ବର୍ଗର ପଞ୍ଚମ ଅକ୍ଷର ବ୍ୟତୀତ ଶେଷ ୨୦ଟି ଅକ୍ଷର । ଅର୍ଥାତ୍ କ, ଖ, ଗ, ଘ, ଚ, ଛ, ଜ, ଝ, ଟ, ଠ, ଡ, ଢ, ତ, ଥ, ଦ, ଧ, ପ, ଫ, ବ, ଭ, ଏହି ଅକ୍ଷର ଆଗରେ ହ ରହିଲେ ପୂର୍ବବର୍ତ୍ତୀ ବର୍ଣ୍ଣର ସବର୍ଣ୍ଣ ହୋଇଯାଏ । ସଂକ୍ଷେପରେ କହିଲେ ଯେଉଁ ବର୍ଣ୍ଣ ଆଗରେ ରହେ ହ ସେହି ବର୍ଗର ଚତୁର୍ଥ ବର୍ଣ୍ଣ ହୋଇ ଉଦାହରଣ ବାକ୍+ହାନ—ବାଗଘାନ, ଅଚ୍+ହଲ—ଅଜଝଲ, ପଦ୍=ହତ—ପଦ୍ଧତ, ଏମନ୍ତ କହନ୍ତି ପଦ୍ଧତି (ପଦ୍+ହତି) ବ୍ୟତୀତ ଅନ୍ୟତ୍ର ହ'ର ପୂର୍ବବର୍ଣ୍ଣ ସବର୍ଣ୍ଣ ଶୋଭନୀୟ ବା ସୁନ୍ଦର ଲାଗେ ନାହିଁ । ସେହିପରି ସନ୍ଧି ବର୍ଜନୀୟ ।

୭୨) ପାଣିନିଙ୍କର ଏହି ବ୍ୟାକରଣ ସମ୍ବନ୍ଧୀ ମତକୁ କ୍ରମରେ କିଏ କହିପାରେ । ଅତଏବ ମୁଁ ଏହି ବିସ୍ତରକୁ ଏଇଠି ଶେଷ କରୁଅଛି । ଯିଏ ଏହି ବ୍ୟାକରଣ ରୂପୀ ସାଗର ଏବଂ ଭୟଙ୍କର ଜଳପୂର୍ଣ୍ଣ ସାଗରକୁ ପାର ହୋଇଯାଏ, ତାହାଠାରୁ ବଳି ଆଶ୍ଚର୍ଯ୍ୟର ବିଷୟ କଣ ଅଛି ।

୭୩) (ଶାଲାତୁରୀୟ) ପାଣିନିଙ୍କ ମତ (ବ୍ୟାକରଣ) ସଂସାରରେ ତ୍ରିଲୋକର ବନ୍ଧୁ ଅଟେ । ଏହି ବ୍ୟାକରଣ ଅନ୍ୟ ସମସ୍ତ ବିଦ୍ୟାର ଆଧାର ଅଟେ । ପୁଣି ଅନ୍ୟ ସମସ୍ତ ବିଦ୍ୟା ଦ୍ୱାରା ପ୍ରତିପାଦିତ ବିଷୟର ବିରୋଧୀ ନୁହେଁ । ଏହି ମଧ୍ୟସ୍ଥତା ହେତୁ ବ୍ୟାକରଣକୁ

ଅବଲୋକ୍ୟ ମତାନି ସତ୍କବୀନାମବଗମ୍ୟ ସ୍වଧିୟା ଚ କାବ୍ୟଲକ୍ଷ୍ମ ।
ସୁଜନାବଗମାୟ ଭାମହେନ ଗ୍ରଥିତଂ ରକ୍ରିଳଗୋମିସୂନୁନେଦମ୍ ॥ ୬୪ ॥

ଷଷ୍ଟ୍ୟା ଶରୀରଂ ନିର୍ଣ୍ଣୀତଂ ଶତଷଷ୍ଟ୍ୟା ତ୍ୱଳଂକୃତିଃ ।
ପଞ୍ଚାଶତା ଦୋଷଦୃଷ୍ଟିଃ ସପ୍ତତ୍ୟା ନ୍ୟାୟନିର୍ଣ୍ଣୟଃ ॥ ୬୫ ॥

ଷଷ୍ଟ୍ୟା ଶବ୍ଦସ୍ୟ ଶୁଦ୍ଧିଃ ସ୍ୟାଦିତ୍ୟେବଂ ବସ୍ତୁପଞ୍ଚକମ୍ ।
ଉକ୍ତଂ ଷଡ଼ଭିଃ ପରିଚ୍ଛେଦୈର୍ଭାମହେନ କ୍ରମେଣ ବଃ ॥ ୬୬ ॥

ଇତି ଭାମହୀୟୋ କାବ୍ୟାଲଂକାରଃ

---

କିଏ ବା ପ୍ରାମାଣିକ ରୂପେ ଗ୍ରହଣ ନ କରେ ? କାରଣ ସମସ୍ତ ବାଙ୍ମୟ ଶବ୍ଦାର୍ଥ ରୂପ ଅଟେ । ଶବ୍ଦ ଅର୍ଥର ସମ୍ୟକ୍ ଜ୍ଞାନ ବ୍ୟାକରଣ ଉପରେ ନିର୍ଭର କରେ । ଅତଏବ ବ୍ୟାକରଣ ସମସ୍ତ ବିଦ୍ୟାର ଆଧାର ଅଟେ ।

୬୪) **ଉପସଂହାର**—ସତ୍କବିଙ୍କ ବିଗ୍ରହକୁ ଅନୁଧାନ କରି ନିଜ ବୁଦ୍ଧିରେ କାବ୍ୟ ସ୍ୱରୂପକୁ ବିଗ୍ରହ କରି ରକ୍ରିଳଗୋମି ପୁତ୍ର ଭାମହ ସଜ୍ଜନଙ୍କ ଅବବୋଧ ପାଇଁ ଏହି କାବ୍ୟଶାସ୍ତ୍ର କାବ୍ୟାଲଂକାର ରଚନା କରିଛନ୍ତି ।

୬୫-୬୬) **ଗ୍ରନ୍ଥ ବିଷୟର ସୂଚନା**—ଷାଠିଏ (କାରିକା)ରେ କାବ୍ୟର ଶରୀର ନିର୍ଣ୍ଣୟ କରାଯାଇଛି । ଏକ ଶହ ଷାଠିଏ କାରିକାରେ ଅଳଙ୍କାର ବିବେଚନ ପରିଶ କାରିକାରେ, କାବ୍ୟଦୋଷ ନିର୍ଣ୍ଣୟ ତଥା ସତୁରି କାରିକାରେ ନ୍ୟାୟ ନିରୂପଣ କରାଯାଇଛି । ଶେଷ ଷାଠିଏ କାରିକାରେ ଶବ୍ଦଶୁଦ୍ଧି ନିର୍ଣ୍ଣୀତ ହୋଇଛି । ଏହି ପ୍ରକାରେ ଭାମହ ପାଞ୍ଚଗୋଟି ବିଷୟକୁ କ୍ରମଶଃ ଛଅଗୋଟି ପରିଚ୍ଛେଦରେ ତୁମ [ପାଠକ] ମାନଙ୍କ ପାଇଁ ପ୍ରତିପାଦନ କରିଛନ୍ତି ।

ଭାମହଙ୍କ କାବ୍ୟାଲଂକାରର ଷଷ୍ଠ ପରିଚ୍ଛେଦ ସମାପ୍ତ ।

# ଶ୍ଳୋକ ଅନୁକ୍ରମଣିକା

## ପରିଚ୍ଛେଦ ଶ୍ଳୋକସଂଖ୍ୟା

### ଅ

ଛ



ଜ



ଡ଼



ତ



ଦ



ଧ

## ନ



## ପ

ଭ



ମ



ଯ



ର

## ଲ



## ବ



## ଶ

ଷ



ସ

## ହ



—...o ..—

# କାବ୍ୟାଳଙ୍କାରରେ ଉଦ୍ଧୃତ ଗ୍ରନ୍ଥ ଓ ଗ୍ରନ୍ଥକାର

**ରାମଶର୍ମା**—(କବି) ଅଚ୍ୟୁତୋତ୍ତର ନାମକ କାବ୍ୟକର୍ତ୍ତା -କାବ୍ୟାଳଂକାର (୨-୧୯)ରେ ସୂଚିତ । ଉଦ୍‌ଭଟ୍ଟ କହନ୍ତି—ଏହି କାବ୍ୟରେ ଯମକର ବିଭିନ୍ନ ରୂପ ସୋଦାହରଣ ପ୍ରସ୍ତୁତ କରାଯାଇଛି । ଭାମହ କହନ୍ତି—ଧାତୁ ଅର୍ଥର ଚମତ୍କାରରେ ନିର୍ମିତ ଯମକ କାବ୍ୟକୁ ଦୁର୍ବୋଧ୍ୟ କରିଦିଏ । ଏହାକୁ ଯମକ ନକହି ପ୍ରହେଳିକା କହିବା ସଙ୍ଗତ ଅଟେ । ଉପମା ଦୋଷ ପ୍ରସଙ୍ଗ (କାବ୍ୟାଳଙ୍କାର ୨-୫୮) ରେ ଉପମାଧିକତ୍ୱ ଦୋଷର ଉଦାହରଣ ରାମଶର୍ମାଙ୍କର ଅଟେ । ଭାମହ ଏହାକୁ ମଧ୍ୟ ଖଣ୍ଡନ କରିଛନ୍ତି ।

**ମେଧାବୀ**—କାବ୍ୟତତ୍ତ୍ୱ ନିର୍ମାତା ଗ୍ରନ୍ଥ ଦୁର୍ଲ୍ଲଭ । କାବ୍ୟାଳଙ୍କାରର ଦୁଇଟି ସ୍ଥଳ (୨-୪୦ ୨-୮୮) ରେ ମେଧାବୀଙ୍କ ନାମୋଲ୍ଲେଖ ମିଳେ । ସାତଗୋଟି ଉପମା ଦୋଷର ଉଲ୍ଲେଖ ମେଧାବୀଙ୍କ ନାମୋଲ୍ଲେଖ ମିଳେ । ସାତଗୋଟି ଉପମା ଦୋଷର ଉଲ୍ଲେଖ ମେଧାବୀଙ୍କ ପ୍ରମାଣ ଆଧାରରେ ଭାମହ କରିଛନ୍ତି । ଯଥାସଂଖ୍ୟ ଅଳଙ୍କାରକୁ ମେଧାବୀ ସଂଖ୍ୟାନ ନାମ ଦେଇଛନ୍ତି । କିନ୍ତୁ ଉତ୍ପ୍ରେକ୍ଷା ଅଳଙ୍କାର ବିଷୟରେ ମେଧାବୀ ନୀରବ । ରାଜଶେଖର ଅନ୍ୟତ୍ର କହନ୍ତି-ମେଧାବୀ ଜାତ୍ୟନ୍ଧ କବି ଥିଲେ । 'ମେଧାବୀ ରୁଦ୍ର କୁମାର ଦାସା ଦର୍ଶ୍ୟୋ ଜାତାନ୍ଧାଃ କବୟଃ ଶ୍ରୂୟନ୍ତେ ।''

**ରାଜମିତ୍ର**—ଗ୍ରନ୍ଥବିଶେଷ ଲେଖକଙ୍କ ନାମ ଅଜ୍ଞାତ ଓ ଗ୍ରନ୍ଥ ଦୁର୍ଲ୍ଲଭ । କାବ୍ୟାଳଙ୍କାର (୨-୫୫,୩-୧୦) ରେ ଉଲ୍ଲେଖ ରହିଛି । ୨-୪୭ ରାଜମିତ୍ରରୁ ଉଦ୍ଧୃତ ।

**ଶାଖବର୍ଦ୍ଧନ**—କବି । କୃତି ନାମ ଅଜ୍ଞାତ । କାବ୍ୟାଳଙ୍କାରର ଅସମ୍ଭବ ଉପମା ଦୋଷ ପ୍ରସଙ୍ଗ (୨-୪୭)ରେ ଉଦ୍ଧୃତ ପଦ୍ୟ ଶାଖବର୍ଦ୍ଧନଙ୍କ ବୋଲି ସୂଚିତ ।

**ରତ୍ନାହରଣ** କାବ୍ୟ ବିଶେଷ, ଗ୍ରନ୍ଥକାରଙ୍କ ନାମ ଅଜ୍ଞାତ । କାବ୍ୟାଳଂକାର (୩-୮) ରେ ଏହି କାବ୍ୟର କଥାନକ ପ୍ରତି ସଙ୍କେତ ରହିଛି । ପର୍ଯ୍ୟାୟୋକ୍ତ ଅଳଂକାରର ଉଦାହରଣ ରତ୍ନାହରଣ କାବ୍ୟାରୁ ଗୃହୀତ ।

**କଣଭକ୍ଷ**—ବୈଶେଷିକ ଦର୍ଶନ ପ୍ରବର୍ତ୍ତକ ଆଚାର୍ଯ୍ୟ କଣାଦ ।

**ପାଣିନି**—କାବ୍ୟାଳଂକାର (୪-୧୧) ରେ ସୂତ୍ରକାର ରୂପେ [୬-୧୨]ରେ ଶାଲାତୁରୀୟ ନାମରେ (୬-୬୩)ରେ ଏହାଙ୍କ ମତ ପ୍ରତି ଶ୍ରଦ୍ଧା ପ୍ରକଟିତ ।

**ପଦକାର**—କାବ୍ୟାଳଂକାରର (୨-୨୧)ରେ ବାର୍ତ୍ତିକକାର କାତ୍ୟାୟନଙ୍କୁ ବୁଝାଯାଇଛି ।

**ଅଶ୍ମକବଂଶ**—ରଘୁବଂଶ ପରି ଏକ କାବ୍ୟ ବୋଲି ପ୍ର: କାଣେ ମନେ କରନ୍ତି । କିନ୍ତୁ ତାହା ଅନୁପଲବ୍ଧ କାବ୍ୟାଳଂକାରର (୧-୩୩)ର ଏହା ଉଲ୍ଲିଖିତ ।

—•••○•••

# ଶୁଦ୍ଧିପତ୍ର

| ଅଶୁଦ୍ଧ | ଶୁଦ୍ଧ | ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ | ପୃଷ୍ଠା | ଧାଡ଼ି |
|---|---|---|---|---|---|---|---|
| ବସ୍ୟଚନ୍ଦ୍ର | କସ୍ୟଚନ୍ଦ୍ର | ୨ | ୭ | ବଦ୍ଧ୍ୟନ୍ତ୍ର | ବଦ୍ଧ୍ୟନ୍ତ୍ର | ୩୫ | ୧୫ |
| ମନତ୍ତ୍ୱ | ମହତ୍ତ୍ୱ | ୨ | ୧୪ | ଶଶ୍ଙ୍କ | ଶଶାଙ୍କ | ୩୮ | ୨୬ |
| ସମ୍ଭବ | ସମ୍ଭବ | ୨ | ୧୬ | ତ | ନ | ୪୧ | ୪ |
| ବଙ୍ଗ୍ୟ | ବ୍ୟଙ୍ଗ୍ୟ | ୪ | ୭ | ଉଦ୍‌ବେଶ | ଉଦ୍‌ବେଗ | ୪୩ | ୨୩ |
| ରୂପକାଦରଲଂକାରଂ | ରୂପକାଦରଲଙ୍କାରଂ | ୫ | ୫ | ଅନୁପାରେ | ଅନୁସାରେ | ୪୪ | ୧୧ |
| ମନୁସ୍ୟ | ମନୁଷ୍ୟ | ୫ | ୧୫ | କେଜା | କେକା | ୪୪ | ୨୪ |
| ଅନୁଗ୍ରାସ | ଅନୁପ୍ରାସ | ୬ | ୧୨ | ଉପମେୟ | ଉପମେୟ | ୪୪ | ୨୬ |
| ଙରମ୍ଭଙ୍କୀ ଯନ୍ତୁଂ | ଙରମ୍ଭଙ୍କୀ ଯନ୍ତୁଂ | ୬ | ୨୬ | ଅସମ୍ଭ | ଅସମ୍ଭବ | ୪୬ | ୮ |
| ଚେତ | ଭେଦ | ୭ | ୧୬ | ପୁଞ୍ଜଭୂତ | ପୁଞ୍ଜୀଭୂତ | ୪୬ | ୯ |
| ଚତୁବିଧ | ଚତୁର୍ବିଧ | ୭ | ୨୨ | ଉତ୍ତିଷ୍ଠାର୍ଣ୍ଣତଃ | ଉତ୍ତିଷ୍ଠାର୍ଥତଃ | ୪୭ | ୨୩ |
| ଲୋକପ୍ରଣବେନ | ଲୋକପ୍ରସ୍ତବେନ | ୮ | ୮ | କୁଳଂ | କୁଳଂ | ୪୮ | ୨ |
| ବୈବର୍ଭ | ବୈଦର୍ଭ | ୧୩ | ୮,୧୩ | ପୀତାମ୍ବତ | ପୀତାମ୍ବର | ୪୯ | ୨୧ |
| ବକ୍ରୋକ୍ତି | ବକ୍ରୋକ୍ତି | ୧୩ | ୨୫ | ଉଚିତ | ରଚିତ | ୪୯ | ୨୩ |
| ପୃହୀତ | ଗୃହୀତ | ୧୪ | ୧୬ | ଦର୍ଶ୍ଣ | ଦର୍ଶ୍ଣ | ୫୦ | ୨ |
| ବର୍ନ୍ଦ୍ର ବତ | ପ୍ଲାବତ | ୧୬ | ୨୬ | ଅରୁରୂପ | ଅନୁରୂପ | ୫୪ | ୮ |
| ଯୁଂକ୍ତା | ଯୁକ୍ତ୍ୟା | ୧୭ | ୬ | ସ୍ୱବଳମାଳନ୍ତ୍ରାଭୂବଃ | ସ୍ୱବଳମାଳାନ୍ତ୍ରଭୂବଃ | ୫୪ | ୧୯ |
| ଦ୍ରିଦ୍ରକ୍ | ଦ୍ୱିଦ୍ରକ୍ | ୧୮ | ୩ | ଗୁରୁନ୍ | ଗୁରୁନ୍ | ୫୬ | ୨ |
| ପନ୍ତ୍ତାଃ | ପର୍ଣ୍ଣିତାଃ | ୨୦ | ୨ | ବାକ୍ | ବାକ୍ୟ | ୫୬ | ୧୧ |
| ବାକାକ୍ଟବ | ବାକ୍କାଟବ | ୨୦ | ୨୬ | ସ୍ୱଙ୍ଗତା | ସଙ୍ଗତଃ | ୬୩ | ୧ |
| ଅଦୋତାର | ଅଦୋଷତାର | ୨୩ | ୨୨ | ବାକ୍ୟାଲଂକାର | କାବ୍ୟାଲଙ୍କାର | ୬୫ | ୪ |
| ସମାନ | ସମାସ | ୨୬ | ୨୨ | ଗଙ୍ଗଦୋତକ | ଗଙ୍ଗଦ୍ୟୋତକ | ୬୬ | ୧୬ |
| ପଉଅଛୁ | ପାଉଅଛୁ | ୨୦ | ୧୧ | ଦେବପାଠୀ | ବେଦପାଠୀ | ୬୮ | ୧୯ |
| ଦୁଷ୍କୃତଂ | ଦୁଷ୍କୃତଂ | ୩୩ | ୨ | ପନ୍ନମହତ୍ତ୍ୱ | ପନ୍ନହତ୍ତ୍ୱ | ୭୦ | ୫ |
| କାବ୍ୟାନାପି | କାବ୍ୟାନ୍ୟାପି | ୩୪ | ୧ | ମନଦେ | ମଦେନ | ୭୪ | ୩ |
| ଦସ୍ତୁତ୍ତ୍ୱ ଷସ୍ତୁ | ଦସ୍ତୁବିଷସ୍ତୁ | ୩୪ | ୫ | ଶତାଂଶୋନାପି | ଗତାଂଶେନାପି | ୭୮ | ୪ |
| ନବର୍ତ୍ତୀ | ବବର୍ତ୍ତୀ | ୩୪ | ୨୬ | ଅନର୍ବାର୍ଯ୍ୟ | ଅନବାର୍ଯ୍ୟ | ୭୯ | ୧୧ |
| ମ.ସ୍ୱର | ମାତ୍ସର | ୩୫ | ୧୦ | ସ୍ଥୁରୈୟ | ସ୍ଥୁର୍ଯ୍ୟ | ୮୨ | ୪ |

| | | | | | | | |
|---|---|---|---|---|---|---|---|
| ବାସାସ୍ଥା | ବାସାସ୍ଥ | ୮୩ | ୮ | ପ୍ରତ୍ତାକ୍ଷ | ପ୍ରତ୍ୟକ୍ଷ | ୧୧୬ | ୨୮ |
| ଥ୍ରବେଶ | ପ୍ରବେଶ | ୮୩ | ୨୫ | କଣବା | କହୁବା | ୧୧୭ | ୨୯ |
| ବାସ୍ତବ | ବାସବ | ୮୪ | ୧୧ | କ୍ଷବେଦ୍ଧ୍ୟସ୍ଥ | କ୍ଷତେଦ୍ଧ୍ୟସ୍ଥ | ୧୨୮ | ୨୧ |
| ଘ'ବଯୋଃ | ଯୂ'ବଯ୍ୟୋଃ | ୮୪ | ୩ | ଧୂମାଦଭଂକଷାତ୍ | ଧୂମାଦଭ୍ରଂକଷାତ୍ | ୧୨୯ | ୭ |
| ଯସଷ୍ଟ | ଯଯଷ୍ଟି | ୮୪ | ୧୮ | ବୋକ୍ତଂ | ଘୂବୋକ୍ତଂ | ୧୩୩ | ୨୫ |
| ଖ୍ୱବବାଲୁ | ଖ୍ୱବିକଲ୍ଲ | ୮୫ | ୨୪ | ଦୃଷ୍ଟାଷ୍ଟ | ଦୃଷ୍ଟାନ୍ତ | ୧୩୪ | ୧୨ |
| ଉପସଂହର | ଉପସଂହାର | ୮୭ | ୧୮ | ଅରୁଦ୍ଧଣ୍ଣ | ଅରୁଦ୍ଧତ୍ତ | ୧୩୪ | ୧୭ |
| ଅନ୍ୟତମ | ଅନ୍ୟମତ | ୯୦ | ୯ | ପ୍ରଜାନନ | ପ୍ରଜାଜନ | ୧୩୫ | ୩ |
| ଦାଡ଼ିମ ତ୍ତ | ଦାଡ଼ିମାନ୍ଦ | ୯୦ | ୭ | ତ୍ତତଥଦଂ | ତ୍ତତ୍ଥାଦଂ | ୧୪୮ | ୨ |
| ଉପଷ୍ଟାପି | ଉପସ୍ଥାପିତ | ୯୦ | ୧୨ | ବ୍ୟବହା | ବ୍ୟବହାର | ୧୫୦ | ୧୩ |
| ନିଘୃଡ଼ା | ନିଘୃଢ଼ା | ୯୧ | ୨ | ଜଷ୍ଟନ୍ନ | ଜଷ୍ଟନ୍ନ | ୧୫୨ | ୧୨ |
| ଉପସିତ | ଉପସ୍ଥିତ | ୯୨ | ୧ | ଣବୌଏ | ଣବୌ | ୧୫୩ | ୨ |
| ତଦେକାଥଂ | ତଦେକାର୍ଥଂ | ୯୨ | ୩ | ନ୍ୟସକାର | ନ୍ୟାସ୍କାର | ୧୫୫ | ୧ |
| ସୌଳ୍ପାଦବୋ | ସୌଳ୍ପାଦବୋ | ୯୨ | ୫ | ତସ | ତସ୍ୟ | ୧୫୬ | ୧୦ |
| ଏକର୍ଥା | ଏକାର୍ଥ | ୯୨ | ୧୭ | ନାୟକ | ନାୟିକା | ୧୫୯ | ୧୫ |
| କ'ଣ | କ'ଣ | ୯୨ | ୨୭ | କ୍ରନ୍ଦନ୍ତ୍ୟଶ୍ଚ | କ୍ରନ୍ଦନ୍ତ୍ୟଶ୍ଚ | ୧୬୦ | ୧ |
| ବସ୍ତୁସ୍ୟେସ୍ୟ ଉପି | ବସ୍ତୁସ୍ୟସ୍ୟୋଉପି | ୯୩ | ୧ | ତନ୍ତ୍ରୈମିଷ୍ଟ୍ୟା | ତତଶ୍ରୈମିଷ୍ଟ୍ୟା | ୧୬୧ | ୪ |
| ମୃଗଧର | ମୃଗଧର | ୯୭ | ୧୪ | ଦ୍ରୁସ୍ତ୍ୟପଂ | ଦ୍ରୁସ୍ଥପଂ | ୧୬୨ | ୨ |
| ସାଧାରଣତଂ | ସାଧାରଣତଂ | ୧୦୦ | ୭ | ବର୍ଦ୍ଧ'ଣୋ | ବର୍ହିଣୋ | ୧୬୨ | ୪ |
| ଝଡ଼ୁଗ | ଝଡ଼ୁକ | ୧୦୦ | ୨୮ | ପେଣ୍ଟିତୁପେଡ | କଣ୍ଟିତୁପେଡ | ୧୬୫ | ୩ |
| ଯୌବତ | ଯୌବତ | ୧୦୦ | ୨୮ | ଶାସ୍ତ୍ରିକ | ଶ୍ରାସ୍ତ୍ରିକ | ୧୬୧ | ୨୩ |
| ଖରଭ | ରସଭ | ୧୦୦ | ୨୮ | | | | |
| ଖମଙ୍କ | ଖମହଂକ | ୧୦୪ | ୧୩ | କସ୍ତୁସ୍ଥାନ୍ | କଜସ୍ଥାନ୍ | ୧୬୨ | ୨୩ |
| ଆଗାହ୍ୟ | ଅଗ୍ରାହ୍ୟ | ୧୦୯ | ୨୪ | ଦ୍ରୁସ୍ତୁପକ | ଦ୍ରୁସ୍ତୁପଜ | ୧୬୩ | ୭ |
| ଅବସୁଂକ | ଅବନ୍ତୁଂକ | ୧୧୦ | ୨ | ତମିସ୍ରା | ତମିସ୍ରା | ୧୬୩ | ୧୧ |
| ପବିକଳ୍ପକ | ପବିକଳ୍ପକ | ୧୧୦ | ୧୨ | ସାଦଧାତୁକେ | ସାର୍ବଧାତୁକେ | ୧୬୪ | ୧୧ |
| ପ୍ର[illegible]ଧର୍ମା | ପ୍ରତିଷ୍ଠଧର୍ମା | ୧୧୩ | ୪ | ରଙ୍ଗଲଗୋମି | ରଙ୍କିଲଗୋମି | ୧୬୬ | ୧୨ |
| ବାଲ୍ପିଶ୍ରୁ | ବାଲ୍ୟାଶ୍ରୁ | ୧୧୪ | ୨ | | | | |
| ସମର୍ଥନ | ସମର୍ଥିତ | ୧୧୫ | ୨୪ | | | | |

—...o ..—